# ଆଜିର ଗଳ୍ପ

ସଂପାଦନା :

**ରତ୍ନାକର ଚଇନି**

ଅଧ୍ୟାପକ, ରାଜେନ୍ଦ୍ର କଲେଜ
ବଲାଙ୍ଗିର

ସାହିତ୍ୟ ସଂଗ୍ରହ ପ୍ରକାଶନ
କଟକ-୨

# AJIRA GALPA (ORIYA)

Edited by

**Ratnakar Chaini, M. A.**



ପ୍ରକାଶିକା :

ଶ୍ରୀମତୀ ଶଶୀରେଖା ପ୍ରଧାନ

**ସାହିତ୍ୟ ସଂଗ୍ରହ ପ୍ରକାଶନ**

ବିନୋଦ ବିହାରୀ, କଟକ-୨

ପ୍ରଥମ ପ୍ରକାଶ କାଳ :

ରକ୍ଷୀ ପୂର୍ଣ୍ଣିମା, ୧୯୭୨

ମୁଦ୍ରଣ :

ଗୀତାଞ୍ଜଳି ପ୍ରେସ

କଟକ-୯

ମୂଲ୍ୟ :

ଛଅଟଙ୍କା ମାତ୍ର

# ପଦଏ କଥା

ଓଡ଼ିଆ ସାହିତ୍ୟରେ ଅନେକଗୁଡ଼ିଏ ଗଳ୍ପ ସଂକଳନ ଥିଲେ ମଧ୍ୟ ଆଉ ଗୋଟିଏ ସଂକଳନ କରିବା ମୂଳରେ ଦୁଃସାହସିକତା ରହିଛି ନିଶ୍ଚୟ । କେଜାଣି କାହିଁକି ପ୍ରତିନିଧି ଶ୍ରେଣୀୟ ଗଳ୍ପ ସହ ଦି'ପଦ ସୂଚନା ଦେଇ ସଂକଳନଟିଏ ପ୍ରକାଶ କରିବାକୁ ପ୍ରବଳ ଇଚ୍ଛା ହେଲା । ପୁଣି ସେ ଇଚ୍ଛା ଫଳବତୀ ମଧ୍ୟ ହେଲା । ଆଧୁନିକତାର ସ୍ପର୍ଶ ପାଇବା ଦିନଠୁଁ ଆଜି ପର୍ଯ୍ୟନ୍ତ ପ୍ରକାଶିତ କେତୋଟି ମାତ୍ର ଗଳ୍ପର ଇଏ ହେଉଛି ମିଳନ ପୀଠ । ଓଡ଼ିଆ ଭାଷାର ସମସ୍ତ ପ୍ରତିଷ୍ଠିତ ଗାଳ୍ପିକଙ୍କର ସୃଷ୍ଟି ସମ୍ଭାରକୁ ଏଥିରେ ଏକତ୍ର କରିବାର ସାମର୍ଥ୍ୟ ଅନ୍ତତଃ ମୋର ନଥିଲା । ସେଥିପାଇଁ ମୁଁ ସେଇ ସେଇ ଗାଳ୍ପିକମାନଙ୍କ ପାଖରୁ ବିନମ୍ର ହୋଇ କ୍ଷମା ମାଗି ନେଉଛି । ଏ ସଂକଳନଟି କରିବାବେଳେ ମୁଁ କଳାତ୍ମକ ଗୁଣପ୍ରତି ବିଶେଷ ଗୁରୁତ୍ୱ ଦେଇଛି । ଏଥିରେ ସ୍ଥାନପାଇଥିବା ଗଳ୍ପ ଗୁଡ଼ିକ ଶଂସିନ୍ତ ସ୍ରଷ୍ଟାମାନଙ୍କର ଶ୍ରେଷ୍ଠତମ ଗଳ୍ପ ନ ହୋଇ ପାରେ; ତଥାପି ଶ୍ରେଷ୍ଠ ଗଳ୍ପମାନଙ୍କ ଭିତରୁ ଗୋଟିଏ ନିଶ୍ଚୟ । ଯେଉଁ କଥାକାରମାନଙ୍କର କଥାରେ ଏ ସଂକଳନଟି ରୁଚିମନ୍ତ, ସେମାନଙ୍କ ସହୃଦୟତା ଲାଗି ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି ।

**ସଂକଳକ**

ତା୨୪ ।୮।୭୨ରିଖ

# ଗଳ୍ପ ଓ ଗାଳ୍ପିକ



॥ ଭୂମିକା ॥





## —ଭୂମିକା—

### କହି ଜାଣିଲେ କଥା ସୁନ୍ଦର :

ମଣିଷ ସର୍ବଦା ନିଜର ଅନୁଭୂତିକୁ ଅନ୍ୟଙ୍କୁ ବାଣ୍ଟେ । ଏହି ଅନୁଭୂତି ବିତରଣ ପାଇଁ ସେ ଦିନେ ଭାଷାର ସାହାଯ୍ୟ ନେଉଥିଲା । ଭାଷା ହେଲା ତା'ର ସମ୍ପୂର୍ଣ୍ଣ ଅନ୍ତର ଓ ବାହ୍ୟ ଆବଶ୍ୟକତାର ଅଭିବ୍ୟକ୍ତି । ପ୍ରାରମ୍ଭିକ ସ୍ତରରେ ସୃଷ୍ଟି ସହିତ ନିଜର ସମ୍ପର୍କ ନିର୍ଣ୍ଣୟ କରିବା ଭାଷା ସାହିତ୍ୟର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ତା'ପରେ ଆସିଲା ସାମାଜିକତାର ପଦଚିହ୍ନ ଖୋଜି ବାହାର କରିବାର ପ୍ରୟତ୍ନ । ଏଇ ଖୋଜିବା ଭିତରେ ମଣିଷ କେତେବେଳେ ନିଜକୁ ହଜାଇ ବସିଲା, ତା' ସେ ଜାଣେନା । ସେ କିନ୍ତୁ ଦିନେ ବାନ୍ଧି ହୋଇ ପଡ଼ିଲା କବିତା, ଉପନ୍ୟାସ, ନାଟକ ଓ ଗଳ୍ପାଦିର ରସସିକ୍ତ ଡୋରିରେ । କେଉଁ ଦେଶରେ କିଏ କହି ଜାଣିଲା ଲୋକ ପ୍ରଥମେ କାହାକୁ ସୁନ୍ଦର କଥାଟିଏ କହି ମନ କିଣିଥିଲା, ତା'ର ହିସାବ ମଧ୍ୟ ଆଜି କେହି ରଖିନି । ଅବଶ୍ୟ ଏକଥା କୁହାଯାଇପାରେ ଯେ, କବିତା ଓ ନାଟକ ପରେ ଗଳ୍ପ ହେଉଛି ସାହିତ୍ୟର ତୃତୀୟ ସନ୍ତାନ । ସେଇ ଦୃଷ୍ଟିରୁ ଅନୁଧ୍ୟାନ କରାଯାଇଛି ଯେ, କାହାଣୀ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଦେଶରେ ଆକସ୍ମିକ ଭାବେ ସମ୍ପୂର୍ଣ୍ଣ ବିକାଶ ଲାଭ କରିନି ନିଶ୍ଚୟ । ଏହା ବିଭିନ୍ନ ଦେଶରେ ପୃଥକ୍ ପୃଥକ୍ ସମୟରେ ସମାନ୍ତରାଳ ତରଙ୍ଗ ସୃଷ୍ଟି କରିଛି ।

### ଗଳ୍ପର ପରିଭାଷା :

ଜୀବନର ବ୍ୟାପକତାକୁ ମାପିବା ନିମିତ୍ତ କାହାଣୀର ଜନ୍ମ । ଜୀବନ ଇନ୍ଦ୍ରଧନୁ ବର୍ଣ୍ୟର ରୂପକୁ ସୂକ୍ଷ୍ମ କେନ୍ଦ୍ର ବିନ୍ଦୁରେ ସଂହତ କରିବା କାମଟିକୁ କାହାଣୀ ସୁସମ୍ପାଦନ କରେ । ଗୋଟିଏ ଶ୍ରେଷ୍ଠ ଘଟଣାକୁ

*

ନେଇ ରୂପ ଦେଇ ଗାଳ୍ପିକ ଅନନ୍ତ ଜୀବନର ସ୍ୱାଦ ଚଖାଏ । କେଉଁଠି ଗୋଟିଏ ହେଲେ ନିରର୍ଥକ ଘଟଣାର ଉପସ୍ଥାପନା ହୋଇ ନ ଥିବ, କେଉଁଠି ଗୋଟିଏ ହେଲେ ଶବ୍ଦ ଅଯଥା ବ୍ୟବହୃତ ହୋଇ ନ ଥିବ; ମାତ୍ର ଏହାର ସଂଯୋଗ ଏମିତି ହୋଇଥିବ ଯେ ଚତୁର ପାଠକଙ୍କର ମଧ୍ୟ ବିଭ୍ରମ ସୃଷ୍ଟି ହେଉଥିବ । ଗଳ୍ପ ପାଠ ପରେ ବି 'ଶେଷ ହୋଇ ହୋଇଲା ନା ଶେଷ'ର ନିଶା ମନକୁ ଝାଙ୍କୁଥିବ । ପୁଣି ସ୍ରଷ୍ଟାର ମନୋଭଙ୍ଗୀର ଏକାନ୍ତ ରୂପାୟନ ଓ ଆସ୍ୱାଦନକୁ କ୍ଷୁଦ୍ରଗଳ୍ପର ଚୂଡ଼ାନ୍ତ ରସସିଦ୍ଧି ବୋଲି ଧରାଯିବ । ଗୋଟିଏ ମାତ୍ର ଆବେଗ, ଗୋଟିଏ ଘଟଣା ଓ ଅବସ୍ଥାନର ବୃନ୍ତରେ ଗାଳ୍ପିକ ଅନୁଭୂତିର ପୁଟ ଦେଇ ଗଳ୍ପକୁସୁମ ସୃଷ୍ଟି କରେ ।

ଗଳ୍ପରେ ଇଙ୍ଗିତର ମଧୁରତା ଥାଏ ଏବଂ ଥାଏ କ୍ଷୁଦ୍ର କଳେବର ଭିତରେ ନିଗୂଢ଼ ସତ୍ୟର ବ୍ୟଞ୍ଜନା । କେହି କେହି କହନ୍ତି, ଗଳ୍ପର ଶ୍ରେଷ୍ଠତ୍ୱ ସର୍ବୋପରି ଏହାର ସକ୍ଷ୍ମ ବ୍ୟଞ୍ଜନାପ୍ରାପ୍ତି ଉପରେ ନିର୍ଭର କରେ । ମାନବ ଜୀବନର ଗଭୀରତମ ପ୍ରଦେଶର ରହସ୍ୟ ଭେଦ କରି ତା' ମନର ଅଜଣା ଅନୁଭୂତି ଓ ସମ୍ବେଦନା ସବୁକୁ ଗାଳ୍ପିକ ଅତି ଚମତ୍କାର ଭାବେ ଚିତ୍ରଣ କରିବାକୁ ଚାହେଁ । ତେଣୁ ଅନେକେ କହନ୍ତି କ୍ଷୁଦ୍ରଗଳ୍ପ ହେଉଛି ଜୀବନର ରୂପକଳ୍ପ । ପୁଣି ଏହାର ଅନ୍ତରଙ୍ଗ ଓ ବହିଃରଙ୍ଗ ଭେଦରେ ଦୁଇଟି ଅଙ୍ଗ ଅଛି । ବହିରଙ୍ଗଟି ହେଉଛି କ୍ଷୁଦ୍ରଗଳ୍ପର ଗଳ୍ପାଂଶ, ଯାହାକି ପାଠକକୁ ମୁଖ୍ୟତଃ ଆକର୍ଷଣ କରେ ଏବଂ ଅନ୍ତରଙ୍ଗ ହେଉଛି ଗଳ୍ପର ଲକ୍ଷ୍ୟାଂଶ । ଏହାଦ୍ୱାରା ସୁଚତୁର ପାଠକ ଗଳ୍ପର ଅନ୍ତର୍ନିହିତ ଉଦ୍ଦେଶ୍ୟକୁ ଧରିପାରେ । କ୍ଷୁଦ୍ରଗଳ୍ପ ହେଉଛି ଶବ୍ଦବିନ୍ୟାସର ଏକ ସୁରୁଚି ଚିତ୍ରଶାଳା, ଯେଉଁଠି କି କମ୍ ଶବ୍ଦ ବିନିମୟରେ ଅଧିକ ଭାବ ସଞ୍ଚାର କରାଯାଇପାରେ । ବାଜେକଥା କହି ଅଯଥା କଳେବର ବୃଦ୍ଧି କରିବା ସାର୍ଥକ ଗାଳ୍ପିକର ଲକ୍ଷଣ ନୁହେଁ ।

ଗଳ୍ପର ଆରମ୍ଭ ଓ ପରିସମାପ୍ତିରେ ନାଟକୀୟତା ରକ୍ଷିବା ଏକାନ୍ତ ବାଞ୍ଛନୀୟ ବୋଲି କେହି କେହି ମନେ କରନ୍ତି । ଅତର୍କିତ ଆରମ୍ଭ ଓ ଆକସ୍ମିକ ପରିସମାପ୍ତି ଏହାର ଆତ୍ମିକ ସୌନ୍ଦର୍ଯ୍ୟକୁ ବହୁ ମାତ୍ରାରେ ବର୍ଦ୍ଧନ କରେ । ଭାଷାର ଲାଳିତ୍ୟ, ଭାବର ଉଚ୍ଚତା ଓ ସୃଷ୍ଟିନୈପୁଣ୍ୟର ମଧୁର ସମନ୍ୱୟ ହେଉଛି କ୍ଷୁଦ୍ରଗଳ୍ପର ପ୍ରାଣ । ମାତ୍ର ଅତି କେତେକ

କହନ୍ତି 'ଆବେଗପୂର୍ଣ୍ଣ ହୃଦୟର ସାମୟିକ ଗଭୀର ଉଚ୍ଛ୍ୱାସ ଯେପରି କବିତାରେ ପ୍ରତିଫଳିତ ହୋଇଥାଏ, ସେହିପରି ନାନା ବୈଚିତ୍ର୍ୟମୟ ଓ ନାନା ସଙ୍ଘାତମୟ ଜୀବନର ରାଶି ରାଶି କ୍ଷୁଦ୍ର କ୍ଷୁଦ୍ର ଘଟଣାମାନଙ୍କର ମନୋହର ଚିତ୍ର କ୍ଷୁଦ୍ରଗଳ୍ପର ଅଙ୍ଗୀଭୂତ ହୋଇଥାଏ ।' ଅବଶ୍ୟ ଏ ମତ ସହ ଦ୍ୱିମତ ହେବାର କିଛି ନାହିଁ । ତଥାପି ଅନୁଭୂତିସମ୍ପନ୍ନ ଘଟଣା ସହ କଳାତ୍ମିକା ଗୁଣର ବିକାଶ ନ ଘଟିଲେ ତାହା କ୍ଷୁଦ୍ରଗଳ୍ପ ନାମବାଚ୍ୟ ହୋଇ ପାରିବନି । ସୃଷ୍ଟିର ମୁକୁରରେ ମଣିଷ ମନର ପ୍ରତିବିମ୍ବନ ନ ହେଲେ ସେ ସୃଷ୍ଟି ପ୍ରାଣବନ୍ତ ହୁଏନା । ତେବେ ଗଳ୍ପସାହିତ୍ୟର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନିରୂପଣ କରିବା ଦିଗରେ ସାମ୍ପ୍ରତିକ କାଳର ଆଲୋଚକଗଣ ନିଶ୍ଚିତ ଭାବେ ବିଫଳ ହୋଇଛନ୍ତି । କୌଣସି ଗୋଟାଏ ଫର୍ମୁଲା ବା ନିୟମବଦ୍ଧ ପନ୍ଥାରେ ଆଜିର ଗଳ୍ପ ରଚିତ ହେଉନି । ସତ୍ୟ-ସୁନ୍ଦରର ମୌଳିକ ରହସ୍ୟ ଉଦ୍‌ଘାଟନ କରିବା ନିମିତ୍ତ ସେ ବିଶାଳ ବିଶ୍ୱର ପ୍ରତ୍ୟେକ ଅଣୁ ପରମାଣୁକୁ ପରୀକ୍ଷା କଲାବେଳେ, ନିଜ ମନ ଗହନର ଅନ୍ଧାରୁଆ ନଗରୀକୁ ନିରୀକ୍ଷା କରିବାକୁ ମଧ୍ୟ ଭୁଲୁନି । 'ସୁନ୍ଦର ପାଇଁ ମନୁଷ୍ୟର ଆକାଂକ୍ଷା ସୁପ୍ରାଚୀନ ହେଲେ ସତ୍ୟ ପାଇଁ ତା'ର ପିପାସା ଆଦିମତମ । ସତ୍ୟ ଚେତନାରୁ ହିଁ ସୁନ୍ଦରର ଜନ୍ମ ।' ସେ ଦୃଷ୍ଟିରୁ ଗାଳ୍ପିକଙ୍କୁ ସତ୍ୟ-ସୁନ୍ଦରର ସାଧକ କହିଲେ ଭୁଲ୍ ହେବନି । ଦର୍ପଣରେ ନିଜ ମୁହଁ ଦେଖିବାକୁ ଯେମିତି ସମସ୍ତେ ଭଲ ପାଆନ୍ତି, ସାହିତ୍ୟରେ ସମସାମୟିକ ସମାଜର ପ୍ରତିବିମ୍ବ ଦେଖିବାକୁ ସ୍ରଷ୍ଟା ସେମିତି ଭଲପାଏ । ସେଥିପାଇଁ ଯାହା ସତ୍ୟ ଓ ଯାହା ସୁନ୍ଦର, ତା'ର ମୂଳ ଉତ୍ସ ସନ୍ଧାନିବାକୁ କେଉଁ ଅନାଦି କାଳରୁ ସ୍ରଷ୍ଟା ଚେଷ୍ଟା କରି ଆସୁଛି ।

ଆଜିର ଗାଳ୍ପିକମାନେ କେବଳ ମନସ୍ତତ୍ତ୍ୱ ବା ଅର୍ଥନୈତିକ ଚିନ୍ତା-ବିପ୍ଳବକୁ ରୂପାୟିତ କରିବାକୁ ବ୍ୟାକୁଳ ନୁହଁନ୍ତି; ସେମାନେ ଗୋଟିଏ ମୁହୂର୍ତ୍ତର ଅନୁଭୂତିକୁ ବା ଘଟଣାକୁ ଚିତ୍ରଣ କରି ବିନ୍ଦୁରେ ସିନ୍ଧୁର ଦ୍ୟୋତନା ଖୋଜି ଯାଉଛନ୍ତି । ଏପରିକି କୌଣସି ଧାରାବାହିକ କାହାଣୀର ଆଶ୍ରୟ ନ ନେଇ କେତୋଟି ସମ୍ପର୍କରହିତ ଅନୁଭୂତିକୁ ବା ଘଟଣାକୁ ସଜାଇ ଦେଇ ଗାଳ୍ପିକ ଗଳ୍ପ ସୃଷ୍ଟିର ଗୌରବ ପାଇ ପାରୁଛି । ଯେଉଁଠି ପୁଣି କେବେ କଥାହୀନ-କଥାର ସ୍ୱର ହୋଇ ଉଠୁଛି ଅଦ୍ଭୁତ ଶବ୍ଦ । ସେମାନଙ୍କ

ମତରେ, ଜଟିଳ ରହସ୍ୟାବୃତ ଆଧୁନିକ ଜୀବନର ଭୂମି, ଯାହାର ପ୍ରତି ମୁହୂର୍ତ୍ତରେ ଓ ପ୍ରତି ବିନ୍ଦୁରେ ଜମି ରହିଛି ଅତଳାନ୍ତ ଗମ୍ଭୀରତା— ତାହାର ଯେ କୌଣସି ଗୋଟିଏ ବିନ୍ଦୁରେ ଗୋଟିଏ ପୂର୍ଣ୍ଣ ଜୀବନର ସ୍ୱୟଂ-ରୂପକୁ ପ୍ରତ୍ୟକ୍ଷ କରିଯାଇ ପାରେ । ଆଧୁନିକ ମନକୁ ଆରୋଗ୍ୟ କରିବା ପାଇଁ ସାହିତ୍ୟ ଯେପରି ଦିନକୁ ଦିନ ଅପରିହାର୍ଯ୍ୟ ହୋଇ-ପଡୁଛି, ତା'ର ସଙ୍ଗା ମଧ୍ୟ ସେହିପରି ଦିନକୁ ଦିନ ବ୍ୟାପକ ହୋଇ-ପଡୁଛି ।

## ଶ୍ରେଣୀ ବିଭାଗ :

ପ୍ରାଥମିକ ସ୍ତରରେ କୌଣସି ସ୍ରଷ୍ଟା କୌଣସି ନିର୍ଦ୍ଦିଷ୍ଟ ସଙ୍ଗା ପ୍ରତି ସଚେତନ ହୋଇ କିଛି ସୃଷ୍ଟି କରୁ ନ ଥିଲେ । ସେ ସମୟରେ କ୍ଷୁଦ୍ର-ଗଳ୍ପର ସାମ୍ପ୍ରତିକ ସଙ୍ଗା ସ୍ରଷ୍ଟାର ପ୍ରଜ୍ଞା-ମାନସଠାରୁ ଥିଲା ସହସ୍ର ସହସ୍ର ମାଇଲ ଦୂରରେ । ସେ କି ଭଳିଆ କାହାଣୀ ଲେଖୁଛି ବା କେଉଁ ଶ୍ରେଣୀୟ କାହାଣୀ ଲେଖୁଛି ସେଥିପ୍ରତି ସେ ବିଶେଷ ସଚେତନ ନ ଥିଲେ । ଗଳ୍ପର ଶ୍ରେଣୀ ବିଭାଗ ଏକ ଅଧୁନାତନ କାଳର କାର୍ଯ୍ୟ । ତେବେ କ୍ଷୁଦ୍ରଗଳ୍ପର ପ୍ରକାଶଭଙ୍ଗିକୁ ଅନୁଧ୍ୟାନ କରି ଯେଉଁ କେତୋଟି ଭାଗରେ ଏହାକୁ ବିଭକ୍ତ କରିଯାଇଛି, ସମ୍ଭବତଃ ତା'ଠାରୁ ବହୁଗୁଣରେ ଏହା ବିଭକ୍ତ ହୋଇପାରେ । ମୁଖ୍ୟତଃ କାହାଣୀଗୁଡ଼ିକୁ ତିନୋଟି ଭାଗରେ ବିଭକ୍ତ କରିଯାଇପାରେ । ଯଥା—(କ) କଥା-ପ୍ରଧାନ କାହାଣୀ, (ଖ) ଚରିତ୍ର-ପ୍ରଧାନ କାହାଣୀ ଓ (ଗ) କାର୍ଯ୍ୟ-ପ୍ରଧାନ କାହାଣୀ ।

ମାତ୍ର ଏଇ ତିନୋଟି ବିଭାଗରେ ଗଳ୍ପ ଲେଖି ସନ୍ତୁଷ୍ଟ ହେବାକୁ ଆଧୁନିକ ଗାଳ୍ପିକମାନେ ରାଜି ନୁହଁନ୍ତି । କାରଣ ନୂଆ କିଛି କରିବାର ପ୍ରେରଣା ସବୁବେଳେ ତାଙ୍କୁ ଉନ୍ମାଦ କରୁଛି । ତେଣୁ ସେମାନେ ସମାଜ-ଚେତନା, ମନୋବିଜ୍ଞାନ, ମାର୍କସୀୟ ଚେତନା, ଫ୍ରଏଡ଼ୀୟ ଚେତନା (ଯୌନଧର୍ମୀ), ରାଜନୀତି, ଶ୍ରେଣୀ ସଂଘର୍ଷ, ବୈଜ୍ଞାନିକ ଓ ଯଥାର୍ଥ ମାନ-ବିକତାର ଭିତ୍ତିଭୂମି ଉପରେ ଗଳ୍ପ ରଚନା କରିବାକୁ ଆଗେଇ ଆସିଛନ୍ତି । ସାଂପ୍ରତିକ ବ୍ୟକ୍ତିମାନସର ହତାଶାଜର୍ଜରିତ ଭାବକୁ ଅତି ଚମତ୍କାର ଭାବେ ପରିସ୍ଫୁଟ କରିବା ପାଇଁ ପ୍ରୟାସ କରୁଛନ୍ତି ।

ମୋଟାମୋଟି ଭାବରେ ବର୍ତ୍ତମାନର ଗଳ୍ପକୁ ନିମ୍ନ କେତୋଟି ଭାଗରେ ବିଭକ୍ତ କରାଯାଇ ପାରେ ।

(କ) ମନୋବୈଜ୍ଞାନିକ ଗଳ୍ପ
(ଖ) ଯୌନଧର୍ମୀ ଗଳ୍ପ ବା ପ୍ରେମମୂଳକ ଗଳ୍ପ
(ଗ) ମାର୍କସବାଦୀ ଗଳ୍ପ ବା ସମାଜବାଦୀ ଗଳ୍ପ
(ଘ) ରାଜନୀତିକ ଗଳ୍ପ
(ଙ) ହାସ୍ୟବ୍ୟଙ୍ଗାତ୍ମକ ଗଳ୍ପ
(ଚ) ବୈଜ୍ଞାନିକ ଗଳ୍ପ
(ଛ) ମାନବତାବାଦୀ ଗଳ୍ପ
(ଜ) ଅନୁବାଦ ଗଳ୍ପ
(ଝ) କଥାହୀନ କଥା ବା ଉଦ୍ଭଟ ଗଳ୍ପ
(ଞ) ସାଙ୍କେତିକ ଗଳ୍ପ
(ଟ) ଆଞ୍ଚଳିକ ଗଳ୍ପ
(ଠ) ମିନି ଗଳ୍ପ

ଏହାଛଡ଼ା ଐତିହାସିକ ଗଳ୍ପ, ପ୍ରତୀକବାଦୀ ଗଳ୍ପ ଓ ପ୍ରାକୃତବାଦୀର ଗଳ୍ପ ବିଭାଗର ନାମୋଲ୍ଲେଖ କରାଯାଇ ପାରେ । ପୁଣି ରସ ଭେଦରେ ଗଳ୍ପଗୁଡ଼ିକୁ ଆହୁରି ଅନନ୍ତ ବିଭାଗରେ ବିଭକ୍ତ କରାଯାଇ ପାରେ । ସେ ଯାହାହେଉ, ଆଜିର ଯେଉଁ ଗଳ୍ପସାହିତ୍ୟ ବହୁବର୍ଣ୍ଣୀ ବର୍ଣ୍ଣବିଭା ଧରି ପାଠକ ଆଗରେ ଦଣ୍ଡାୟମାନ ହୋଇଛି ତା'ର ଇତିହାସ ପ୍ରତି ଦୃଷ୍ଟି ସଞ୍ଚାରଣ କଲେ, ଆଶ୍ଚର୍ଯ୍ୟ ହେବାକୁ ହୁଏ ।

## ଭାରତୀୟ କାହାଣୀର ପ୍ରାଚୀନତା :

ଭାରତବର୍ଷରେ କାହାଣୀ ଏକ ନବାଗତ ଅତିଥି ନୁହେଁ; ଏହା ସହସ୍ର ବର୍ଷର ପୁରାତନ । ବୈଦିକ ସାହିତ୍ୟରେ ଯେଉଁ କାହାଣୀ ଓ ଉପାଖ୍ୟାନମାନ ଦେଖିବାକୁ ମିଳେ ସେଗୁଡ଼ିକ ବେଦଠାରୁ ମଧ୍ୟ ପ୍ରାଚୀନତର ବୋଲି ଆଲୋଚକମାନେ ମତ ଦିଅନ୍ତି । କାରଣ ସେସବୁ ପ୍ରଥମେ ଲୋକମୁଖରେ ବଞ୍ଚି ରହିଥିଲା ଏବଂ କାଳକ୍ରମେ ସ୍ରଷ୍ଟା ଋଷିଗଣ ତାକୁ ସାହିତ୍ୟିକ ରୂପ ଦେଲେ । ଋକ୍ ବେଦରେ ଆମେ ଅନେକ

କାହାଣୀ ଦେଖିବାକୁ ପାଉଁ । ଏହି ବେଦର ଦଶମ ମଣ୍ଡଳସ୍ଥ ପୁରୁରବା-ଉର୍ବଶୀ କାହାଣୀ ଏକ ଆକର୍ଷଣୀୟ ଲେଖା । ସେ ଯାହାହେଉ, ଭାରତୀୟ ପ୍ରାଚୀନ ଗଳ୍ପର ଜ୍ୱଳନ୍ତ ନିଦର୍ଶନ ସଂସ୍କୃତ ଓ ପ୍ରାକୃତ ସାହିତ୍ୟରେ ପ୍ରଚୁର ଦେଖିବାକୁ ମିଳେ । କେତେକ ମତ ଦିଅନ୍ତି ଯେ, ବିଶ୍ୱସାହିତ୍ୟ କ୍ଷେତ୍ରକୁ ଭାରତବର୍ଷର ସର୍ବଶ୍ରେଷ୍ଠ ଅବଦାନ ହେଉଛି ତା'ର ଗଳ୍ପ-ସାହିତ୍ୟ । ପାଶ୍ଚାତ୍ୟ ସାହିତ୍ୟରେ ଯେଉଁ ଉପଦେଶାତ୍ମକ କାଳ୍ପନିକ ଗଳ୍ପ ଦେଖିବାକୁ ମିଳେ ତାହା ଭାରତରୁ ଆରବ ଓ ପାରସ୍ୟ ବାଟ ଦେଇ ଯାଇଛି ।

ଭାରତୀୟ କଥାସାହିତ୍ୟକୁ ମୁଖ୍ୟତଃ ତିନୋଟି ଯୁଗରେ ବିଭକ୍ତ କରାଯାଇପାରେ । ତାହା ହେଉଛି (କ) ପ୍ରାଚୀନ କାହାଣୀ, (ଖ) ମଧ୍ୟଯୁଗୀୟ କଥା ଓ (ଗ) ଆଧୁନିକ ଗଳ୍ପ । ପ୍ରାଚୀନ କାହାଣୀ ପାଇଁ ବେଦ ଉପନିଷଦର ଗଳ୍ପ, ରୂପକ କଥା, ପଞ୍ଚତନ୍ତ୍ର, କଥା ସରିତ ସାଗର, ଜାତକ ଗଳ୍ପ, ବାସବ ଦତ୍ତା, କାଦମ୍ବରୀ, ଦଶକୁମାର ଚରିତ ଓ ବଡ଼୍ଡ଼ କହା ଆଦି ଉଦାହରଣ ପାଇଁ ଯଥେଷ୍ଟ । ମଧ୍ୟଯୁଗୀୟ କାହାଣୀର ଆରମ୍ଭ ମୁସଲମାନମାନଙ୍କର ଭାରତ ଆକ୍ରମଣ ପରେ ହିଁ ଘଟିଛି; ଅର୍ଥାତ୍ ପ୍ରାୟତଃ ତ୍ରୟୋଦଶ ଶତାବ୍ଦୀ ବେଳକୁ । ମୁସଲମାନମାନେ ଭାରତକୁ ଆସିଲାବେଳେ ସାଙ୍ଗରେ କାହାଣୀ ଗ୍ରନ୍ଥ 'ଆରବିଆନ୍ ନାଇଟ୍' ନେଇ ଆସିଥିଲେ । ଏହା ପ୍ରେମପ୍ରଧାନ ଥିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଭାରତୀୟ କାହାଣୀ ଉପରେ ଏ ଗ୍ରନ୍ଥ ପ୍ରଭାବ ପକାଇଲା । ବହୁ ପୂର୍ବରୁ ଭାରତୀୟ କାହାଣୀର ଏକ ଉନ୍ନତ ପରମ୍ପରା ଗଢ଼ି ଉଠିଥିଲେ ମଧ୍ୟ ଶାସକର ଆଦର୍ଶରେ ନବରୂପ ଧରି ଦେଖାଦେବାକୁ ତାହା ଆଗେଇ ଆସିଲା । ଏଇ ପ୍ରେମକୁ ମୁଖ୍ୟ ଉପଜୀବ୍ୟ କରି ପରବର୍ତ୍ତୀ କାଳରେ ଭାରତୀୟ ଗଳ୍ପସାହିତ୍ୟରେ ବହୁ ଗଳ୍ପ ଲେଖାଗଲା । ମାତ୍ର ଊନବିଂଶ ଶତାବ୍ଦୀର ଶେଷ ପାଦ ହିଁ ଭାରତୀୟ ଆଧୁନିକ ଗଳ୍ପର ମୂଳଦୁଆ ହେଲା । ଇଂରାଜୀ ସାହିତ୍ୟ ଓ ଇଂରେଜ ସଂସ୍କୃତିର ତାଗିଦାକୁ ସ୍ୱୀକାର କରି ଏହା ନବଯୁଗର ବିଜୟ ଘୋଷଣା କଲା ।

**ଓଡ଼ିଆ ଗଳ୍ପର ଇତିହାସ :**

ଓଡ଼ିଆ ଭାଷା ସଂସ୍କୃତର କବଳରୁ ମୁକ୍ତ ହୋଇ ପ୍ରାକୃତ ବାଟ ଦେଇ ସ୍ୱତନ୍ତ୍ର ରୂପ ଧାରଣ କରିବା ବେଳଠାରୁ କେତେ ଯେ କଥିତ ଓ

ଲିଖିତ ଗଳ୍ପ ସୃଷ୍ଟି କରିବ ତା'ର ଇୟତ୍ତା ନାହିଁ; ମାତ୍ର ସେଗୁଡ଼ିକର ସ୍ୱରୂପ ଦେଖିବାର ଅବକାଶ ଏବେ ଆମ ନିକଟରେ ଖୁବ୍ କମ୍ । ଏହି କାହାଣୀ ମାନଙ୍କ ଭିତରୁ କେତେକ ସଂସ୍କୃତ ଓ ପ୍ରାକୃତ ଲେଖାର ଅନୁବାଦ, ଅନୁସରଣ ଓ ଅନୁକରଣରେ ସୃଷ୍ଟି ଏବଂ ଆଉ କେତେକ ସମ୍ପୂର୍ଣ୍ଣ କପୋଳକଳ୍ପିତ । ଓଡ଼ିଆ ଗଳ୍ପର ଏଇ ପ୍ରାକ୍‌କାଳୀନ ସୃଷ୍ଟିମାନଙ୍କ ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ ଚିତ୍ତବିନୋଦନ ସହ ଜ୍ଞାନ, ଉପଦେଶ ଓ ନୀତି ପ୍ରଚାର ଥିଲା ଏଗୁଡ଼ିକର ପ୍ରଧାନ ଲକ୍ଷ୍ୟ । ଏଇ ପରମ୍ପରା କେବଳ ପ୍ରାଚୀନ ଓଡ଼ିଆ ଗଳ୍ପରେ ନୁହେଁ, ସମଗ୍ର ଭାରତୀୟ ପ୍ରାଚୀନ ଗଳ୍ପ-ସାହିତ୍ୟରେ ପରିଦୃଷ୍ଟ ହୁଏ ।

ଏହି ପରିପ୍ରେକ୍ଷୀରେ ପରୀକାହାଣୀ, ରାଜକୁମାର ରାଜକୁମାରୀ କାହାଣୀ, କଲୁରିବେଣ୍ଟ କଥା, ଚୁଆଁ ଚୁଇଁ କଥା, ଚକୁଳିଆ ପଣ୍ଡା କଥା, ସୋମନାଥ ବ୍ରତ କଥା ଓ ଖୁଦୁରୁକୁଣୀ ଓଷା କଥା ଆଦିର ସ୍ମୃତି ଭୁଲି ହୋଇଯାଏ; କିନ୍ତୁ ଭୁଲି ହୁଏନା ତୋତା ମଇନା ତରଡ଼ା; ରୁଦ୍ରସୁଧାନିଧି, ବତିଶ ସିଂହାସନ କଥା ଓ ଚତୁର ବିନୋଦର ସ୍ମୃତିକୁ । 'ତୋତା ମଇନା ତରଡ଼ା' ଇତିହାସ ନାମରେ ଗୁଡ଼ାଏ ଅର୍ଦ୍ଧସତ୍ୟ ଏବଂ କପୋଳକଳ୍ପିତ କାହାଣୀର ସମାହାର । ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କର 'ରୁଦ୍ରସୁଧାନିଧି' ଗୋଟିଏ କାବ୍ୟଧର୍ମୀ ଦୀର୍ଘ ଗଳ୍ପ । ଶିବ ଦାସଙ୍କ 'ବତିଶ ସିଂହାସନ କଥା' ସଂସ୍କୃତାନୁସାରୀ ପିତୁଳା (ପରୀ) କାହାଣୀ । ଏହା ଛଡ଼ା ଧର୍ମବିଶ୍ୱାସର ବଳବତ୍ତର ଲାଗି ବହୁ ଓଷା ଓ ବ୍ରତ କଥା ମଧ୍ୟ ସୃଷ୍ଟି ହୋଇଛି, ଯାହାର ଲେଖକ ମଧ୍ୟ ଅଜ୍ଞେୟ । ମାତ୍ର ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ଏକ ବ୍ୟଙ୍ଗଧର୍ମୀ ଗଳ୍ପଗ୍ରନ୍ଥ, ଯେଉଁଥିରେ ସାମାଜିକ କ୍ଷେତ୍ରରେ ଓଡ଼ିଆ ଭାଷାର ପ୍ରଥମ ସ୍ପର୍ଶ ମିଳେ ।

ବଡ଼ଜେନାଙ୍କ ପରେ ବହୁ ଓଡ଼ିଆ ଗାଳ୍ପିକ ଗଳ୍ପ ଲେଖିବାର ପ୍ରୟାସ କରିଛନ୍ତି । କେତେକ ଲୋକ ରୁଚିକୁ ନେଇ ସୃଷ୍ଟି ହୋଇଥିବାରୁ ବେଶ୍ ସୁଖପାଠ୍ୟ । କିନ୍ତୁ ଊନବିଂଶ ଶତାବ୍ଦୀର ଅନ୍ତିମ ପାଦର ଓଡ଼ିଆ ଗଳ୍ପ ଯେମିତି ଜଣେ ସାର୍ଥକ ଶିଳ୍ପୀର ସମର୍ଥ ଲେଖନୀକୁ ଅପେକ୍ଷା କରି ରହିଥିଲା—ପ୍ରତୀକ୍ଷିତା ପିଙ୍ଗଳା ଭଳି ।

## ଆଜିର ଗଳ୍ପ ଓ ଗାଳ୍ପିକ :

ଜାତୀୟ ଅଭ୍ୟୁତ୍ଥାନ କାଳର ସେଇ ସାର୍ଥକ ଶିଳ୍ପୀ ହେଲେ ଓଡ଼ିଆ ଗଳ୍ପସାହିତ୍ୟର ନବ ଜନ୍ମଦାତା **ଫକୀରମୋହନ ସେନାପତି** (୧୮୪୩—୧୯୧୮)। ଏତିକବେଳକୁ ଭାରତୀୟ ଗଳ୍ପ ପାରମ୍ପରିକ ସଜ୍ଜା ବଦଳାଇ ପୂରାପୂରି ପଶ୍ଚିମା ରଂଗ ମାଖି ହେଉଥିଲା । ଏହାର ଏକମାତ୍ର କଣ୍ଟୁ-ଡିକ୍ କାରଣଟି ହେଲା ବ୍ରିଟିଶ ଶାସନ । ଇଂରେଜ ଜାତି ଏ ଦେଶର ଶାସକ ହେବା ଫଳରେ ତାଙ୍କ ଶିକ୍ଷା, ସଂସ୍କୃତି ଓ ଗୃହଚଳନ ଆମ ଉପରକୁ ଗ୍ରହଣ କରିବା ନିମିତ୍ତ ଲଦି ଦେଲେ । ଆମ ଜ୍ଞାନ-କୋଠରୀର ଅନ୍ୟସବୁ ପଟ ବନ୍ଦ ରଖି କେବଳ ପଶ୍ଚିମ ଝରକା ଖୋଲି ରଖିବାକୁ ବାଧ୍ୟ କଲେ । ଫଳରେ ଗଳ୍ପର ଆଦର୍ଶ ବା ମାପକାଠି କହିଲେ ବୁଝିବାକୁ ହେଲା ଇଂରାଜୀ ବା ଇଂରାଜୀରେ ଅନୁଦିତ ତାଙ୍କ ପରିପାର୍ଶ୍ୱର ସେହି ଧର୍ମୀ କେତୋଟି ଲେଖା । ଭାରତ ମାଟିରେ ତା'ର ଅନୁକରଣ ଓ ଅନୁସରଣର ପର୍ବ ଆରମ୍ଭ ହୋଇ ଯାଇଥିଲା । ମାତ୍ର ବିପ୍ଳବୀ ଫକୀରମୋହନ ଓଡ଼ିଆରେ ଯେଉଁ ଗଳ୍ପ ଲେଖିବା ଆରମ୍ଭ କଲେ, ସେଗୁଡ଼ିକ ମୁଖ୍ୟତଃ ହେଉଛି ଅଧଃପତିତ ଭାରତୀୟ ସମାଜ ବିରୁଦ୍ଧରେ ସୁତୀବ୍ର ମସୀ ସଂଗ୍ରାମ। ବୋଧଦାୟିନୀ ପତ୍ରିକାର ସେଇ ଅରକ୍ଷ ସନ୍ତାନ 'ଲଛମନିଆ'କୁ ଭୁଲି ପାରିଲେ, ଆମେ ନିଶ୍ଚୟ ଦୃଢ଼ ସ୍ୱରରେ କହିବୁ ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ସଫଳ ଶ୍ରେଷ୍ଠ କାହାଣୀ ହେଉଛି 'ରେବତୀ' (୧୮୯୮)। 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ଏହି ଗଳ୍ପଟିର ମାର୍ମିକ ଅଶ୍ରୁଳ ବିଦ୍ରୋହୀ-ଆବେଦନ୍ମୀ ବାଲ୍ମୀକୀଙ୍କର ବେଦନାସିକ୍ତ ଆଦ୍ୟମତମ ଶ୍ଳୋକର ଭାବ ସହିତ କ'ଣ ତୁଳନା କରାଯାଇ ପାରିବନି ? ପ୍ରାଚୀନ ପରମ୍ପରା ଓ ନୂତନ ଭାବଧାରାର ସମନ୍ୱୟକାରୀ ସ୍ରଷ୍ଟା ଫକୀରମୋହନ ବୋଧେ ଏଇଥିପାଇଁ ପ୍ରାତଃ ସ୍ମରଣୀୟ । ନାରୀ ଶିକ୍ଷା ବିରୁଦ୍ଧରେ ପାରମ୍ପରିକତାର ଯେଉଁ ଅଗ୍ନିବର୍ଷଣ, ତା'ର ଭିତରେ ଦଗ୍‌ଧୀଭୂତ ଚରିତ୍ରର ବେଦନା-ବିଧୂରିତ ଆଲେଖ୍ୟ ।

ସେନାପତିଙ୍କ ଗଳ୍ପସାହିତ୍ୟରେ ଯେଉଁ ଆଦର୍ଶ, ଯଥାର୍ଥବାଦିତା ଓ ବ୍ୟଙ୍ଗ ନିହିତ ଥିଲା, ତାହା ପରବର୍ତ୍ତୀ କାଳର ସ୍ରଷ୍ଟାମାନଙ୍କ ସୃଷ୍ଟିରେ ବିକଶମାନ ରୂପ ଧାରଣ କରି ନ ପାରି ବରଂ କ୍ଷୀଣ ହୋଇ ପଡ଼ିଲା ।

ତଥାପି ବ୍ୟକ୍ତି ଚରିତ୍ରର ଆଦର୍ଶ ଧରି ଚରିତ୍ରପ୍ରଧାନ କାହାଣୀ ଲେଖିବାକୁ ଆଗେଇ ଆସିଲେ କାନ୍ତକବି **ଲକ୍ଷ୍ମୀକାନ୍ତ ମହାପାତ୍ର** (୧୮୮୮-୧୯୫୩)। ଜୀବନର ଗମ୍ଭୀରତାକୁ ମାପିବା ନିମିତ୍ତ ସେ ମଧ୍ୟ ଦରଦର ପୁଟ ଦେଲେ ତାଙ୍କ ଗଳ୍ପରେ । 'ବୁଢ଼ା ଶଙ୍ଖାରି' ଲକ୍ଷ୍ମୀକାନ୍ତଙ୍କର ଏକ ହୃଦୟ ସ୍ପନ୍ଦନକାରୀ କରୁଣ କାହାଣୀ, ଯାହାକୁ କି ମାନବିକତାବାଦର ଏକ ଜ୍ୱଳନ୍ତ ଆଲେଖ୍ୟ କୁହାଯାଇପାରେ । ଭାରତୀୟ ସଂସ୍କୃତିର କେଉଁ କ୍ଷୀଣତମ ବିନ୍ଦୁଟି ଉପରେ ଏ କାହାଣୀଟି ଦଣ୍ଡାୟମାନ ହୋଇ ନିଜର ହୃଦୟସ୍ପର୍ଶୀ ଡିଣ୍ଡିମ ବଜାଇବାରେ ଅବ୍ୟାହତ ଅଛି ।

ମାତ୍ର ଯନ୍ତ୍ର ସଭ୍ୟତାର ପ୍ରତିବାଦୀ 'ମାଗୁଣିର ଶଗଡ଼' (୧୯୩୮) । ଦୁର୍ବାର ଗତିରେ ଏ ସମସ୍ତଙ୍କ ଆଗକୁ ଆସି ନିଜର ନ୍ୟାଯ୍ୟ ଆସନ ଦାବୀ କରି ବସେ । ଓଡ଼ିଆ ଭାଷାର ଅବିସ୍ମରଣୀୟ ପତ୍ରିକା 'ନିଆଁଖୁଣ୍ଟା'ର ପ୍ରତିଷ୍ଠାତା **ଗୋଦାବରୀଶ ମହାପାତ୍ର** (୧୮୯୮-୧୯୬୭) ହାତରେ ବ୍ୟଙ୍ଗ ବିଦ୍ରୂପର ଶାଣିତ ତରବାରୀ ଧରି ଆଗେଇ ଗଲାବେଳେ ମାଗୁଣିର ହୃଦୟ ବେଦନା ଉପଲବ୍ଧି କରିବାକୁ ଓଡ଼ିଆ ଜାତିକୁ ବାଧ୍ୟ କରନ୍ତି । ମାନବୀୟ ସମ୍ବେଦନାର ଦ୍ୟୋତକ ମାଗୁଣି କେବଳ ଖଲ୍ଲିକୋଟର ନୁହେଁ, ସମଗ୍ର ଭାରତୀୟ ଶ୍ରମଜୀବୀ ଜନତାର ମୂର୍ତ୍ତି ପ୍ରତୀକ । ଦୁସ୍ଥ ଓଡ଼ିଆ ଜାତିର ସାମାଜିକ ବାସ୍ତବତା ସହ ଗାନ୍ଧିବାଦୀ ଦର୍ଶନର ସ୍ପର୍ଶ ଏଇ ଗଳ୍ପଟିକୁ ଆହୁରି ଜୀବନ୍ତ କରି ଗଢ଼ି ତୋଳିଛି ।

ସବୁଜପନ୍ଥୀ ସ୍ରଷ୍ଟାମାନେ ରୋମାଣ୍ଟିସିଜମ୍ ଓ ମାୟାବାଦରେ ଛନ୍ଦି ହୋଇ ପଡୁଥିଲା ବେଳେ **କାଳିନ୍ଦୀଚରଣ ପାଣିଗ୍ରାହୀ**(୧୯୦୧-)ଙ୍କର 'ମାଂସର ବିଳାପ' କେବଳ ଓଡ଼ିଆ ସାହିତ୍ୟରେ କାହିଁକି, ଭାରତୀୟ ସାହିତ୍ୟରେ ତା'ର ସୁଦୂର ପ୍ରତିହତ ଧ୍ୱନି ତୋଳେ । ମାଡ୍ରାସରୁ ପ୍ରକାଶ ପାଉଥିବା 'ତ୍ରିବେଣୀ' ଇଂରାଜୀ ପତ୍ରିକାରେ ଏହି ଗଳ୍ପଟି 'ଓନ୍‌ଲି ଏ ଡଗ' ନାମରେ ପ୍ରଥମେ ପ୍ରକାଶିତ ହୋଇଥିଲା, ଯାହାକୁ ଅନୁବାଦ କରିଥିଲେ ଅନ୍ୟତମ ବିଶିଷ୍ଟ ଗାଳ୍ପିକ ଭଗବତୀ ଚରଣ ପାଣିଗ୍ରାହୀ । ପରେ ପରେ ଏହି ଗଳ୍ପଟି ବିଭିନ୍ନ ଭାରତୀୟ ଭାଷାରେ ଏବଂ ଚାଇନିଜ, ଜର୍ମାନୀ ପ୍ରଭୃତି ବିଦେଶୀ ଭାଷାରେ ମଧ୍ୟ ଅନୁଦିତ ହୋଇଛି । ଲୌକିକତା ନାମରେ ଆମଠୁଁ କିଭଳି ମାନବିକତା ଦିନକୁ ଦିନ କମି ଯାଉଛି ଏବଂ ପଶୁ

*

ହୃଦୟରେ ସ୍ନେହ ପ୍ରେମ ଓ କରୁଣାର ପ୍ରସ୍ରବଣ କଭଳି ସଞ୍ଜୀବିତ ହୋଇ ପାରୁଛି ତା'ର ଏକ ମାର୍ମିକ ଚିତ୍ର ଦେଖିବାକୁ ମିଳେ ମାଂସର ବିଳାପ ଗଳ୍ପରେ ।

କିନ୍ତୁ ୧୯୩୭ ମସିହାରେ ପ୍ରକାଶିତ **ଭଗବତୀଚରଣ ପାଣିଗ୍ରାହୀ** (୧୯୦୭-୧୯୪୩)ଙ୍କର 'ଶିକାର' ଗଳ୍ପ ଓଡ଼ିଆ ଗଳ୍ପ-ସାହିତ୍ୟର ଦିଗ ହଠାତ୍ ବଦଳାଇ ଦେଲା । ପରମ୍ପରାକୁ ଏକ ବୌଦ୍ଧିକ ଆପ୍‌ପଡ଼ ଦେଇ ସାମ୍ୟବାଦୀ ଭାବଧାରା ଉପରେ ସେ ସୃଷ୍ଟି କଲେ ଗୋଟିଏ ନୂତନ ଦିଗ୍‌ବଳୟ । ସର୍ବ ପ୍ରଥମ ପ୍ରଗତିବାଦୀ ଗଳ୍ପ ହିସାବରେ ଏହାର ସମ୍ମାନ ଯେ ବହୁ ଊର୍ଦ୍ଧ୍ୱରେ, ଏକଥା ଅସ୍ୱୀକାର କରାଯାଇ ପାରେନା । ସାମାଜିକ ଅବିଚାର ବିରୁଦ୍ଧରେ ଯେଉଁ ପୁଞ୍ଜିଭୂତ ବିଦ୍ରୋହ ପ୍ରତି ମୁହୂର୍ତ୍ତରେ ଅବଦମିତ ହୋଇ ରହୁଛି ତାକୁ ବହିଃ ପ୍ରକାଶ କରିବା ହିଁ ଗାଳ୍ପିକଙ୍କର ପ୍ରଧାନ ଉଦ୍ଦେଶ୍ୟ । ଗଳ୍ପଟିରେ ଶିଳ୍ପନୈପୁଣ୍ୟ ଓ ପରିବେଷଣ ପରିପାଟୀ ପ୍ରତି ସଜାଗ ହୋଇଥିଲେ ବୋଧେ ଏହା ଅଦ୍ୱିତୀୟ ସୃଷ୍ଟି ହୋଇ ପାରିଥାଆନ୍ତା ।

ଉପନ୍ୟାସକାର ହିସାବରେ ପ୍ରସିଦ୍ଧି ଲାଭ କରିଥିବା **ରାଜକିଶୋର ପଟ୍ଟନାୟକ** (୧୯୧୨—)ଙ୍କର ଗଳ୍ପ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ବେଶ୍ ପରିସ୍ଫୁଟ । ଜୀବନର ବିବିଧ ରୂପକୁ ରୂପାୟନ କରିବା କ୍ଷେତ୍ରରେ ତାଙ୍କ ଗଳ୍ପ ଗୁଡ଼ିକର ଭୂମିକା ବିଶେଷ ସ୍ମରଣୀୟ । ସେ ସୃଷ୍ଟିର ପ୍ରାଚୁର୍ଯ୍ୟ ଭିତରେ ସୂଚନା ଦେବା ଅପେକ୍ଷା ଇଙ୍ଗିତକୁ ଅଧିକ ପସନ୍ଦ କରନ୍ତି, ଯାହା କି ବହୁ ସମୟରେ ପାଠକଙ୍କ ନିକଟରେ ସୁମିଷ୍ଟ ହୋଇ ପଡ଼େ । 'ଘାସ' ତାଙ୍କର ଗୋଟିଏ ପ୍ରତୀକଧର୍ମୀ କାହାଣୀ । ଦାରିଦ୍ର୍ୟ ବିରୁଦ୍ଧରେ ଅନିଶ୍ୱାସୀ ହୋଇ ସଂଗ୍ରାମ କରୁଥିବା ଓଡ଼ିଆ ଜାତି ପରାଜୟ ଗ୍ଲାନିରେ କେବେ ଭାଙ୍ଗି ପଡ଼ିନ । ଉତ୍ତରାଧିକାରଗତ ହୋଇଥିବା କୁସଂସ୍କାରର ନିର୍ଲଜ ଡୋରିରେ ବାନ୍ଧି ହୋଇ ମଧ୍ୟ ସେ ଦେଖୁଛି ସୁସ୍ଥ ଭାବରେ ବଂଚି ରହିବାର ଅଭୁଲ ସ୍ୱପ୍ନ । ସେଠି କୌଣସି ନିର୍ଦ୍ଦିଷ୍ଟ ସମାଧାନ କରିବାକୁ ଲେଖକ ମଧ୍ୟ ପ୍ରସ୍ତୁତ ନୁହଁନ୍ତି । ହୁଏତ ସେଇଠି ରହିଛି ଗାଳ୍ପିକଙ୍କର ଅଭିନବତ୍ୱ ।

ରୋମାଣ୍ଟିକ୍ ତନ୍ମୟତା ସହ ଶବ୍ଦାଡ଼ମ୍ବରର ଅଦ୍ଭୁତ ଅନୁରଣନ **ରାଜକିଶୋର ରାୟ**(୧୯୧୪—)ଙ୍କ ଗଳ୍ପ ଗୁଡ଼ିକରେ ମୁଖ୍ୟତଃ ପରିଦୃଷ୍ଟ ହୁଏ । ଅବଶ୍ୟ ପରବର୍ତ୍ତୀ କାଳରେ ତାଙ୍କ ଲେଖାରେ ସାମାନ୍ୟ ବ୍ୟତିକ୍ରମ ମଧ୍ୟ ଦେଖାଯାଏ । ସାମାଜିକ ପରିପ୍ରେକ୍ଷୀରେ ସାମ୍ପ୍ରତିକ କାଳର ମଣିଷକୁ ମନୋବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ କରିବା ତାଙ୍କ ଶୈଳୀକୁ ଅସ୍ୱୀକାର କରି ହେବନି । ଶ୍ରୀଯୁକ୍ତ ରାୟଙ୍କର 'କଳିଙ୍ଗ ଶିଳ୍ପୀ' ଏକ ଅନୁପମ ସୃଷ୍ଟି । କଳିଙ୍ଗର ବିଗତ ଗୌରବକୁ ପୁନଃ ମୂଲ୍ୟାଙ୍କନ କରିବା ସଙ୍ଗେ ସଙ୍ଗେ ଗୋଟିଏ ରୋମାଞ୍ଚଧର୍ମୀ ବୈଚିତ୍ର୍ୟମୟ କାଳ୍ପନିକ ପ୍ରେମ-କାହାଣୀର ଅବତାରଣା ଏଥିରେ କରିଛନ୍ତି ।

ଉପରୋକ୍ତ ସ୍ରଷ୍ଟାମାନଙ୍କୁ ଛାଡ଼ିଦେଲା ପରେ ଆମେ ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ନୂତନ ସ୍ୱାଦର ଗଳ୍ପ ପାଉ ସ୍ରଷ୍ଟା **ସୁରେନ୍ଦ୍ର ମହାନ୍ତି**-(୧୯୨୨—)ଙ୍କ ପାଖରୁ । ବୋଧହୁଏ ଓଡ଼ିଆ ଗଳ୍ପସାହିତ୍ୟ ଏକ ପୂର୍ଣ୍ଣାଙ୍ଗ ରୂପ ଧାରଣ କରିବା ପାଇଁ ବହୁ ଦିନରୁ ଶ୍ରୀଯୁକ୍ତ ମହାନ୍ତିଙ୍କୁ ଅପେକ୍ଷା ରଖିଥିଲା । ମାଂସଳ ଶବ୍ଦସମ୍ଭାର ଭିତରେ ବୌଦ୍ଧ ଯୁଗର କାହାଣୀକୁ ଅପୂର୍ବ ରୂପଶ୍ରୀ ମଣ୍ଡିତ କରିବାରେ ସେ ଯେତିକି ଧୂରନ୍ଧର, ଆଧୁନିକ ରୂପକଳ୍ପ ଓ ମନନଶୀଳତା ଦ୍ୱାରା ସାମ୍ପ୍ରତିକ ମଣିଷର ଜଟିଳ ଜୀବନଧାରାକୁ ବ୍ୟବଚ୍ଛେଦ କରିବାରେ ସେ ସେତିକି ସିଦ୍ଧହସ୍ତ । ତାଙ୍କର 'ନୟନପୁର ଏକ୍ସପ୍ରେସ୍' ଗଳ୍ପଟି ସଂଘାତମୟ ଭାରତୀୟ ଜୀବନର ଏକ ମାର୍ମିକ ରୂପାୟନ । ଯେଉଁ ହୃଦୟରୁ ବିପ୍ଳବର ଦାବାଗ୍ନି ବାହାରି ପାରମ୍ପରିକତାକୁ ଧ୍ୱଂସ କରିବାକୁ ଆଗୁଆନ୍, ସେଇ ହୃଦୟରୁ ମାନବିକତାର ତଟିନୀ ସୃଷ୍ଟି ହୋଇ ସେଇ ଚରିତ୍ରକୁ କରୁଛି ମହୀୟାନ୍ ।

ସମ୍ପୂର୍ଣ୍ଣ ନୂତନ ଶୈଳୀର ଗଳ୍ପ ଲେଖକ ହିସାବରେ **ବ୍ରହ୍ମାନନ୍ଦ ପଣ୍ଡା**(୧୯୨୨—)ଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମେ ସେ ବହୁସଂଖ୍ୟକ ଆଖ୍ୟାନଧର୍ମୀ କ୍ଷୁଦ୍ର ଗଳ୍ପ ଲେଖିବାର ପ୍ରୟାସ କରିଛନ୍ତି । ରାଜନୈତିକ ରହସ୍ୟାଭିତ୍ତିକ ଓ ବ୍ୟକ୍ତିଗତ ଅନ୍ତଃସ୍ପର୍ଶୀ କାହାଣୀ ଯେପରି ତାଙ୍କ ଲେଖନୀରେ ରୂପାୟିତ; ଯୌନମୂଳକ ଓ ଜୀବନାନୁଭୂତିଧର୍ମୀ ଗଳ୍ପ ସେହିପରି ତାଙ୍କ ସୃଷ୍ଟିରେ ଶୋଭାଶ୍ରୀମଣ୍ଡିତ ।

'ବଂଶୀ ଓ ବନ୍‌ଶୀ' ସେହି ସ୍ୱାଦର ଗୋଟିଏ ପ୍ରଶ୍ନକଧର୍ମୀ କାହାଣୀ, ଯେଉଁଥିରେ ପ୍ରେମର ସ୍ୱର ହିଁ ମୁଖ୍ୟ ।

ଆଧୁନିକ ମଣିଷ ମନକୁ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ବିଶ୍ଳେଷଣ କରିବାରେ **କିଶୋରୀଚରଣ ଦାସ** (୧୯୨୪—) ଅତିମାତ୍ରାରେ ସଫଳ ଶିଳ୍ପୀ । ଅଭାବନୀୟ ଓଡ଼ିଆ ଗଳ୍ପସାହିତ୍ୟରେ ସେ **ହେଉଛନ୍ତି** ଜଣେ କ୍ଷତିପୂରଣକାରୀ ଗାଳ୍ପିକ, ଶ୍ରୀଯୁକ୍ତ ଦାସଙ୍କର ଗଳ୍ପଗୁଡ଼ିକ ମୁଖ୍ୟତଃ ମଧ୍ୟବିତ୍ତ ସମାଜର ପୃଷ୍ଠଭୂମି ଉପରେ ରଚିତ ଏବଂ ସାର୍ବଜନୀନ ସ୍ପର୍ଶରେ ରୁଦ୍ଧିମନ୍ତ । 'ବିଧର୍ମୀ' ତାଙ୍କର ଏକ ମନନଶୀଳ ସାଙ୍କେତିକ ଗଳ୍ପ । ଏଥିରେ ମଣିଷ ମନର ଦୁର୍ବଳତା ଓ ଭାବାବେଗ ଅତି ଅଦ୍‌ଭୁତ ଭାବେ ଚିତ୍ରିତ ହୋଇଛି । ପାରିବାରିକ ତଥା ଧାର୍ମିକ ଚେତନାର ସ୍ପର୍ଶରେ ଏ ଗଳ୍ପଟି ହୋଇ ଉଠିଛି ଆହୁରି ଅଧିକ ଜୀବନ୍ତ ।

ମୌଳିକ ଚିନ୍ତାଧାରାକୁ ସାମଗ୍ରିକ ଦୃଷ୍ଟି ଅନ୍ତରାଳକୁ ନେଇ ଅନୁବାଦ କଳା ପ୍ରତି ଆଗ୍ରହୀ ହେଲେ, ଓଡ଼ିଆ ସାହିତ୍ୟରେ ଆମେ ତା'ର ଅଭାବ ଦେଖୁନା । କେତେକ ସ୍ରଷ୍ଟା ବେଳେବେଳେ ନିଜର ମୌଳିକ ସୃଷ୍ଟିକୁ ଛାଡ଼ିଦେଇ ବିଦେଶୀ ବା ପ୍ରତିବେଶୀ ସାହିତ୍ୟକୁ ନିଜ ସାହିତ୍ୟରେ ଏକୀଭୂତ କରିବାକୁ ଚେଷ୍ଟା କରିଛନ୍ତି । ଏହି ଚେଷ୍ଟାରୁ ବାଦ୍ ଯାଇ ନାହାନ୍ତି ଡକ୍ଟର **ଗୋପାଳଚନ୍ଦ୍ର ମିଶ୍ର** (୧୯୨୫—) । 'ଅବତାର' କାହାଣୀରୁ ଶ୍ରୀଯୁକ୍ତ ମିଶ୍ରଙ୍କ ଅନୁବାଦ କଳାର ବିଶେଷତ୍ୱ ସହଜେ ଉପଲବ୍‌ଧି କରି ହୁଏ । ଏହି ଗଳ୍ପଟି ପଞ୍ଜାବୀ କଥାକାର କୁଲବନ୍ତ ସିଂହ ବାର୍କଙ୍କର ସୃଷ୍ଟି । ଆଧୁନିକ ପଞ୍ଜାବୀ ସାହିତ୍ୟରେ ଶ୍ରୀଯୁକ୍ତ ବାର୍କ ଜଣେ ପ୍ରସିଦ୍ଧ ଗାଳ୍ପିକ । ଏହି ପ୍ରଖ୍ୟାତନାମା ଗାଳ୍ପିକଙ୍କର ବହୁ ଗଳ୍ପ ବିଭିନ୍ନ ଭାରତୀୟ ଭାଷାରେ ଅନୁଦିତ । ପଞ୍ଜାବର ଫୁଲବାରେନ୍‌ଠାରେ ୧୯୨୧ ମସିହାରେ ତାଙ୍କର ଜନ୍ମ । 'ଧରିତ୍ରୀ ଓ ଆକାଶ' ତାଙ୍କର ଗୋଟିଏ ପ୍ରସିଦ୍ଧ ଗଳ୍ପ ଗ୍ରନ୍ଥ । ଏଥିରେ ପଞ୍ଜାବୀଙ୍କ ସାଧାରଣ ଜୀବନର ସହନଶୀଳତାର ଗଭୀର ନମୁନା ସୁସ୍ପଷ୍ଟ ।

ହାସ୍ୟରସାତ୍ମକ ଧାର୍ଡ଼ କାହାଣୀ ଲେଖକ ହିସାବରେ ଓଡ଼ିଆ ସାହିତ୍ୟରେ **ମହାପାତ୍ର ନୀଳମଣି ସାହୁ** (୧୯୨୬—) ମଧ୍ୟ ଖୁବ୍

ଖ୍ୟାତି ଲାଭ କରିଛନ୍ତି । ମାତ୍ର ତାହାର ଭିତରେ ଆମର ଅନ୍ତଃସାରଶୂନ୍ୟ ମଧ୍ୟବର୍ଗୀୟ ସମାଜକୁ ବ୍ୟବଚ୍ଛେଦ କରିବାରେ ସେ ବି ପଛାଇ ନାହାନ୍ତି । ସାମ୍ପ୍ରତିକ କାଳରେ ସେ ଧର୍ମଚେତନା ମଧ୍ୟରେ ଅଧଃପତିତ ସମାଜ-ଜୀବନର ରୂପରେଖ ଦେଇ ତାଙ୍କ ବଳିଷ୍ଠ ଲେଖନୀର ପରିଚୟ ବାଢ଼ିଛନ୍ତି । 'ମନମତ୍ତ ଦୁହାଁଳ ଗାଈ' ଏକ ନବଯୁଗ ସୃଷ୍ଟିକାରୀ ଗଳ୍ପ । ନିହାତି ଗାଉଁଲି ଶବ୍ଦ ଗୁଡ଼ିକରେ ଏ ଗଳ୍ପଟି ଯେତିକି ରସବନ୍ତ, ସାଧାରଣ ଜୀବନର ଭିତ୍ତିଭୂମି ଉପରେ ଆଧ୍ୟାତ୍ମିକ ଜୀବନର ତର୍ଜମା ସେତିକି ହୃଦ୍ୟ । ସମ୍ଭବତଃ ସମାଜଚେତନାର ଅଧଃପତନରେ ଧର୍ମଚେତନାର ବିଜୟ ହେବାର ସ୍ୱପ୍ନ ଲେଖକ ଦେଖିଛନ୍ତି ।

ଗାଳ୍ପିକ **ଅଖିଳମୋହନ ପଟ୍ଟନାୟକ** (୧୯୨୭—)ଙ୍କ ସୃଷ୍ଟିରେ ରସୋତ୍ତୀର୍ଣ୍ଣତାର ଜୁଆର ସହ ନାଟକୀୟ ଭାବର ପ୍ରମାଣ ଯଥେଷ୍ଟ ଦେଖିବାକୁ ମିଳେ । ସେଣ୍ଟିମେଣ୍ଟାଲ କାହାଣୀର ଜାଲରେ ଛନ୍ଦି ହୋଇ-ଥିବା ତାଙ୍କ ଗଳ୍ପମାନଙ୍କୁ ପଢ଼ିସାରିଲା ପରେ ମନେହୁଏ, କିଛି ଗୋଟାଏ ଏଇ ଗଳ୍ପ ଭିତରେ ଆମେ ହଜେଇ ବସିଚୁ । 'ଜମିର ଫୁଲ' ତାଙ୍କର ସେହି ଧର୍ମୀ ଏକ ପ୍ରତୀକାତ୍ମକ କାହାଣୀ । ଅବଚେତନର ଜୁଆର ଭିତରେ ଚେତନାର ସୂକ୍ଷ୍ମ ଖିଅଟି କେତେବେଳେ ହଜିଯାଏ ତାହା ସହଜେ ଧରି ହୁଏନା । ବ୍ୟକ୍ତିସତ୍ତାକୁ କେଉଁ ଅଜଣା ଅଜାତରେ ହଜାଇ ମଣିଷ ତା'ର ଉପସ୍ଥିତି ପ୍ରତି ମୁହୂର୍ତ୍ତରେ ଅନୁଭବ କରେ, ଏହି ଗଳ୍ପଟି ତା'ର ଏକ ମର୍ମସ୍ପର୍ଶୀ ଆଲେଖ୍ୟ ।

କ୍ଷୁଦ୍ରତମ ଅନୁଭୂତି ଭିତରେ ଗୋଟିଏ ବୃହତ୍ତର ଚିନ୍ତାରାଜ୍ୟର ଖୋରାକ ଯୋଗାଇବା ଦିଗରେ **କୃଷ୍ଣପ୍ରସାଦ ମିଶ୍ର** (୧୯୩୩—) ଅନ୍ୟତମ । ସୂକ୍ଷ୍ମ ମନୋବୃତ୍ତିକୁ ଅଭୂତପୂର୍ବ ଭାବେ ଉପସ୍ଥାପନା କରିବା ତାଙ୍କ ସୃଷ୍ଟିର ବିଶେଷତ୍ୱ । ଚରିଣ୍ଟୋର ଅନୁଭୂତି ତାଙ୍କର ଶ୍ରେଷ୍ଠ ଗଳ୍ପ-ଗୁଡ଼ିକରେ ସଫଳତାର ପ୍ରଲେପ ଦେଇଛି । 'ନାୟାଗ୍ରା ଓ ଦେବଯାନୀ' ଗଳ୍ପରେ ମୁହୂର୍ତ୍ତିକର ଚିନ୍ତାଧାରା ଭିତରେ ତାରୁଣ୍ୟର ହଜିଲା ସ୍ୱପ୍ନ ଫେଣ୍ଟାଫେଣ୍ଟି ହୋଇଛି । ଭାରତୀୟ ହିନ୍ଦୁ ଦର୍ଶନର ସର୍ବବ୍ୟାପକତାକୁ ଲେଖକ କପରି ପ୍ରକୃତିର ପ୍ରତ୍ୟେକ ପୃଷ୍ଠାରେ ଦେଖିଛନ୍ତି ଏହା ତା'ର

ପ୍ରମାଣ । ନାୟୁାଗ୍ରା ଓ ଦେବଯାନୀଙ୍କ ବ୍ୟବଧାନ ଭିତରେ ସଂଶ୍ଳିଷ୍ଟ ଚରିତ୍ରର ବ୍ୟକ୍ତିସତ୍ତା ଅନନ୍ତ କାରୁଣ୍ୟର ଶିକାର ମାତ୍ର ।

ମନୋବୈଜ୍ଞାନିକ ସିଦ୍ଧାନ୍ତକୁ କେବଳ ଦଲିଲ ରୂପେ ଉପସ୍ଥାପିତ ନ କରି ଅପୂର୍ବ କଳାକୃତିରେ ରୂପାୟିତ କରିବା ଦିଗରେ ଶିଳ୍ପୀ **ମନୋଜ ଦାସ** (୧୯୩୪—) ହିଁ ଅଗ୍ରଗଣ୍ୟ । ଶ୍ରୀଯୁକ୍ତ ଦାସଙ୍କ ଲେଖନୀ ପାଖରେ ଓଡ଼ିଆ ଗଳ୍ପ ପୁଣି ଥରେ ମୋଡ଼ ବଦଳିଛି । ସାମ୍ପ୍ରତିକ କାଳର ଜଣେ ଶକ୍ତିଶାଳୀ ସ୍ରଷ୍ଟା ରୂପେ କେବଳ ଓଡ଼ିଆରେ ନୁହେଁ, ସର୍ବଭାରତୀୟ ସ୍ତରରେ ମଧ୍ୟ ତାଙ୍କ ଯଶସ୍ୱୀ ପ୍ରତିଭାର ସ୍ୱାକ୍ଷର ମିଳିଛି । ମନୋଗ୍ରନ୍ଥିର ସୂକ୍ଷ୍ମ ଚେତନାମାନଙ୍କ ଭିତରେ ପଥହରା ହୋଇଥିବା ମଣିଷର ସତ୍ତାଟିକୁ ଚିହ୍ନିବା ପାଇଁ 'ଅନେକ ସ୍ମିତ ହସ'ରେ ଅତି ଚମତ୍କାର ମୂଲ୍ୟାୟନ କରାଯାଇଛି । ଓଡ଼ିଆ ଗଳ୍ପସାହିତ୍ୟରେ ନବଚେତନାର ବାହକ ହିସାବରେ ଗାଳ୍ପିକ ମନୋଜ ଦାସଙ୍କୁ ଚିହ୍ନି ବସିଲାବେଳେ ସହୃଦୟ ମନନଶୀଳତା ଆବଶ୍ୟକ କରେ ।

ନବଚେତନାର ଅନ୍ୟତମ ବାର୍ତ୍ତାବହ ରୂପେ **ଶାନ୍ତନୁ କୁମାର ଆଚାର୍ଯ୍ୟ**(୧୯୩୪—)ଙ୍କ ନାମ ମଧ୍ୟ ସ୍ମରଣୀୟ । ସୂକ୍ଷ୍ମ ଚେତନାଭିତ୍ତିକ ମନୋବୈଜ୍ଞାନିକ କଥାକାରଙ୍କ ମଧ୍ୟରେ ତାଙ୍କ ସୃଷ୍ଟିକଳା ଅତିମାତ୍ରାରେ ଜୀବନ୍ତ । କେବଳ ଗୁଡ଼ାଏ ଖଣ୍ଡିତ ଅନୁଭୂତିକୁ ଏକାଠି କରି କଥାହୀନତାର କଥା ସୃଷ୍ଟି କରିବା ହେଉଛି ଶ୍ରୀଯୁକ୍ତ ଆଚାର୍ଯ୍ୟଙ୍କ ଅଦ୍ଭୁତ କଳାକୌଶଳ । ସାଙ୍କେତିକ ଅଭିବ୍ୟଞ୍ଜନାକୁ ବ୍ୟାହତ ନ କରି ସେ ସୃଷ୍ଟି କରିଛନ୍ତି ଏକ ଅନୁପମ 'ହୃଦ-କୋଲପ' । ଘୃଣା ଆଉ ବିଦ୍ୱେଷରେ ମାନବିକତାକୁ ପ୍ରତିବାଦ କରିଆସୁଥିବା ମଣିଷ ହୃଦୟର କୋଲପ କେତେ ସୂକ୍ଷ୍ମ ଭାବଟିରେ ଖୋଲି ଯାଇଛି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସମସ୍ତ ତିକ୍ତ ଚିନ୍ତାଧାରାର ଊର୍ଦ୍ଧ୍ୱରେ ସନାତନୀ ଆର୍ଯ୍ୟଭୂମିର ଏକତ୍ୱର ଜୟଗାନ ଲହରାୟିତ ହୋଇ ଉଠିଛି ।

ଅଳ୍ପରେ ଅନଳ୍ପର ସୂଚନା ଦେବା ଗାଳ୍ପିକ **ଶ୍ରୀନିବାସ ଉଦ୍‌ଗାତା**(୧୯୩୫—)ଙ୍କର ଏକ ମୁଖ୍ୟ ଶୈଳୀ । କାବ୍ୟମୟ ପରିବେଶ ଭିତରେ

ସୂକ୍ଷ୍ମ ଚିନ୍ତାଧାରାର ଖିଅ ଗୋଟି ଗୋଟି ହୋଇ ବିଂଚି ହୋଇ ପଡ଼େ ତାଙ୍କ ଗଳ୍ପସମ୍ଭାରରେ । ଅନୁବାଦକ ହିସାବରେ ସେ ବିଶେଷ ସୁଖ୍ୟାତି ଅର୍ଜନ କରିଥିଲେ ମଧ୍ୟ ହିନ୍ଦୀ ଭାଷାରେ ମୌଳିକ ଗଳ୍ପ ଲେଖି ବି ସେ ସୁପ୍ରତିଷ୍ଠିତ । ତାଙ୍କର 'ଜ୍ୱର ଆସିଥିଲା' ଗଳ୍ପଟି ପ୍ରାୟ ଚଉଦଟି ଯାକ ଭାରତୀୟ ଭାଷାରେ ଅନୂଦିତ ହୋଇ ପ୍ରକାଶ ପାଇଛି । ଗଳ୍ପଟିରେ ଭିତର ଯେଉଁ ସଙ୍କେତ ଦିଆଯାଇଛି ତାହାକୁ ସ୍ପର୍ଶ କରି ପାରିଲେ ପାଠକ ନିଶ୍ଚିତ ଭାବେ ଅତିଶୟ ଆନନ୍ଦରେ ଉଲ୍ଲସିତ ହୋଇ ଉଠିବ । ଏହି ବହୁ ଆଲୋଚିତ ଗଳ୍ପଟିର ହିନ୍ଦୁକୁଳର ପାରମ୍ପରିକ ପ୍ରଥା କିଭଳି ଗୋଟିଏ ସ୍ନେହସିକ୍ତ ଡୋରିରେ ବାନ୍ଧି ହୋଇ ରହି ପାରିଛି ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ ମିଳେ ।

ଓଡ଼ିଆ ସାହିତ୍ୟରେ ଗାଳ୍ପିକା ମାନଙ୍କ ଭିତରୁ ଗୋଟିଏ ନାଁ ବୋଧହୁଏ ବିଶେଷ ସ୍ମରଣୀୟ, **ବୀଣାପାଣି ମହାନ୍ତି** (୧୯୩୬—) । ନାରୀ ଜୀବନର ଅନନ୍ତ ସମସ୍ୟାକୁ ଅତି ନିଚ୍ଛକ ଭାବରେ ପରିପ୍ରକାଶ ଦିଗରେ ଗାଳ୍ପିକା ଆଶାତୀତ ଭାବେ ସଫଳୀକୃତ । ସ୍ୱକୀୟ ଗଭୀର ଜୀବନାନୁଭୂତି ତାଙ୍କ ସୃଷ୍ଟିରେ ସ୍ପଷ୍ଟ ଭାବେ ପ୍ରତିଫଳିତ । ତା' ଛଡ଼ା ଯୁବଚେତନାର ନୈରାଶ୍ୟମୟ ସ୍ୱର ତାଙ୍କ ଗଳ୍ପମାନଙ୍କରେ ଦେଖିବାକୁ ମିଳେ । 'ତଟିନୀର ତୃଷ୍ଣା' ଏକ ବିପ୍ଳବିନୀ ନାରୀମନର ଅଭୁତପୂର୍ବ ସମୀକ୍ଷା । ସାମାଜିକତାର ଫମ୍ପା ଦ୍ୱାହିରେ ନିଜ ମନର ସମସ୍ତ ଆବେଗକୁ ଅତି ଦୟନୀୟ ଭାବରେ ଗୁପି ରଖି ହତାଶାଜର୍ଜରିତ ହୋଇଥିବା ଚରିତ୍ରର ଏହା ଏକ ଆତ୍ମିକ ବ୍ୟବଚ୍ଛେଦ ।



# ରେବତୀ

## ଫକୀରମୋହନ ସେନାପତି

କଟକ ଜିଲାର ହରିହରପୁର ପ୍ରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର । ଆଗିଲା ପିଛିଲା ଚାରି ବଖରା, ଖଞ୍ଜା ପାଚେରି ଚାଳିଆରେ ଢିଙ୍କିଶାଳ, ଅଗଣା ମଝିରେ କୂଅ, ଆଗକୁ ଦାଣ୍ଡଦୁଆର, ପଛକୁ ବାଡ଼ିଦୁଆର । ଦାଣ୍ଡଦୁଆର ମେଲାଘରେ ଦାଣ୍ଡଲୋକେ ବସାଉଠା କରନ୍ତି, ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ ଦରମା ଦୁଇଟଙ୍କା, ଦରମା ଛଡ଼ା ପାଉଣ୍ଡି ବଟଶୋଧନୀ, ବାହାଲହଣା ଇତ୍ୟାଦିରୁ ଦୁଇପଇସା ହାତ ପଇଠ ହୁଏ । ସବୁ ମିଶାଇଲେ ମାସକୁ ଚାରିଟଙ୍କାରୁ ଊଣା ହେବ ନାହିଁ । ସଂସାର ଏକରକମ ଚଳେ । ଏକରକମ କଅଣ ? ବୋଇଲେ ଭଲ ଚଳେ । ଏଇଟା ହେଲା ନାହିଁ, ସେଇଟା ଘରେ ନାହିଁ, ଏପରି କଥା କାହାରି ମୁହଁରୁ ଶୁଣାଯାଏ ନାହିଁ । ବାଡ଼ିରେ ଶାଗମାଗ ଛଡ଼ା ସଜନା ଦୁଇ ଗଛ । ଘରେ ଗାଈ ଦୁଇଟା ବନ୍ଧା, ଦୁଧ ଟିକିଏ, ଚହ୍ଲା ମହୀଏ ହାଣ୍ଡି ତଳେ ଲାଗିଥାଏ । ବୁଢ଼ୀ ଚଷୁ ମିଶାଇ ଘଷି ତାଡ଼ିଦିଏ, କାଠକଣା ବାଧେ ନାହିଁ । ଜମିଦାର ସାଢ଼େ ତିନିମାଣ ଜମି ଚଷିବାକୁ ଦେଇଛନ୍ତି । ଧାନ ବଳେ ନାହିଁ କି କମେ ନାହିଁ । ଶ୍ୟାମବନ୍ଧୁଟି ବଡ଼ ସିଧାସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାଆନ୍ତି । ବାପରେ ଧନରେ କହି ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ; କାହାରିଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ପ୍ରଜାମାନେ ଖଜଣା ଦେଇ ପାଉତି ମାଗନ୍ତି ନାହିଁ । ସେ ଚାରି ଆଙ୍ଗୁଳ ତାଳପତ୍ରରେ ଖଣ୍ଡେ ପାଉତି ଲେଖି ବଳେ ଚୂଳରେ

ଗୁଞ୍ଜିଦେଇ ଯାଏ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଚାରିଜଣ । ଆପେ ଦୁଇ ପରାଣୀ, ମା ବୁଢ଼ୀ, ଦଶ ବରଷର ଗୋଟିଏ ଝିଅ । ଝିଅର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି 'କୃପାସିନ୍ଧୁ ବଦନ' ଗାଏ, ଆଉ ଆଉ ଭଜନ ଗାଏ, କେବେ କେବେ କାଠ ରୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ । ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢ଼େର ଭଜନ ଶିଖିଗଲାଣି; ତା ପିଲାମୁହଁକୁ ଭଜନ ଗୁଡ଼ାକ ଖୁବ୍ ମାନେ । ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ ଗାଁର କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପାପାଖରୁ ଗୋଟିଏ ଭଜନ ଶିଖିଥିଲା । ସେଇଟି ଗାଇଲେ ଶ୍ୟାମବନ୍ଧୁ ଭାରି ଖୁସି ହୁଏ । ପ୍ରତିଦିନ ଝିଅକୁ ଗାଇବାକୁ କହେ, ରେବତୀ ଗାଏ ।

ଦୁଇ ବରଷ ତଳେ ସ୍କୁଲ ଡେପୁଟି ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ରାତିଏ ରହି ଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ କେତେଜଣ ଲୋକ କୁହାପୋଛା କରିବାରୁ ଡିପୋଟି ବାବୁ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କଠାରୁ ରିପୋର୍ଟ କରି ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲର ଅବଧାନ ବିଭାଗର ଉତ୍ତୀର୍ଣ୍ଣ ଛାତ୍ର, ନାମ ବାସୁଦେବ । ନାମଟି ଯେପରି ବାସୁଦେବ, ଲୋକଟା ମଧ୍ୟ ସେହିପରି ବାସୁଦେବ । ଚୋକାଟାର ଭିତର ବାହାର ସବୁ ସୁନ୍ଦର । ଗାଁ ମଝିରେ ଚାଲିଯିବାବେଳେ ମୁଣ୍ଡ ଟେକି କାହାକୁ ଚାହେଁ ନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ, ଯେମନ୍ତ ଗୋଟିଏ ଚାଉଳରେ ଗଢ଼ା । ପିଲାଦିନେ ପିହୁଲା ରୋଗ ହୋଇଥିଲା । ତା ମା ମୁଣ୍ଡରେ ତତଲା ବୋତଲ ମୁହଁ ଚିହ୍ନ ଦେଇଥିଲା । ସେ ଚିହ୍ନ ଆଜଯାଏ ଅଛି । ହେଲେ, ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲା କାଳରୁ ମା ବାପ ଛେଉଣ୍ଡ, ମାମୁଘରେ ରହି ମଣିଷ ହୋଇଛି । ବାସୁଦେବ ଜାତିରେ କରଣ । ଶ୍ୟାମବନ୍ଧୁ ମଧ୍ୟ କରଣ । କେବେ ପୂନେଇ ଗୁରୁବାରରେ ଘରେ ପିଠାପଣା ହେଲେ ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ, "ବାପା ବାସୁ ! ସଞ୍ଜବେଳେ ଟିକେ ଆମ ଘରକୁ ଯିବ, ତୁମ ମାଉସୀ ଡାକୁଛନ୍ତି ।" ଏହିପରି ଯିବା ଆସିବାରେ ସେମାନଙ୍କ ମଧ୍ୟରେ ଗୋଟାଏ ମାୟା ଲାଗିଗଲାଣି । ରେବତୀ ମା ବାସୁକୁ ଦେଖିଲେ କହେ,

"ଆହା, ମା ଛେଉଣ୍ଡିଟି କ'ଣ ଖାଏ,—କିଏ ତା ଖାଇବା ଦେଖୁଛି ।"
ବାସୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଡ଼ିଏ ଅଧେ ବସି ଆସେ । ବାସୁକୁ ଦୂରରୁ ଦେଖିଲେ, "ବାସୁଭାଇ ଅଇଲେ, ବାସୁଭାଇ ଅଇଲେ" ବୋଲି ରେବତୀ ପାଟିକରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣା ଭଜନଗୁଡ଼ିକ ବାସୁକୁ ଶୁଣାଏ । ବାସୁକୁ ସେହି ଗୀତ ନୂଆ ନୂଆ ପରି ଲାଗେ । ଦିନେ ଏକଥା ସେକଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ, କଟକରେ ଗୋଟିଏ ଝିଅ ସ୍କୁଲ ଅଛି, ସେଠାରେ ଝିଅମାନେ ପଢ଼ନ୍ତି, ଲୁଗାସିଆଁ ଶିଖନ୍ତି । ସେହିଦିନଠାରୁ ରେବତୀକୁ ପାଠ ପଢ଼ାଇବାକୁ ଶ୍ୟାମବନ୍ଧୁଙ୍କର ମନହେଲା ଏବଂ ଆପଣା ମନର କଥା ବାସୁଦେବଙ୍କୁ କହିଲେ । ବାସୁ ଶ୍ୟାମବନ୍ଧୁଙ୍କୁ ପିତୃତୁଲ୍ୟ ମାନେ । କହିଲା, "ଆଜ୍ଞା, ମୁଁ ସେହି କଥାଟା କହିବ କହିବ ହେଉଥିଲି ।" ଦୁଇଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା । ଦୁଇ ଡାଳରେ ଘର ଭିତରକୁ ଯାଇ ମା'କୁ ଆଉ ଜେଜୀକୁ, "ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି" ଖବର ଦେଲା । ମା କହିଲେ "ହଉ ହଉ ପଢ଼ିବୁ ।" ଜେଜୀ କହିଲେ, "ପାଠ କ'ଣ ଲୋ ? ମାଇକିନିଆ ଝିଅଟା ପାଠ କ'ଣ ? ରନ୍ଧାବଢ଼ା ଶିଖ, ପିଠାପଣା କରି ଶିଖ, ଟେହି ଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କ'ଣ" ?

ରାତିରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତ ଖାଉଛନ୍ତି, ରେବତୀ ସାଙ୍ଗରେ ବସି ଖାଉଛି । ବୁଢ଼ୀ ଆଗରେ ବସି—ଭାତ ପୁଂଜାଏ ଆଣ, ଡାଲି ପାଣି ଟିକିଏ ପକେଇ ଯା, ଲୁଣ ଟିକିଏ ଦେ' ଇତ୍ୟାଦି କଥା ବୋହୂପ୍ରତି ଆଦେଶ କରୁଛନ୍ତି । କଥାରେ କଥାରେ ବୁଢ଼ୀ କହିବସିଲେ, "ହଁରେ ଶ୍ୟାମ ! ରେବୀ ପାଠ ପଢ଼ିବ— ପାଠ କ'ଣ ରେ ! ତରଳ ଝିଅର ପାଠପଢ଼ା କ'ଣ ?" ଶ୍ୟାମବନ୍ଧୁ କହିଲେ, "ହେଉ, କହୁଛି ତ ପଢ଼ୁ ।" ରେବତୀ ଭାତ ଖିଆ ହୋଇଯାଇ ଜେଜୀକୁ ଗାଳିଦେଇ କହିଲା, "ଯା ଲୋ ବୁଢ଼ୀ ଉଗୁରିଟା !" ତାହା ବାଦ୍ ଅଳି କରି ବାପାକୁ କହିଲା, "ନାଁ ବାଁପାଁ, ମୁଁ ପାଁଠ ପଁଢ଼ିଁବିଁ ।" ଶ୍ୟାମବନ୍ଧୁ କହିଲେ, "ହଁ-ହଁ, ତୁ ପଢ଼ିବୁ ।" ସେଦିନ କଥା ଏତିକି ।

ତହିଁ ଆରଦିନ ଉପରଓଳି ବାସୁଦେବ 'ସୀତାନାଥ ବାବୁ'ଙ୍କ 'ପ୍ରଥମ ପାଠ' ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସି ହୋଇ ବାପା ପାଖରେ ବସି କିତାପର ମୂଳ ପୃଷ୍ଠାଠାରୁ ଶେଷ ପୃଷ୍ଠାଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ, ଘୋଡ଼ା, ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ ଘୋଡ଼ାମାନ ବାନ୍ଧି ଖୁସିହୁଅନ୍ତି, କେହି ଘୋଡ଼ା ଚଢ଼ି ଖୁସିହୁଏ, ଆମ ରେବୀ ଛବିଟା ଦେଖି ଖୁସି । ରେବୀ ଧାଇଁ ଯାଇ ମା'କୁ କିତାପର ଛବିସବୁ ଦେଖେଇଲା, ତା'ପରେ ବାଦ୍ ଜେଜୀକୁ ଦେଖେଇଲା । ଜେଜୀ କଅଁଳ ବିରକ୍ତ ହୋଇ କହିଲା, "ହିଁ—ଯା—ଯା— ।" ରେବୀ ତାକୁ 'ଦୂର୍ ଦୂର୍' ଗାଳି ଦେଇ ଫେରିଆସିଲା ।

ଆଜି ଦିନଟି ଭଲ—ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଡ଼ପାରି ଗାଧୋଇ ନୂଆ ଲୁଗା ଖଣ୍ଡିଏ ପିନ୍ଧି ଘର ବାହାର ହେଉଛି, ବାସୁଭାଇ ଆସିଲେ କିତାପ ପଢ଼ାଇଦେବ । ବୁଢ଼ୀ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇ ନାହିଁ । ବେଳ ଛ ଘଡ଼ି ସମୟରେ ବାସୁ ଯାଇ ପଢ଼େଇ ଦେଲା, ସ୍ୱରେ—ଅ, ସ୍ୱରେ—ଆ, ହ୍ରସ୍ୱ—ଇ, ଦୀର୍ଘ—ଈ, ହ୍ରସ୍ୱ—ଉ, ଦୀର୍ଘ—ଊ ଇତ୍ୟାଦି । ପ୍ରତିଦିନ ପଢ଼ା ଚାଲିଲା, ପ୍ରତିଦିନ ସଞ୍ଜବେଳେ ବାସୁ ଯାଇ ପଢ଼େଇଦିଏ । ଦୁଇ ବରଷ ମଧ୍ୟରେ ରେବତୀ ଢେର ପଢ଼ିଗଲାଣି । ମଧୁବାବୁଙ୍କ ଛନ୍ଦମାଳା ପଢ଼ି ଯିବା ବେଳେ ତୁଣ୍ଡରେ ବାଟୁଳି ବାଜେ ନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଇବାବେଳେ ମା ପୁଅ ଦୁଇଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେଇ କଥାର ଉପସଂହାର । ଶ୍ୟାମବନ୍ଧୁ—କି ମା, ଭଲ ହେବ ନାହିଁକି ? ବୁଢ଼ୀ କହିଲେ—ହଁ, ଭଲ ହେବ; ଜାତିକଥାଟା ବୁଝିଛୁ ନା ?

ଶ୍ୟାମବନ୍ଧୁ—ମୁଁ ଆଜିଯାଏ ଆଉ କ'ଣ ବୁଝୁଥିଲି ? ଭଲ କରଣ, ଗରିବ ପୁଅ ହେଲେ କ'ଣ ହେବ, ଜାତି ଭଲ ।

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ମର୍ମ ସେ କ'ଣ ବୁଝିଲା ସେ ଜାଣେ, ମାତ୍ର ସେହି ଦିନଠାରୁ ତାହାର ଭାବଭଙ୍ଗୀ

ଅନ୍ୟରକମ ଦେଖୁଅଛନ୍ତି । ତାକୁ ବାପା ଆଗରେ ବାସୁଭାଇ ପଢ଼ାଇ-ଦେଲେ କପଟ ଗୋଟାଏ ଲାଜମାଡ଼େ; ଅକାରଣ ସକାରଣ ସବୁବେଳେ ହସ ମାଡ଼େ, ମୁଣ୍ଡ ତଳକୁ ପୋତି ଦେଇ ଦୁଇ ଓଠ ବୁଜି ହସ ଲୁଚାଏ । ଏଣିକି ବାସୁ ପଢ଼ାଇ ଦେଲେ କେତେବେଳେ ଭୁନ ଭୁନ ପଢ଼େ, କେତେବେଳେ ଖାଲି ହୁଁ-ହାଁ କରେ; ପଢ଼ା ସରିଲେ ପାଟି ବୁଜି ହସି ହସି ଘରକୁ ପଳାଇ ଯାଏ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡଦୁଆର କବାଟକୁ ଧରି କାହାକୁ ଚାହିଁଥାଏ, ବାସୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡାକରେ ବାହାରେ ନାହିଁ । ଏଣିକି ରେବତୀ ଦାଣ୍ଡକୁ କେବେ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁ ଦେଖୁ ପଞ୍ଚମୀକୁ ପଞ୍ଚମୀ ଦୁଇବରଷ ହୋଇଗଲାଣି । ବିଧାତାଙ୍କର ବିଧାନ, କାହାର ଦିନ ସମାନ ଭାବରେ ଯିବ ନାହିଁ । ଫଗୁଣମାସିଆ ଦିନ, କାହିଁ କଛି ନାହିଁ, ଅଚାନକ କାହୁଁ ବାଡ଼ ଆସିଲା । ସକାଳେ ଗ୍ରାମରେ ଶୁଣାଗଲା, ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିଙ୍କୁ ବାଡ଼ ଧରିଛି । ମଫସଲ ଗାଁରେ ବାଡ଼ ପଡ଼ିଲେ ଛାଟି କବାଟ ପଡ଼ିଯାଏ । ବାଡ଼ ବୁଢ଼ୀ ସଙ୍ଗେ ପଦ୍ମ ଟୋକେଇଟିଏ କାଖେଇ ଦାଣ୍ଡରେ ମନୁଷ୍ୟ ଗୋଟାଉଛି, ଏପରି ସମସ୍ତେ ମଣନ୍ତି । ଦୁଆରକୁ କାହାର ଆସିବାର ନାହିଁ । ମାଇକିନିଆ ଦୁଇଟା କ'ଣ କରିବେ ? ପିଲାଟା ଡକାପାଡ଼ି ଘର ବାହାର ହେଉଛି । ବାସୁଦେବ ଶୁଣି ସ୍କୁଲ ଛାଡ଼ି ଧାଇଁଲା । ଡର ନାହିଁ, ଭୟ ନାହିଁ, ଆପଣା ଶରୀର ପ୍ରତି ଭାବନା ନାହିଁ । ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲାଉଥାଏ, ପାଣି ଟୋପାଏ ଟୋପାଏ ମୁହଁରେ ଦେଉଥାଏ । ବେଳ ତିନ ପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁ ମୁହଁକୁ ଚାହିଁ ଖନେଇ ଖନେଇ କହିଲା, "ବାଁ—ସୁଁ ରେଁ—ବଁ ଆଁ—ଗିଁ—ଲାଁ ।" ବାସୁ ଭୋ ଭୋ କରି ଡକାପାଡ଼ିଲା । ଘରେ ଚହଳ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ । ଦେଖୁଁ ଦେଖୁଁ ସଞ୍ଜ ବେଳକୁ କଛିନାହିଁ । କ'ଣ କରିବେ—ବାସୁ କାଲିକା ପିଲା, ଆଉ ଦୁଇଟା ଭୁଆସୁଣୀ । ଗ୍ରାମରେ କରଣ ସେହି ଘରକ; ଶାଶୁ, ବୋହୂ, ବାସୁଦେବ ତିନିଜଣ ଧରାଧରି କରି କର୍ମ ଚଳାଇଲେ । ଶ୍ମଶାନରୁ ଫେରି ଆସିବାବେଳକୁ କୁଆଁ ତାରା ଉଇଁଲାଣି । ଘରେ ପଶିବା ମାତ୍ରକେ ରେବତୀ ମା

ପୋଖରୀପାଣି ଗଲା । ଦେଖୁଁ ଦେଖୁଁ ଦିନ ଦିପ୍ରହର ବେଳେ ଗ୍ରାମରେ ହାଟ ହେଲା, ରେବତୀ ମା ନାହିଁ ।

ଦିନ ଗୁଲିଯାଏ, କାହାର ଲାଗି ଦିନ ବସି ରହେ ନାହିଁ । କାହାର ପାଲିଙ୍କି ଉପରେ ପାଟଛତା, କାହାର ବେଢ଼ ଉପରେ କୋରଡ଼ା । ଦିନ ଯାଉଛି ସମସ୍ତଙ୍କର, ଯିବ ସମସ୍ତଙ୍କର । ଦେଖୁଁ ଦେଖୁଁ ଛଅମାସ କଟିଗଲାଣି । ଶ୍ୟାମବନ୍ଧୁଙ୍କ ଘରେ ଦୁଇଗୋଟି ଗାଈ ଥିଲେ, ଅଢ଼େଇଲ ବାକି ଟଙ୍କା ପକାଶେ ଜମିଦାର ଘର ଲୋକେ ଆସି ବାନ୍ଧି ନେଇଗଲେ । ଆମ୍ଭେମାନେ ଜାଣୁଁ, ଜମିଦାର ଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବ-ନିର୍ମାଲ୍ୟ ପରି ଜ୍ଞାନ କରେ । ଟଙ୍କାଟିଏ ଅସୁଲ ହେଲେ ଜମିଦାର କଚେରୀରେ ପେଠ ନ କରିବା ଯାଏ ତାହାର ନିଦ ନାହିଁ । ମାତ୍ର ତାହା ଉପରେ ଟଙ୍କା ଥାଉ ବା ନଥାଉ, ଗାଈ ଦୁଇଟି ବଡ଼ ଦୁଧିଆଳୀ, ଏକଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ତାହାଛଡ଼ା ଜମିଦାର ଚଷିବାକୁ ଯେ ଛଅମାଣ ଜମି ଦେଇଥିଲେ, ତାହା ଛଡ଼ାଇ ନେଲେଣି । ହଳଆଁଟା ବା ଘରେ ଆଉ କଆଁ ରହିବ ? ଦୋଳପୂର୍ଣ୍ଣିମା ଦିନ ସେ ଛାଡ଼ିଗଲା । ବଳଦ ଦୁଇଟା ସାଢ଼େ ସତର ଟଙ୍କାରେ ବିକା ଯାଇଥିଲା; ଦୁଇଜଣଙ୍କ ଛିପ୍ପାରେ ଖରଚ ଯାଇ ଯାହା ବଳିଥିଲା, ସଟାବଟା କରି ମାସେ ଚଳିଲା । ଆଜି ଡାଲଟା, କାଲି ପିଉଳଟା, ବିକାବଟା ବନ୍ଧାଛନ୍ଦାରେ ଆଉ ମାସେ ଗଲା । ବାସୁ ଦୁଇଓଳ ଦୁଆରକୁ ଆସେ, ରାତି ଘଡ଼ିଏ ଯାଏଁ ଥାଏ, ଆଈ ନାତୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାସୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାତୁଣୀ କେହି ନିଅନ୍ତି ନାହିଁ । ବଳେଇ ବଳେଇ ଦେଲେ ତାହା ଠଣାରେ ପଡ଼ିଥାଏ । ବାସୁ ଜାଣିପାରି ଆଉ କିଛି ଦିଏ ନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦୁଇଟା ପଇସା ନେଇ ସଉଦା କିଣି ଦିଏ । ସେଇ ଦୁଇ ପଇସାର ସଉଦାରେ ଆଠ ଦଶଦିନ ଚଳିଯାଏ । ଘରର ଗୁଳ ଉଡ଼ିଗଲାଣି, ଛାଉଣୀ ଦରକାର । ବାସୁ ଦୁଇ ଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇ ଅଛି, ଶରଣ ହେବାରୁ ଛପରବନ୍ଧ ହୋଇପାରି ନାହିଁ । ବୁଢ଼ୀ ଏବେ ଆଉ ଦିନ ରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜ ହେଲେ ବସି କାନ୍ଦେ । କାନ୍ଦି କାନ୍ଦି ଢଳେ ପଡ଼ିଯାଏ, ସେହିଠାରେ ରାତି କାଟେ । ରେବତୀ ଧକେଇ ଧକେଇ ପାଖରେ

ପଡ଼ିଯାଏ । ବୁଢ଼ୀ ଆଖିକି ଏବେ ଭଲ ଦିଶୁ ନାହିଁ, ବାପ୍ପାଣୀ ପରି ହୋଇଗଲାଣି । ଏବେ ସେ କାନ୍ଦିବାର ଛାଡ଼ି କରି ରେବତୀକୁ ଗାଳି ଦେବାର ଆରମ୍ଭ କରିଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା, ସବୁର ମୂଳ କାରଣ ରେବତୀ; ଏହା ସେ ମନ ମଧ୍ୟରେ ସ୍ଥିର ସିଦ୍ଧାନ୍ତ କରିସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଗୁଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ନେଇଗଲା । ରେବତୀ କୁଲକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀଛାଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳିଦେବାବେଳେ ରେବତୀ ଆଖିରୁ ଦୁଇଧାର ବହି ଯାଉଥାଏ, ଡରରେ ବୁଢ଼ୀ ପାଖରେ ଛିଡ଼ା ହୋଇପାରେ ନାହିଁ । ବାଡ଼ି ଦୁଆରେ, ନୋହିଲେ ଘରକୋଣରେ ମୁହଁ ଘୋଡ଼ାଇ କାଠଟି ପରି ବସିଥାଏ । ବାସୁ ମଧ୍ୟ ଦୋଷୀ; କାରଣ ରେବତୀ ତ ଏତେ ଦିନଯାଏ ପଢ଼ି ନଥିଲା, ସେହି ଆସି ପଢ଼ାଇଦେଲା । ମାତ୍ର ବୁଢ଼ୀ ବାସୁକୁ କିଛି କହିପାରେ ନାହିଁ । ବାସୁ ନ ହେଲେ ଘର ଦଣ୍ଡେ ଅଚଳ, ପୁଣି ଜମିଦାର ଘର ଲଟ ଛୁଡ଼ନାହିଁ । ରେବତୀ ଆଉ ଏଣିକି ସେହି ଲୀଳାମୟୀ ପ୍ରତିମା ନୁହେଁ, ତାହା ପାଟି ଆଉ କେହି ଶୁଣିନାହିଁ । ବାପ ମା ଗଲାଦିନୁ ତାକୁ ଦାଣ୍ଡ ଦୁଆରେ ଆଉ କେହି ଦେଖିନାହିଁ । କେତେଦିନ ଯାଏ ଭେଁ ଭେଁ କରି ଡାକ ପାରୁଥିଲା, ଏବେ ଆଉ ପାଟିକରି କାନ୍ଦେନାହିଁ; ମାତ୍ର ଦିବାରାତ୍ର ତାହାର ବଡ଼ ବଡ଼ ଆଖିଦୁଇଟା ସାନସାନ ମାଳକଇଁ ପରି ପାଣିରେ ଛଳ ଛଳ ହେଉଥାଏ । ତାହାର କ୍ଷୁଦ୍ର ପ୍ରାଣ—ତହିଁରୁ ଅତି କ୍ଷୁଦ୍ର ମନଟି ଏକାବେଳେକେ ଭାଙ୍ଗି ଯାଇଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ବାପ ମା ମରି ଯାଇଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏକଥା ସେ ବିଶ୍ୱାସ କରିପାରୁନାହିଁ । ପେଟରେ ଭୋକ ନାହିଁ, ଆଖିରେ ନିଦ ନାହିଁ, ଦିବାନିଶି ଅନୁକ୍ଷଣ ପିତାମାତା ଧ୍ୟାନ । ଜେଜେମା ଡରରେ ଖାଇବାକୁ ବସେ । ଭୂଇଁରୁ ପ୍ରାୟ ଉଠେ ନାହିଁ । ଦେହରେ ହାଡ଼ଚମ ଦୁଇଖଣ୍ଡ ଧୂଳିଧୂଳି ହେଉଛି । କେବଳ ବାସୁଦେବ ଘରକୁ ଆସିଲେ ଉଠି ବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳ ଜଳ କରି ବାସୁକୁ ଚାହିଁଥାଏ, ବାସୁ ଅନାଇଲେ ସାନ ନିଶ୍ୱାସଟାଏ ପକାଇ ମୁଣ୍ଡ ପୋତିଦିଏ ।

ଶ୍ୟାମବନ୍ଧୁ, ମଙ୍ଗଳବାର ଆଜିକୁ ହାତଗଣତିରେ ପାଞ୍ଚମାସ । ଜ୍ୟେଷ୍ଠମାସିଆ ଦିନ, ଠିକ୍ ଦିନ ଦୁଇପ୍ରହର ବେଳେ ବାସୁ ଦୁଆରେ ଡାକିଲା । ଏତେବେଳେ ସେ କୌଣସି ଦିନ ଆସେ ନାହିଁ । ବୁଢ଼ୀ କୁଣ୍ଠେଇ କୁଣ୍ଠେଇ ଯାଇ ଦୁଆର ଫିଟାଇ ଦେଲା । ବାସୁ କହିଲା—"ନେଜାମା, ଡିପୋଟି ଇନ୍‌ସ୍ପେକ୍ଟର ହରିହରପୁର ଥାନାରେ ବସି ପାଠଶାଳା ପିଲାମାନଙ୍କୁ ପାଠ ପଚାରିବେ, ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଚିଠି ଆସିଛି । ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ ।" ରେବତୀ କବାଟ କଣରେ ଛିଡ଼ା ହୋଇ ଶୁଣୁଥିଲା, ଲଦ୍ କରି ବସିପଡ଼ିଲା । ଭାଗ୍ୟେ କବାଟ ଧରିଥିଲା, ନୋହିଲେ ପଡ଼ିଯାଇଥାନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ, ଲୁଣ, ତେଲ, ବାଇଗଣ କିଣି ଆଣି ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁ ସଞ୍ଜବେଳେ ବାହାରିଲା । ବୁଢ଼ୀ କହିଲା, "ବାପା, ଖରାରେ ବୁଲିବୁ ନାହିଁ, ଦେହପାଆକୁ ଚାହିଁବୁ, ବେଳରେ ଦି'ଟା ଭୁଣ୍ଡରେ ଦେବୁ ।" ଏହା କହି ନିଃଶ୍ୱାସଟାଏ ପକାଇଲା । ରେବତୀ ଏକ ଧ୍ୟାନରେ ବାସୁକୁ ଚାହିଁଥାଏ, ଆଜିକା ଚାହାଣି ଅନ୍ୟରକମ । ଆଗେ ବାସୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିଲା, ଆଜି ସେ ଭାବ ନାହିଁ । ଆଜି ଚାରିଚକ୍ଷୁର ମିଳନ; ଆଖି ଫେରାଇବାକୁ କାହାର ଆପୃଭ ନାହିଁ । ବାସୁ ଚାଲିଗଲାଣି, ଆଉ ଦିନ ନାହିଁ, ଘର ବାହାର ଅନ୍ଧାର ପୂରିଗଲାଣି । ରେବତୀ ଯେପରି ଚାହିଁଥିଲା, ସେହିପରି ଚାହିଁଅଛି । ବୁଢ଼ୀ ଡାକିବାରୁ ତାହାର ଚେତନା ହେଲା, ଘର ବାହାର ସମସ୍ତ ଅନ୍ଧକାରମୟ ।

ରେବତୀ ବସି ଦିନ ଗଣୁଛି, ଆଜି ଛ'ଦିନ । ବାପ ମା ଗଲାଦିନୁ ଦାଣ୍ଡ ଦୁଆର ଦେଖି ନଥିଲା, ଆଜି ସକାଳୁ ଦାଣ୍ଡଦୁଆରେ ଦୁଇଥର ମୁହଁମାରି ଗଲାଣି । ବେଳ ଅନାଜ ଛ ଘଡ଼ି, ହରିହରପୁରରୁ ସ୍କୁଲ-ପିଲାମାନେ ଫେରି ଆସିବା ମାତ୍ରେ ଲୋକେ ବୋଲାବୋଲି ହେଲେ—ହରିହରପୁରରୁ ଫେରି ଆସିବା ସମୟରେ ଗୋପାଳପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଡ଼ି ଧରିଲା, ଚାରିଥର ପୋଖରୀପାଣି ହେଲା, ଅଧରାତି ବେଳେ ଚାଲିଗଲେ । ଗ୍ରାମଲୋକମାନେ ହାୟ ହାୟ କଲେ,

ପୁଅ, ଝିଅ, ମା, ମାଇକିନିଆମାନେ ପାଟି କରି କାନ୍ଦି ପକାଇଲେ । କେହି କହିଲି—ଆହା କି ରୂପ ରେ ! କେହି କହିଲି—କି ଧୀର ରେ ! କେହି କହିଲି—ଦାଣ୍ଡରେ ଚାଲିଯାଉଥିବ ଯେ ମାଟିକି ମରି କହିବ ନାହିଁ ।

ରେବତୀ ଶୁଣିଲି, ବୁଢ଼ୀ ଶୁଣିଲି । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠରୁଦ୍ଧ ହୋଇଗଲା, ଆଉ କାନ୍ଦି ପାରିଲା ନାହିଁ । ଶେଷରେ ଉଠି କହିଲା—"ଆହା ବାପ, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରେଇଲୁ ରେ ।" ଅର୍ଥାତ୍ ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼େଇବାରୁ ମରିଗଲା, ନୋହିଲେ କେଭେ ମରି ନ ଥାନ୍ତା । ଶୁଣିଲି ବେଳୁ ରେବତୀ ଘରେ ଯାଇ ପଡ଼ିଛି, ସୋର ଶବ୍ଦ ନାହିଁ । ସେ ଦିନ ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟିକରି ଡାକିଲା, "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି ।" ବୁଢ଼ୀ ବାୟାଣୀ ପରି ହୋଇଗଲାଣି, କାନ୍ଦି ବୋବାଳି ନାହିଁ, କେବଳ ରାଗରେ ଦିନରାତି ରେବତୀକୁ ଗାଳି । ପଡ଼ିଶା ଲୋକେ, ଦାଣ୍ଡିଗଲା ଲୋକେ ଯେତେବେଳେ ଇଚ୍ଛା ସେତେବେଳେ ଶୁଣୁଛନ୍ତି, "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି ।" ବୁଢ଼ୀ ଆଖିକୁ ଦିଶୁନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା । ଡାକିଲା, ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା—ଘୋର ଜର, ଦେହରୁ ନିଆଁ ବାହାରୁଛି, ଜ୍ଞାନ ନାହିଁ । ବୁଢ଼ୀ ଡେରି ବେଳଯାଏ ବସି କ'ଣ ପାଞ୍ଚିଲା । କ'ଣ କରିବ, କାହାକୁ ଡାକିବ, ମନଭିତରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିର କରି ନ ପାରି ଖପା ହୋଇ କହିଲା, "ଯାହା ଆପଣା କିଆ, ତହିଁକି ଇଲଜ କିଆଁ ?" ଅର୍ଥାତ୍ ତୁ ପାଠ ପଢ଼ିବାରୁ ଜର ହେଲା, ମୁଁ କ'ଣ କରିବି ?

ରେବତୀ ମାଟିରେ ଲାଗିଯାଇଛି । ଆଖି ଫିଟାଉ ନାହିଁ, ଡାକିଲେ ଉତ୍ତର ନାହିଁ, ଉଁ ଚୁଁ ହେବାକୁ ମଧ୍ୟ ନାହିଁ । ଆଜି ଛ ଦିନ ହେଲା । ରେବତୀ ସକାଳୁ ଦୁଇ ଚାରିଥର ପାଟି କଲାଣି, ବୁଢ଼ୀ ପାଟି ଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା, ଗୋଡ଼ ହାତ ଶୀତଳ । ଡାକିଲେ ହୁଁ ହୁଁ ଜବାବ ଦେଲା । କଟମଟ କରି ମୁହଁକୁ ଚାହୁଁଅଛି, କିଛି ନ

ପଗୁରଲେ ମଝି କେତେ କଥା କହି ପକାଉଛୁ । କୌଣସି କବିରାଜ ଦେଖିଲେ "ତୃଷ୍ଣା ଦାହଃ ପ୍ରଳାପଶ୍ଚ" ଇତ୍ୟାଦି ଶ୍ଳୋକ ପଢ଼ି କହନ୍ତେ "ସନ୍ନିପାତସ୍ୟ ଲକ୍ଷଣଂ"; ମାତ୍ର ବୁଢ଼ୀ କିଛି ଖୁସି ହେଲା । ଦେହରେ ତାତି ନାହିଁ । କଥା କହୁ ନ ଥିଲା, ପାଟି ଫିଟାଇଲାଣି, ଚାହୁଁ ନଥିଲା, ଆଖି ଫିଟାଇଲାଣି, ପାଣି ପିଇବାକୁ ମାଗିଲାଣି । ଛଅଦିନ ହେଲା ଜିଭରେ ପାଣି ଟୋପାଏ ବାଜି ନାହିଁ, ଗୁରଟା ପଥି ପେଟରେ ପଡ଼ିଲେ ଝିଅଟା ଉଠି ବସିବ । "ତୁ ଶୋଇଥା, ମୁଁ ଗୁରଟା ପଥି ରାନ୍ଧି ଆଣେ", ଏହା କହି ବୁଢ଼ୀ ବାହାରକୁ ବାହାରି ଆସିଲା । ପଥି ରାନ୍ଧିବ କ'ଣ ? ଘରେ ପାଛିଆ କୁଣ୍ଡେଇ ହାଣ୍ଡି ଆଟିକା ସବୁ ଖୋଜିଲା; ମୁଠାଏ ଚାଉଳ ନାହିଁ । ନିଃଶ୍ୱାସଟାଏ ପକେଇ ଘଡ଼ିଏ ବସିଲା । ବାସୁ ପାଞ୍ଚଦିନକୁ ଚାଉଳ ଡାଲି କିଣି ଦେଇ ଯାଇଥିଲା, ସେଥିରେ ଦଶଦିନ କିଆଁ ଚଳିଗଲା, ବୁଢ଼ୀର ବୁଦ୍ଧି ଶକ୍ତି ଥିଲେ ବୁଝିପାରିଥାନ୍ତା । ବସି ବିଚାର କଲେ ବୁଦ୍ଧି ଦିଶେ । ଘରେ କଂସାବାସନ କିଛି ନାହିଁ; ହାତରେ ଗୋଟାଏ କଣା ଛାଲ ପଡ଼ିଲା । ସେଇଟା ଧରି ହରି ସା ଦୋକାନକୁ ବାହାରିଲା ।

ହରି ସା ବୁଢ଼ୀ ହାତରେ ଛାଲଟି ଦେଖି ଅର୍ଥଟା ବେଶ୍ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ଛାଲଟା ହାତରେ ଧରି ଚାରିପାଖ ଦେଖି କହିଲା, "ନାହିଁ, ନାହିଁ, ମୋ ଘରେ ଚାଉଳ ନାହିଁ; ଆଉ ଏହି କଣା ଛାଲଟି ରଖି କିଏ ଚାଉଳ ଦେବ ?" ହରି ଘରେ ଯେ ଚାଉଳ ନଥିଲା ତାହା ନୁହେଁ, ଦେବାକୁ ମଧ୍ୟ ଇଚ୍ଛା, ତେବେ ଶସ୍ତାରେ ନେବା କଥା । ଚାଉଳ ନ ଥିବାର ଶୁଣି ବୁଢ଼ୀ ମୁଣ୍ଡରେ ତ ବଜ୍ର ପଡ଼ିଲା । କ'ଣ କରିବ, ଝିଅଟା ଜରରୁ ଉଠିଛି, ତା ମୁହଁରେ କ'ଣ ଦେବ ? ଘଡ଼ିଏ ବସିଗଲା । ବେଳ ବୁଡ଼ି ଆସିଲାଣି; ହରିକୁ ଦୁଇଥର ଅନାଇଲା । ଯାଏଁ, ଝିଅଟା କ'ଣ କରୁଛି ଦେଖେଁ । ଛାଲଟି ଧରି ଉଠୁଛି, ହରି କହିଲା, "ଦିଅ, ଦିଅ, ଛାଲଟା ଦିଅ । ଦେଖେଁ ଘରେ କ'ଣ ଅଛି ।" ହରି ଛାଲଟା ରଖି ଚାରିମାଣ ଚାଉଳ, ଅଧମାଣ ଜାଇ, କିଛି ଲୁଣ ଦେଲା । ବୁଢ଼ୀ ଚାରି ଛଅ ଜାଗା ବସି ଉଠି ଘରେ ଆସି ପହଞ୍ଚିଲା । ଏପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତକାଠି ବାଜି ନାହିଁ, ଦେହ ମନ କଥା କ'ଣ କହିବୁଁ ? ଘରେ

ପହଞ୍ଚି ରେବତୀକୁ ଡାକିଲା । ତାହାର ବିଶ୍ୱାସ ରେବତୀ ଭଲ ହୋଇଗଲାଣି, ପାଣି କାଢ଼ିଦେବ, ସେ ଭାତ ରାନ୍ଧିବ । ରେବତୀ ଜବାବ ନ ଦେବାରୁ ସେ ଘର ଖପା ହୋଇ ଯାଇ ଡାକିଲା, "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି ।" ଜବାବ ନାହିଁ ।

ଏଣେ ରେବତୀର ସନ୍ନିପାତ ରୋଗ କ୍ରମଶଃ ବଢ଼ୁଛି । ଭୟାନକ ଯନ୍ତ୍ରଣା; ଦେହ କ୍ରମଶଃ ଶୀତଳ ହେଉଛି, ଜିଭ ଶୁଖିଲାଣି, ଭୟଙ୍କର ପିପାସା, ଜଉଟା ଯେମନ୍ତ ଭିତରକୁ ଟାଣିଯାଉଛି । ଥଣ୍ଡା ଜାଗାକୁ ଯିବାର ଇଚ୍ଛା । ଘରଯାକ ଗଡ଼ ଗଡ଼ ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ ଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନ ଶେଷ ହୋଇ ଆସିଲାଣି । ଖୁବ୍ ପବନ ବହୁଛି । ବାଡ଼କୁ ଆଉଜି ବସିଲା । ବାଡ଼ଯାକ ଅନାଇଲା । ବାପା ଗଲା ବରଷ ଏହି କଦଳୀ ଲଗାଇଥିଲେ, ଭଣ୍ଡା ବାହାରିଲାଣି । ଦୁଇ ବରଷ ତଳେ ମା ଗୋଟିଏ ପିଜୁଳି ଗଛ ବାଡ଼ରେ ରୋଇଥିଲେ । ରେବତୀ ଧାଇଁ ଧାଇଁ କୂଅରୁ ଡାଲେ ପାଣି ସେ ଗଛରେ ଦେଇଥିଲା । ସେ ଗଛ କେଡ଼େଟାଏ ହେଲାଣି, ଫୁଲ ଧରିଲାଣି । ସେ ଗଛ ଦେଖି ମା ମନରେ ପଡ଼ିଲେ । ସଞ୍ଜ ଗଡ଼ିଗଲାଣି, ଗଛମୂଳରୁ ଡାଳ ଉଡ଼ାଳରୁ ଅନ୍ଧାରଗୁଡ଼ାକ ବାହାରି ବାଡ଼ ପୂରି ଗଲାଣି, ଆଉ କିଛି ଦିଶୁ ନାହିଁ । ଆକାଶକୁ ଚାହିଁଲା, ପହିଲିକିଆ ତାରାଟିରୁ ଧକ ଧକ ହୋଇ କିରଣ ବାହାରୁଛି । ଏକ ଧ୍ୟାନରେ ରେବତୀ ସେହି ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡ଼ୁନାହିଁ । ତାରାର ଆକାର କ୍ରମଶଃ ବଢ଼ି ଯାଉଛି, ଚନ୍ଦ୍ର ପରି ଆକାର ହୋଇଗଲାଣି, ଆହୁରି ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା ! ଏ କି ମୂର୍ତ୍ତି ତାରା ମଧ୍ୟରେ ? ଶାନ୍ତିଦାୟିନୀ ପ୍ରେମମୟୀ ଆନନ୍ଦମୟୀ ମାତାଙ୍କର ଅଭୟମୂର୍ତ୍ତି ବସି ସ୍ନେହରେ କୋଳକୁ ନେବା ସକାଶେ ଡାକୁଛନ୍ତି । ମା ଦୁଇଗୋଟି କିରଣ-ହସ୍ତ ବଢ଼ାଇ ଦେଲେ । ସେହି କିରଣ ଦଣ୍ଡଟି ଆସି ଦୁଇ ଚକ୍ଷୁ ଭେଦ କରି ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ, କେବଳ ନିଃଶ୍ୱାସ ଶବ୍ଦ । ସେ ଶବ୍ଦ କ୍ରମଶଃ ପ୍ରବଳ, ଖୁବ୍ ଦୀର୍ଘ ନିଃଶ୍ୱାସ; ଶେଷରେ ମା, ମା, ଦୁଇଥର ଅସ୍ପଷ୍ଟ ଶବ୍ଦ ଶୁଭିଲା । ବାଡ଼ ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଘୁଷୁରି ଘୁଷୁରି ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହି ନାହିଁ । ଘରଯାକ, ବାହାର ଅଗଣା, ଢେଙ୍କିଶାଳ, ଢେଙ୍କି ଲଞ୍ଜି, କାହିଁ ନାହିଁ । ମନେକଲା, ଜର ଭଲ ହୋଇଗଲାଣି । ବାଡ଼ରେ ବୁଲୁଥିବ । ସେହି ଡାକ—"ଲୋ ରେବତୀ, ଲୋ ରେବ, ଲୋ ନଅାଁ, ଲୋ ଚୂଲି ।" ବାଡ଼ ଦୁଆରକୁ ଗଲା, ଅଣ୍ଡାଳି ଅଣ୍ଡାଳି ପିଣ୍ଡାକୁ ଉଠିଲା । ପିଣ୍ଡାଟା ଭୂମିଠାରୁ ଦୁଇହାତ ଉଚ୍ଚ, ହାତେ ଚଉଡ଼ା । "ମଲା, ତୁ ଏଇଠି ବସିଛୁ ?" ଦେହରେ ହାତ ଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା । ଆଉ ଥରେ ଭଲ କରି ଗୋଡ଼ଠାରୁ ମୁଣ୍ଡଯାଏ ହାତ ବୁଲାଇଲା, ନାକରେ ହାତ ଦେଇ ଗୋଟିଏ ଉତ୍କଟ ଶବ୍ଦ କଲା, ସଙ୍ଗେ ସଙ୍ଗେ ପିଣ୍ଡା ତଳେ ଦୁଲ୍‌ଦାଲ୍ ଶବ୍ଦ ।

ଶ୍ୟାମବନ୍ଧୁ ମହାନ୍ତି ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି । ପଡ଼ୋଶିମାନେ ରାତି ପ୍ରହରକ ସମୟରେ ଶେଷ ଶବ୍ଦ ଶୁଣିଥିଲେ ।

"ଲୋ ରେବତୀ, ଲୋ ରେବ, ଲୋ ନଅାଁ, ଲୋ ଚୂଲି ।"



# ବୁଢ଼ା ଶଙ୍ଖାରି



ଲକ୍ଷ୍ମୀକାନ୍ତ ମହାପାତ୍ର

ପ୍ରାୟ ଫଗୁଣ ମାସ ଶେଷ ସରିକି, ଉଦୁଉଦିଆ ଖରାବେଳେ ବୁଢ଼ାଟିଏ ଗୋଟିଏ ଗାଁ ମଝିରେ ଯାଉଥିଲା। ଷାଠିଏ ବରଷର ବୁଢ଼ା, ଦାନ୍ତଗୁଡ଼ାକ ସବୁ ପଡ଼ିଗଲାଣି; ମୁଣ୍ଡବାଳ ତେଣିକି ଥାଉ ଭ୍ରୁଲତ ବାଳ-ଗୁଡ଼ାକ ପାଚି ଧୋବ ଫରଫର ଦିଶୁଛି । ବୁଢ଼ା ମୁଣ୍ଡରେ ଗୋଟିଏ ଟୋକେଇ, ଧୂଳିରେ ଆଣ୍ଠୁଯାକେ ବୁଡ଼ୁଛି; ଅଷ୍ଟାଙ୍ଗଶରୀର ଝାଳରେ ବୁଡ଼ି ଗୋଡ଼ବାଟେ ବହିଯାଉଛି ।

ଗାଁ ମୁଣ୍ଡରେ ଗୋଟିଏ ଘର । ପକ୍କା ପିଣ୍ଡା, ସାତଶେଣିଆ ଛପର, ସାଙ୍ଗୁଳି କବାଟ । ବୁଢ଼ା ସେହି ପିଣ୍ଡାରେ ବୋଝଟି ଥୋଇ ଦେଇ ନଥିକରି ବସିପଡ଼ିଲା । କିଛିକ୍ଷଣ ପରେ ସେ ଘରୁ ଗୋଟିଏ ଦାସୀ ବାହାରି ଆସିଲା । ଦାସୀ ବୁଢ଼ାକୁ ଚିହ୍ନେ । ପଚାରିଲା, "କିହୋ ଶଙ୍ଖାରି ପୁଅ, ଶଙ୍ଖା ଆଣିଛ କି ?" ବୁଢ଼ା ଉତ୍ତର କଲା, 'ହଁ' । ପୁଣି କହିଲା, "ଝିଅ, ଟୋପାଏ ପାଣି ଦିଅନ୍ତୁ । ବୁଢ଼ା ମଣିଷ, ଖରାରେ ତଣ୍ଟି ଶୁଖି ଗଲାଣି ।" ଦାସୀ ପାଣି ଆଣିବାକୁ ଚାଲିଗଲା ।

କିଛିକ୍ଷଣ ପରେ ଲୋଟାଏ ପାଣି ଧରି ଦାସୀ ଫେରି ଆସି ବୁଢ଼ା ପାଖରେ ଥୋଇଦେଲା । ବୁଢ଼ା ଉପରକୁ ଆଁ କରି ଦେଇ ଢକ ଢକ କରି ଅଧ ଲୋଟାଏ ପାଣି ଟେକିଦେଲା । ପାଣି ପିଇ ସାରି ବୁଢ଼ା ଚଉରସ ନିଶ୍ୱାସଟାଏ ମୁହଁବାଟେ ପକାଇ କହିଲା, "ଝିଅ, ତୋର ବଡ଼ ଧରମ ହେଲା ।" ଦାସୀ କହିଲା, "ହଉ ହେଲା ତ ହେଲା ପଛକେ, ଚାଲ ବହୂସାଆନ୍ତାଣୀ ଡାକୁଛନ୍ତି କମିତିକା ଶଙ୍ଖା ଅଛି ଦେଖିବେ ।" ବୁଢ଼ା ଟୋକେଇଟି ନେଇ ଉଠିଲା । ସଦର ଦରଜା ପାରି ହେଲେ ଭିତରେ

ପକ୍କା ବାହାର, ସାମନାରେ ଚଉପାଢ଼ୀ, ବାଆଁ ପାଖକୁ ଭିତର ଆଡ଼ ଦୁଆର । ସେ ଦୁଆର ପାଖରେ ଓଢ଼ଣା ଦେଇ ବହୂଟିଏ ଛିଡ଼ା ହୋଇଥିଲା । ବୁଢ଼ା ଯାଇ ଝୋଟେଇଟି ଥୋଇ ଛିଡ଼ା ହେଲା । ବହୂଟି ଧୀରେ ଧୀରେ ଦାସୀକି କହିଲା, "କି ଶଙ୍ଖା ଅଛି ପଚାର ମ ।" ଦାସୀଟି ଟିକିଏ ମୁଖରା । ସେ କହିଲା, "ଛିକର, ବୁଢ଼ା ମିଣିପିଠାକୁ ଏତେ ଲାଜ ! ନିଜେ ଝୋଟେଇରୁ ଆସି ଦେଖୁ ନାହିଁ ?" କଥାଟା ମନକୁ ଆସିଲା । ବହୂଟି ଓଢ଼ଣା ଅଧେ ଟେକି ଦେଇ ମୁରୁକି ମୁରୁକି ହସି ହସିକା ବାହାର ଆସି ଝୋଟେଇ ପାଖରେ ଛିଡ଼ା ହେଲା । ବହୂଟିର ମୁହଁ ଦିଶିଗଲା । ମୁହଁଟି ଚକ କାଟି ଦେଲପରି; ଚମ୍ପାଫୁଲ ପରି ଗୋରା । ଚାରି ଆଙ୍ଗୁଳ ଓସାରର ନାଲି ଡହିଁର ମୟୂର କଣ୍ଠିଆ କସ୍ତା ଖଣ୍ଡିକ ଗୋଇଠିଯାଏ ଲମ୍ବିଛି । ତା ଭିତର ଦେଇ ବହୂଟିର କଞ୍ଚା ସୁନାପରି ଗୋରା, ଗୋଟିଏ ରୁଲରେ ଗଢ଼ା ଦେହଟି ଫୁଟିଦିଶୁଛି । ବୁଢ଼ାର ଆଖି ପୂରି ଉଠିଲା । ଏଡ଼େ ସୁନ୍ଦର, ଏଡ଼େ ନିକ ବହୂଟିଏ ସେ କେବେ ଦେଖି ନାହିଁ । ବୁଢ଼ା ଆଉ ଆଖି ଫେରାଇ ପାରିଲା ନାହିଁ । ଏକା ଧ୍ୟାନରେ ବହୂଟିକୁ ଚାହିଁ ରହିଲା । ବୁଢ଼ାର ଇଚ୍ଛା କ'ଣ କହିବ ବୋଲି; କିନ୍ତୁ ପାଟିରୁ କଥା ଫୁଟିଲା ନାହିଁ । କେତେବେଳକେ ବୁଢ଼ା ମୁହଁ ଫିଟାଇ କହିଲା, "ମା, କି ଶଙ୍ଖା ନବୁ ନେ ।" 'ମା' ବୋଲି ଡାକ ଦେଲାକ୍ଷଣି ବୁଢ଼ାର ଛାତି କୁଣ୍ଢେ ହୋଇଗଲା । ବହୂଟି ନାଜ ଗୁଡ଼ିଦେଇ କହିଲା, "ଆସ୍‌ମାନ୍‌ତାରା ଶଙ୍ଖା ଅଛି ?" ଓଃ, ଏଡ଼େ ମିଠା କଥା । ଏପରି କଥା ତ କେହି କହେ ନାହିଁ । ବୁଢ଼ାର କାନରେ ସେ ସ୍ୱରଟା ଥରକୁ ଥର ବାଜିବାକୁ ଲାଗିଲା । ବୁଢ଼ା କହିଲା, "ନା ମା, ରଙ୍ଗଝିଲରି, ବଉଳ-ଫୁଲିଆ, ବକୁଲମାଳିଆ, ଚୂନଟିପି ଏହି ସବୁ ଅଛି । ଏହିଥିରୁ ଯାହା ନବୁ ନେ ମା, ମୁଁ ଆସ୍‌ମାନ୍‌ତାରା ତିଆରି ହେଲେ ଆଣିଦେବି ।"

ବହୂଟି ଦେଖି ଦେଖି ମୁଠାଏ ଶଙ୍ଖା ପସନ୍ଦ କଲା । ତେବେ ସେ ମୁଠାକ ହାତକୁ ହେବ କି ନାହିଁ କିଏ କହିବ ? ଏହି ସମୟରେ ବୁଢ଼ା କହିଲା, "ଦେ ମା, ହାତ ଦେ, ମୁଁ ଶଙ୍ଖା କଚ୍ଛି ଦିଏ ।" ବହୂଟି ହଠାତ୍ ହାତ ବଢ଼ାଇ ଦେଉଛି ବା କିପରି । ଟିକିଏ ଇତସ୍ତତଃ କଲା । ବୁଢ଼ା କହିଲା, "ମା, ମୋତେ ଲାଜ କରୁଛୁ ? ମୁଁ ପରା ତୋ ପୁଅ । ପୁଅକୁ ମା ଲାଜ କରେ ନା !" ଦାସୀ ଏହି ସମୟରେ ଠୋ ଠୋ କରି

ହସି ଦେଇ କହିଲା, "ବହୂ ସାଆନ୍ତାଣିଏ ! ଆଚ୍ଛା ବୁଢ଼ା ପୁଅଟିଏ ପାଇଲ ଏକା; କପାଳ ତ ।" ବହୂଟି ପୁଣି ହସି ଦେଇ କହିଲା, "ଦୂର୍" ।

ବହୂଟି ହାତ ବଢ଼ାଇଦେଲା । କେଡ଼େ ଟିକିଏ ନିକ ହାତଟି ! କେଡ଼େ ସୁନ୍ଦର ଗୋଲ, ଆଙ୍ଗୁଳିଗୁଡ଼ିକ ଚମ୍ପାକଢ଼ି ପରି । ପାପୁଲିଟି ଝୁଲ ଝୁଲ ହେଉଛି । ଶଙ୍ଖାଗୁଡ଼ିକ କି ସୁନ୍ଦର ଦିଶୁଛି । ଏ କ'ଣ ମଣିଷର ହାତ ? ନା, କେଉଁ କାରିଗର ଠାକୁର ଗଢ଼ିଛି ? ସେ ହାତକୁ ବୁଢ଼ା ତା'ର ମଳିଆ, ରୁକ୍ଷ ହାତରେ ଧରିବାକୁ ସାହସ କଲା ନାହିଁ । ତା'ପରେ ବାଁ ହାତରେ ଥିର କରି ହାତଟି ଧରି ପରେ ଶଙ୍ଖା କଚ୍ଛିବାକୁ କାଢ଼ିଲା । ଏ ହାତ, ଶଙ୍ଖାରେ କାଳେ କଟିଯିବ; ରକ୍ତ ବାହାରି ପଡ଼ିବ ଯେ । ପୁଣି ଟିକିଏ ରହିଲା । ପୁଣି ଶଙ୍ଖା ପଟିଏ ଆଣି, ଧୀରେ ଧୀରେ ଅତି ସନ୍ତର୍ପଣରେ, ଅତି ସାବଧାନତାର ସହିତ ସେ ପଟିକ କଚ୍ଛି ନେଲା । ସେ ହାତଟି ଧରିଥିବା ବେଳେ ବୁଢ଼ାର ଆନନ୍ଦର ସୀମା ରହୁ ନ ଥାଏ, ଯେପରି ତା'ର ଜୀବନର ସମସ୍ତ ସୁଖ, ସମସ୍ତ ଆଶାର ସେହିଠାରେ ତୃପ୍ତି । ସେ ହାତକୁ ପୁଣି ଛାଡ଼ିଦେବାକୁ ହେଲା । ବୁଢ଼ା ଭାବିଲା, ମୁଁ ପ୍ରତିଦିନ ଏହିପରି ଏ ହାତରେ ଶଙ୍ଖା ପିନ୍ଧାନ୍ତି କି !

ଏହି ସମୟରେ ସେ ଘରର ସାଆନ୍ତାଣୀ ସେଠାରେ ଆସି ପହଞ୍ଚିଲେ । ଶାଶୁଙ୍କୁ ଦେଖି ବହୂଟି ଓଢ଼ଣା ଟାଣି ଦେଇ ପଳାଇଲା । ଶାଶୁ ଦାସୀକୁ ପଚାରିଲେ, "କି ଲୋ, ଶଙ୍ଖା କିଣୁଥିଲ କି ?" ଦାସୀ କହିଲା, "ହଁ, ବହୂସାଆନ୍ତାଣୀ ଏହି ମୁଠାକ ନେବେ ବୋଲି କହୁଛନ୍ତି ।"

ଶାଶୁ କହିଲେ, "ଦାମ କେତେ ?"

ବୁଢ଼ା—ଶଙ୍ଖା ମୁଠାକ, କି ଦାମ ?

ଶାଶୁ—ଫେର, କେତେ ଦେବ ?

ବୁଢ଼ା—ମା' ଠଉଁ ମୁଁ କ'ଣ ଦାମ ନେବ ?

ଶାଶୁ ଦାସୀକୁ ପଚାରିଲେ, "କିଲୋ ! ମା' କ'ଣ ଲୋ ?"

ଦାସୀ ହସି ହସି କହିଲା, "ସେଇ ପିଲାଟି ବହୂସାଆନ୍ତାଣୀଙ୍କ ପୁଅ ହେଇଛି ।"

ଶାଶୁ ବି ହସିଲେ । କହିଲେ, "ଆଚ୍ଛା, ଏଥର ଦାମ୍ ନେଇଥାଅ, ଆଉ ଥରକୁ ପଛେ ଖାଲି ଦେଇ ଯିବ । ତମେ ଗରିବ ଲୋକ—"

ବୁଢ଼ା—"ନା, ନା, ମୋ ମା'କୁ ମୁଁ ତ ଦେଇଛି; ମୁଁ ଆଉ ଦାମ ନେବି ନାହିଁ । ଶଙ୍ଖା ମୁଠାକ ଲାଗି ମୁଁ ଗରିବ ହୋଇଯିବି ନାହିଁ ।"

ଏହା କହି ଶଙ୍ଖାରି ଶଙ୍ଖାମୁଠାକ ରଖିଦେଇ ବୋଝଟି ଧରି ଏକାବେଳକେ ଚାଲିଗଲା । ଆଉ ଡାକିଲେ ଶୁଣିଲା ନାହିଁ । ଦାସୀ ପଛରେ ଗୋଡ଼େଇ ଗୋଡ଼େଇ ଗଲା; କିନ୍ତୁ ସେ ଆଉ ଫେରି ଚାହିଁଲା ନାହିଁ ।

ସେହି ଦିନଠାରୁଁ ସେ ବୁଢ଼ା ଶଙ୍ଖାରି ଦୁଇଦିନେ ତିନିଦିନେ ସେ ଗାଁକୁ ଆସେ । ଶଙ୍ଖାଟା କ'ଣ ଗୋଟାଏ ନିତ୍ୟାନି ଦରବ ଯେ, ଲୋକେ ରୋଜ କିଣିବେ । ଅକାଳେ ସକାଳେ, ପୁନେଇ ପରବରେ ସିନା କିଏ ନୂଆ ଶଙ୍ଖା ଖୋଜେ ! ବୁଢ଼ାଟା ଖାଲି ଘର ଘର ବୁଲି ଫେରିଯାଏ; କିନ୍ତୁ ଶଙ୍ଖା ବିକି ତ ବୁଢ଼ାର ଉଦ୍ଦେଶ୍ୟ ନୁହେଁ । ସିଏ ଆସେ ତା'ର ସେହି ନିଜ ମା'ଟିକୁ ଦେଖିବାପାଇଁ । ଯେଉଁଦିନ ଆସେ, କାହାରିକୁ ନ କହି ଦୁଆରଯାକେ ଚାଲିଆସେ । ବୋଝ ରଖିବାକୁ ହୁଏ ନାହିଁ, ଖାଲି ପାଟି କରି ଡାକିଦିଏ, "ନୂଆ ଶଙ୍ଖା ନବ ?" ତା ପାଟି ଶୁଣିଲା କ୍ଷଣି ବହୂଟି କୁଆଡ଼େ ଥାଏ, ଆସି ଦୁଆର ପାଖରେ ଟିକିଏ ଛିଡ଼ା ହୁଏ । ବୁଢ଼ାଟି ଟିକିଏ ଅନାଏ; ଚାହିଁ ଦେଲାକ୍ଷଣି ବୁଢ଼ାର ମନ ପୂରି ଉଠେ । ପଚାରେ, "ମା, ଆଉ ଶଙ୍ଖା ନବୁ ?" ବୁଢ଼ାର ଇଚ୍ଛା କାଳେ ନବାକୁ କହିବ; ତାହାହେଲେ ତା ମା'ର ଚମ୍ପାଫୁଲିଆ ସୁନ୍ଦର ହାତଟିରେ ସେ ଶଙ୍ଖା କଚ୍ଛି ଦେବ; କିନ୍ତୁ ବହୂଟି ମୁଣ୍ଡ ହଲାଇ ଦିଏ । ବୁଢ଼ା ଫେରି ଚାଲିଯାଏ ।

ଦିନେ ଦିନେ ପଦି ବହୂଟିର ଆସିବାକୁ ଡେରି ହୁଏ, ସେ ଦାସୀଟି ହୁରି କରିଦିଏ; "ବହୂସାଆନ୍ତାଣିଏ, ତମ ପୁଅ ଅଇଲାଣି ।" ବୁଢ଼ା ଦୁଇଥର, ଚାରିଥର 'ନୂଆ ଶଙ୍ଖା ନବ' ବୋଲି ଡାକିଲାରୁ, ତା ମା'ଟି ଆସି ଛିଡ଼ା ହୁଏ । ବୁଢ଼ା ଯେଉଁଦିନ ଆସେ, ପ୍ରାୟ ଏହି କଥା, ଏହି ଅଭିନୟ ନିତି ନିତି । ବୁଢ଼ା ଫେରିଲା ବେଳକୁ ଭାବେ "ମା'ର ଆସ୍ମାନତାରା ଶଙ୍ଖା ଉପରକୁ ମନ । କେବେ ସେଥିରୁ ମୁଠାଏ ଆଣି ଦେବି ।" ଶେଷରେ ଠିକ୍ କଲା ଆସନ୍ତା ରଜସଂକ୍ରାନ୍ତି ବେଳକୁ ଯୁଆଡ଼ୁ

ହେଲେ ମା' ଲାଗି ଆସ୍ମାନତାରା ମୁଠାଏ ଆଣିବ । ମା' ନୂଆ ଶଙ୍ଖା ନାଇବ, ମୋତେ ହାତ ଦେଖାଇବ, ମୁଁ ଶଙ୍ଖା କରୁ ଦେବ । ଏଇସବୁ ଭାବୁଲାକ୍ଷଣି ବୁଢ଼ାର ମନ ଭାରି ଉତ୍ଫୁଲ୍ଲ ହୋଇଯାଏ । ବୁଢ଼ା ରଜ-ସଂକ୍ରାନ୍ତିକୁ ଚାହିଁ ରହିଥାଏ । ରଜସଂକ୍ରାନ୍ତିଟି ଏଥର ତା'ର ଭାରି ଆନନ୍ଦର ଦିନ; ତା ମା' ଲାଗି ସେ ଆସ୍ମାନତାରା ଶଙ୍ଖା ଆଣିବ; ମା' କେଡ଼େ ଖୁସି ହେବ !

ବୈଶାଖ ମାସ ହେଲା । ବୁଢ଼ା ଲୋକ, ସେଥିକି ଖରାରେ ରୋଜ ରୋଜ ବାଟଚଲା, ପାଣିପିଆ, ଦେହରେ ସହିଲା ନାହିଁ, ବୁଢ଼ାକୁ ଜ୍ୱର ହେଲା । ଦେଖୁଁ ଦେଖୁଁ ଭାରି ଜ୍ୱର । ଗୋଡ଼ ହାତ ଫୁଲିଗଲା । ସମସ୍ତେ କହିଲେ ବୁଢ଼ା ଆଉ ବଞ୍ଚିବ ନାହିଁ । ବୁଢ଼ାର କିନ୍ତୁ ସେ ଦିଗକୁ ଭାବନା ନାହିଁ । ସେ ସବୁବେଳେ ଭାବୁ ହେଉଥାଏ ଯେ କେଉଁଦିନୁ ସେ ମା'କୁ ଦେଖିବାକୁ ଯାଇନାହିଁ । ସେଥିପାଇଁ ମନଟା ଆଉଟି ପାଉଟି ହେଉଥାଏ ।

ଦେଖୁଁ ଦେଖୁଁ ରଜସଂକ୍ରାନ୍ତି ଆସି ପାଖ ହୋଇଗଲା । ବୁଢ଼ା ଦୁଇମାସ ହେଲା ମା'କୁ ଦେଖିବାକୁ ଯାଇ ନାହିଁ । ଚାଲିପାରୁଥିଲେ ଯିମିତି ହେଲେ ଦେଖି ଆସୁ ଥାଆନ୍ତା; କିନ୍ତୁ ରଜକୁ ତ ଆସ୍ମାନତାରା ଶଙ୍ଖା ମୁଠାଏ ନିଶ୍ଚୟ ଦେବାକୁ ହେବ । ବୁଢ଼ା ଅନେକ କଷ୍ଟରେ ଉଠି ବସି ନିଜ ହାତରେ ଶଙ୍ଖା ତିଆରି କଲା । ଆଉ କେହି କରିଦେଲେ କାଳେ ମା' ମନକୁ ନ ଆସିବ ! ଷାଠିଏ ବର୍ଷକାଳ ଶଙ୍ଖା ଗଢ଼ି ଗଢ଼ି ସେ ଯେତେ ହାତ ସଫେଇ ହାସଲ କରିଥିଲା, ସବୁ ସେଥିରେ ଲଗାଇଲା । ଦିନକ କାମ ଚାରିଦିନ ଲାଗୁ ପଛକେ କାମଟି କିମିତି ସରସ ହେଉ । ରଜ ଦୁଇଦିନ ଥାଇ କାମ ନିକାଶ ହେଲା । ମନ ଯେମିତି ଫଳ । ଏପରି ଗଢ଼ଣର ଶଙ୍ଖା ତା ଜୀବନରେ ତା ହାତରେ କେବେ ଉଠୁରି ନାହିଁ । ଶଙ୍ଖା ଦେଖି ବୁଢ଼ାର ମନ ଭାରି ଖୁସି । ତା ମା' ହାତକୁ ଏ ଶଙ୍ଖାମୁଠିକ ଖୁବ୍ ମାନିବ ।

ରଜ ଆଗଦିନ ପହିଲି ରଜ । ଆଜି ଝିଅ-ବୋହୂଏ ନୂଆ ଶଙ୍ଖା ନୂଆ ଶାଢ଼ୀ ପିନ୍ଧିବେ । ରାତିସାରା ବୁଢ଼ାର ନିଦ ନାହିଁ । ସକାଳୁ ଉଠି ବୁଢ଼ା ଭାବିଲା, "ମୁଁ ତ ଚାଲି ପାରୁ ନାହିଁ, କ'ଣ କରିବ । ଆଉ କଏ

ନେଇଗଲେ ତ ହେବ ନାହିଁ । ମା'କୁ ଡ଼େରଦିନୁ ଦେଖି ନାହିଁ । ସତେ କ'ଣ ଏଥିରୁ ବଞ୍ଚିବ ଯେ,—ଥରେ ଦେଖି ଆସେ । ଆଉ ମା'ର ସେହି ହାତରେ ଶଙ୍ଖା କଟ୍ଟି ଦେବ ।" ମା'ର ହାତଟି ମନେ ପଡ଼ିଗଲାକ୍ଷଣି ବୁଢ଼ାର ଗଦାଏ ବଳ ଆସିଲା । ବୁଢ଼ା ସଅଳ ସଅଳ ମୁଠାଏ ଖାଇଦେଇ ଶଙ୍ଖାମୁଠିକ ଗାମୁଛରେ ବାନ୍ଧି ବାହାରିଲା । ଅତି କଷ୍ଟରେ ଭଡ଼ାଏ ଭଡ଼ାଏ ପାଦ ପକାଇ ଚାଲୁଥାଏ । ପାଞ୍ଚକୋଶ ବାଟ ପହୁଞ୍ଚିଲା ବେଳକୁ ବେଳ ଗଡ଼ିଗଲାଣି ।

ବୁଢ଼ା ଯାଇ ଯେଉଁଠାରେ ଛିଡ଼ାହୋଇ ଡାକୁଥିଲା ସେହିଠାରେ ଛିଡ଼ା ହେଲା । ମନରେ କେତେ ଆନନ୍ଦ, କେତେ ଉତ୍ସାହ । ଡାକିଲା, "ଶଙ୍ଖା ନବ ?" କେହି ଶୁଣିଲେ ନାହିଁ । ପୁଣି ଡାକିଲା "ମା' ଲୋ, ଶଙ୍ଖା ନବୁ ପରା !" ତେବେ ବି କେହି ଆସିଲେ ନାହିଁ । ବୁଢ଼ା ଅଧୀର ହୋଇ ପଡ଼ିଲା । ଦୁଇଥର ଡାକ ସାରିଲାଣି, କେହି ଜବାବ ପଦେ ଦେଉ ନାହିଁ । ଥରେ ଡାକିଲେ ତ ମା' ତା'ର ଆସି ଦୁଆରବନ୍ଧ ପାଖରେ ଛିଡ଼ା ହୋଇ ଯାଉଥିଲା । ପୁଣି ଡାକିଲା, "ମା'—ମୁଁ ଆସିଛି । ଶଙ୍ଖା ଆଣିଛି ତୋ ପାଇଁ ।" ଏଇଥର ସାଆନ୍ତାଣୀ ନିଜେ ବାହାରି ଆସିଲେ । ତାଙ୍କ ପଛେ ପଛେ ସେହି ଦାସୀ । ସାଆନ୍ତାଣୀଙ୍କୁ ଦେଖି ବୁଢ଼ା କହିଲା "ମୋ ମା' କାହିଁ ? ମୁଁ ତା ପାଇଁ ଆସ୍ମାନତାରା ଶଙ୍ଖା ଆଣିଛି, ରଙ୍ଗରେ ପିନ୍ଧିବ ।" ଦାସୀ ତ ଏତେବେଳକୁ ହୁରି କରି କାନ୍ଦୁଥାଇ ହଉଥାଣି; ସେ କିଛି କହିଲା ନାହିଁ । ସାଆନ୍ତାଣୀ ଧୀରେ ଧୀରେ କହିଲେ, "ନା, ଶଙ୍ଖା ଲୋଡ଼ା ନାହିଁ ।" ବୁଢ଼ା କହିଲା, "ନା, ନା, ମୁଁ ମୋ ମା' ଲାଗି ବଡ଼ ଶରଧାରେ ଆଣିଛି ।"

ସାଆନ୍ତାଣୀ—ନା, ଶଙ୍ଖା କେହି ନେବେ ନାହିଁ । ଯା—

ବୁଢ଼ା—ହଉ, ଶଙ୍ଖା ନ ନେଲେ ନାହିଁ, ମୋ ମା'କୁ ଥରେ ଡାକିଦିଅ ମୁଁ ଦେଖିବ । କେଉଁ ଦିନରୁ ଦେଖି ନାହିଁ ।

ସାଆନ୍ତାଣୀ—ଦେଖା ହୋଇ ପାରିବ ନାହିଁ ।

ବୁଢ଼ା ମୁଣ୍ଡରେ ବଜ୍ର ପଡ଼ିଲା, "ଦେଖା ହୋଇ ପାରିବ ନାହିଁ ? ମୋ ମା'କୁ ମୁଁ ଥରେ ଦେଖି ପାରିବ ନାହିଁ !" ବୁଢ଼ାର ଆଖି ଛଳ ଛଳ ହୋଇଉଠିଲା । ସେ କାନ୍ଦ କାନ୍ଦ ହୋଇ କହିଲା, "ଥରଟିଏ ଦେଖିବ—ମୁଁ ଆଉ ବଞ୍ଚିବ ନାହିଁ ।"

ସାଆନ୍ତାଣୀ ଦାସୀକୁ କହିଲେ, "ଯା, ବହୂକୁ ଡାକି ଦେ।" ଦାସୀ ଚାଲିଗଲା। କିଛିକ୍ଷଣ ପରେ ବହୂ ଆସି ଦୁଆର ପାଖେ ଛିଡ଼ା ହେଲା। ସେଇଠି ସେ ସବୁଦିନେ ଛିଡ଼ା ହୁଏ। ଆସିଲାବେଳକୁ ଝୁମୁରୁ ଝୁମୁରୁ ହୋଇଚାଲି ଆସେ। ଛିଡ଼ା ହୋଇ ବୁଢ଼ାକୁ ଚାହିଁଦିଏ। ତା'ର ହସ ହସ ମୁହଁଟି ଦେଖି ବୁଢ଼ାର ଆନନ୍ଦର ସୀମା ରହେ ନାହିଁ। ଆଜି ନଣନ୍ଦରେ ଆସି ଛିଡ଼ା ହେଲା। ସେ ଚାରି ଅଙ୍ଗୁଳି ଲେଖାଏଁ ନାଲି ଡହଁର ଶାଢ଼ୀ ନାହିଁ କି କୁମ୍ଭକନାଗ ଦକ୍ଷିଣା ପାଟ ନାହିଁ। ଗୋଡ଼ ଦୁଇଟା ଲଙ୍ଗଳା, ପିନ୍ଧିଛି ଖଣ୍ଡେ ଧଳା ଥାନ ଲୁଗା। ବୁଢ଼ାର ଦେହ ଥରିଉଠିଲା; ମୁଣ୍ଡ ଘୂରିଗଲା; ବୁଢ଼ା ଆଖି ବୁଜିପକାଇଲା। ପୁଣି ଚାହିଁ ଦେଲାବେଳକୁ ତା'ର ସେହି ହାତଟି ଦିଶିଗଲା—ହାତରେ କିଛି ନାହିଁ। ବୁଢ଼ା ଭେ-ଭେ କରି ରଡ଼ି କରି ଉଠିଲା। ବହୂଟି ଫେରିପଡ଼ି ଚାଲିଗଲା। ବୁଢ଼ା କହିଲା, "ମା ଲୋ! ମୁଁ ନ ମରି କାହିଁକି ତୋତେ ଦେଖିବାକୁ ଆସିଲି। ଏହିତା ଦେଖିବା ଲାଗି ନା ଲୋ ମା'—"

ବୁଢ଼ା ଆଉ କହିପାରିଲା ନାହିଁ। ଗାମୁଛିରୁ ତା'ର ବଡ଼ ଯତ୍ନର, ବଡ଼ ଶରଧାର ଶଙ୍ଖାମୁଠିକ ଫିଟାଇ ପକାଇ ବାହାରେ କଚାଡ଼ି ଦେଲା। ମୁଠାକପାକ ଶଙ୍ଖା ଚୂନା ହୋଇଗଲା। ତହୁଁ ସେ ଏକମୁହାଁ ହୋଇ ଫେରି ଚାଲିଗଲା। ଦାସୀ ଓ ଶାଶୁ ରଡ଼ି କରିଉଠିଲେ।

---

# ମାଗୁଣୀର ଶଗଡ଼

 **ଗୋଦାବରୀଶ ମହାପାତ୍ର**

ଖଲିକୋଟର ଦୁଇଲକ୍ଷ ଲୋକଙ୍କ ଭିତରେ ପ୍ରତିଦିନ ଯିବା ଆସିବା ଚାଲିଛି । କେତେ ସଂସାରରୁ ଯାଉଛନ୍ତି, କେତେ ସଂସାରକୁ ଆସୁଛନ୍ତି । ଏ ଖବର ରଖୁଛନ୍ତି ଗୃହ-ପରିବାର ବା ସାଇପଡ଼ିଶାର ଲୋକେ; କିନ୍ତୁ ଯେଉଁଦିନ ମାଗୁଣୀ ଏ ସଂସାର ଛାଡ଼ି ଚାଲିଗଲା, ସେଦିନ ଖବରଟା ଖଲିକୋଟର ପୁରପଲ୍ଲୀ ସବୁଆଡ଼େ ବ୍ୟାପିଗଲା । ଯେ ଶୁଣିଲା ସେ ମୁହୂର୍ତ୍ତେ ହେଲେ ନୀରବ ରହି ଦୁଃଖରେ କହିଲା, "ମାଗୁଣୀ ଚାଲିଗଲା ? ଆହା, ବିଚରା ଚାଲିଗଲା !"

ମାଗୁଣୀ କିଏ ? ଖଲିକୋଟର ସେ ରାଜା ନୁହେଁ, ଏ କଥା ନିଶ୍ଚୟ । ସେ ରାଜ୍ୟର ନେତା ନୁହେଁ, ଏ କଥା ସମସ୍ତେ କହିବେ । ସେ କର୍ମୀ ନୁହେଁ, ଏ କଥା ସମସ୍ତେ ଜାଣନ୍ତି । ସେ କେବେ ସତ୍ୟାଗ୍ରହରେ ଯୋଗ ଦେଇନାହିଁ, କି ରଜାକୁ ଖଜଣା ଦେଇନାହିଁ । ତା ବେକରେ କିଏ ଫୁଲମାଳ ଲମ୍ବାଇ ନାହିଁ, କି ସେ କାହା ଗଳାରେ ମାଳା ଲମ୍ବାଇ-ଦେବା ଦରକାର ପଡ଼ିନାହିଁ; ଜନସମୁଦ୍ର ଭିତରେ କରତାଳି ଗହଳରେ ବକ୍ତୃତା ଦେଇନାହିଁ । ସେ କେବଳ କରିଛି ଗୋଟିଏ କାମ—ମୁଣ୍ଡର ଝାଳ ତୁଣ୍ଡରେ ମାରି ଜୀବନପଥରେ ଲଢ଼େଇ କରିଛି । ସେ ଲଢ଼େଇ ଦେଶପାଇଁ ନୁହେଁ, ଜାତିପାଇଁ ନୁହେଁ, ତାହା ନିଜର ପେଟ ଚାଖଣ୍ଡିକ ପାଇଁ । ତଥାପି ମାଗୁଣୀର ମୃତ୍ୟୁ ଖବର ପାଇ ସମସ୍ତେ କହିଲେ, "ଆହା; ବିଚରା ଚାଲିଗଲା !"

ଗଡ଼ରେ ପଚାରିଲେ ତ ସମସ୍ତେ କହିବେ ମାଗୁଣୀ କିଏ, ଦୂର ଜଙ୍ଗଲ ତଳ ପଲ୍ଲୀଗାଁରେ ମଧ୍ୟ ତା'ର ପରିଚୟ ମିଳିପାରିବ । ମାଗୁଣୀ

ଖଲିକୋଟର କେହି ନୁହେଁ; ସେ ଜଣେ ଶଗଡ଼ିଆ । ଦୁଇଟା ବଳଦ ଓ ସେ; ଏ ତିନି ମିଶି ଗୋଟାଏ ସଙ୍ଘ ଗଢ଼ିଥିଲେ, ଯାହା କି ଦୁଇଲକ୍ଷ ଲୋକଙ୍କ ମନକୁ ଛୁଇଁଗଲା ।

ପ୍ରତିଦିନ ଖଲିକୋଟ ଗଡ଼ରେ ସୂର୍ଯ୍ୟ ଉଏଁ ଓ ସୂର୍ଯ୍ୟ ଅସ୍ତ ହୁଏ । ଘନଘୋର ବର୍ଷାଦିନେ ଲୋକେ ସୂର୍ଯ୍ୟ ନ ଦେଖି ମାଗୁଣୀକି ଦେଖି ବେଳ ଜାଣନ୍ତି । ମାଘ ମାସର ଜାଡ଼ରେ ପିଣ୍ଡାରେ ଘୋଡ଼ାଘାଡ଼ି ହୋଇ ଲୋକେ ବସିଥିଲାବେଳେ ମାଗୁଣୀ ନିଜ ପରିଚିତ ସାଙ୍ଗ ଦୁଇଟିକୁ ଶଗଡ଼ରେ ଯୋଚି ପାହାଡ଼ତଳେ ଗୀତବୋଲି ଚାଲିଯାଏ । ଲୋକେ କହନ୍ତି ମାଗୁଣୀ ସେମାନଙ୍କର ଗୋଟାଏ ଘଣ୍ଟା । ବର୍ଷାଦିନେ ବର୍ଷା ଘୁଞ୍ଚିଯାଇପାରେ, ଖରାଦିନେ ଖରା ଟିକି ଉଣା ହୋଇପାରେ; କିନ୍ତୁ ମାଗୁଣୀର ଶଗଡ଼ ଦିନେ ହେଲେ ବନ୍ଦ ହୁଏ ନାହିଁ । ସେ କହେ ରଜାଘରେ ଯୋଡ଼ା ମୋଟରକାର ଅଛି ସତ; କିନ୍ତୁ ତା ପରି ଇଞ୍ଜିନିୟର ନାହାନ୍ତି । ତା ଶଗଡ଼ ରଜାଘର ମୋଟରଠୁଁ ବଳେ । ବାରବର୍ଷର ଅତି ପରିଚିତ ସାଥୀ କାଳିଆ ଓ କଷରା; ବଳଦ ଉପରେ ସେ ହାତ ମାରି ଆଉଁସି ଦେଲେ ତା ଗାଡ଼ିରେ ପକ୍ଷ ଦିଆହୁଏ । ଯେତେବେଳେ ସେ ଶଗଡ଼ ଉପରେ ବସି ଗୀତ ପଦେ ବୋଲିଦିଏ, "ରାମ ଯେ ଲଇକ୍ଷଣ ଗଲେ ମୃଗ ମାରି" ତାର ମୋଟର ଚାଲେ । ସେତେବେଳେ ଶ୍ୟାମଳ ତରୁ ପତ୍ରତଳେ, ଗିରି କନ୍ଦରା ଭିତରେ ପ୍ରତିଧ୍ୱନି ଉଠେ । ଅର୍ଦ୍ଧସୁପ୍ତ କୁକ୍କୁଟ କୁମ୍ଭାଟୁଆ ତାକୁ ଉତ୍ତର ଦିଅନ୍ତି । ପଲ୍ଲୀର ବୁଲା କୁକୁରଦଳ ଚମକି ଉଠି ଗାଁରେ ଚହଳ ପକାଇ ଦିଅନ୍ତି । ଘଡ଼ଘଡ଼ ଶବ୍ଦରେ ଶଗଡ଼ ଚାଲିଯାଏ ଷ୍ଟେସନ ଅଭିମୁଖେ ।

ପଚିଶ ବର୍ଷର ମାଗୁଣୀ ବାରବର୍ଷର ସାଥୀ ବଳଦଙ୍କୁ ଧରି ଯେତେବେଳେ ଭଡ଼ା ବୋହି ଚାଲେ, ସତୁରୀ ଅଶୀବର୍ଷ ତଳର କାହାଣୀ ପରି ବହିଯାଏ । ସେ କହେ ଆଗ ତା ନିଜ କଥା—ତା'ର କେବେ ବାପା ମା ଥିଲେ, ସେ କେବେ ସୁଖରେ ବଡ଼ି ଖଟରେ ଶୋଉଥିଲା, ସେ କେବେ ଘରେ ବସି ଦୁଇଓଳି ପେଟପୂରାଇ ଖାଉଥିଲା; ଆଉ ଜଣଙ୍କର ମଧୁର ବଚନ ଶୁଣି ଜୀବନର ସକଳ ଦୁଃଖ ଭୁଲିଯାଇଥିଲା । ସେ ଗଢ଼ିଥିଲା ଗୋଟେ ସ୍ୱପ୍ନରାଜ୍ୟ । ସେ ରାଜ୍ୟରେ ସିଏ ଥିଲା ରାଜା । ରାଣୀ କରି ଯାହାକୁ ଆଣିଥିଲା, ଜୀବନଟାକୁ ସେ ହସାଇ ହସାଇ ନଚାଉଥିଲା ।

ତା'ର ଅଧର ତଳେ ସେ ଅମୃତ ପିଉଥିଲା; ତା'ର ଦୃଷ୍ଟିର ଭିତରେ ସେ ଜଗତ୍ ଦେଖୁଥିଲା; ତା'ର ନିଃଶ୍ୱାସରେ ସେ ସୁବାସ ବାରୁଥିଲା ଓ ତା'ର ପାଦ ତଳେ ସେ ଫୁଲ ଫୁଟିବାର ଦେଖୁଥିଲା । କିନ୍ତୁ ସେ ସ୍ୱପ୍ନ ତା'ର ବେଶି ଦିନ ରହିଲା ନାହିଁ । ସ୍ୱପ୍ନମୟୀ ହସି ହସି ଚାଲିଗଲା ଏ ସଂସାରର ସେପାଖକୁ । ଏପାଖେ ଏ ଦୁଇଟି ବଳଦ ଗାଁରୁ ଷ୍ଟେସନକୁ ଓ ଷ୍ଟେସନରୁ ଗାଁକୁ ଦିନକେ ଦୁଇଥର ଯାଇ ତାକୁ ଆର ଜନ୍ମରେ ଭେଟିବାକୁ ଚେଷ୍ଟା କରୁଥିଲା ।

ଶଗଡ଼ ବୋହିଲାବେଳେ ଏ କଥା ସେ ସମସ୍ତଙ୍କୁ ଶୁଣାଇ କହାଇ ପକାଏ । ନିଜେ ଦୁଇଟୋପା ଲୁହ ନିଜର ଚିରା କାନିରେ ପୋଛିଦେଇ ବଳଦ ଉପରେ ହାତ ମାରି ପୁଣି କହେ ଆଉ ଗୋଟାଏ ଗଳ୍ପ । ଲୋକଙ୍କ ବାଟ ସରିଯାଏ, କିନ୍ତୁ ତା'ର ଗଳ୍ପ ସରେ ନାହିଁ । ସେ କହେ ତା ଶଗଡ଼ରେ ନ ବସିଛି କିଏ ? ବସି ନ ଥିଲେ ବସି ନ ଥିବେ ଖଲିକୋଟର ରାଜା । କିନ୍ତୁ ଦେବାନ୍ କହ, ମ୍ୟାନେଜର କହ, ଓକିଲ କହ, ମହାଜନ କହ, ଏପରି କି ମହାତ୍ମାଙ୍କ ଭକ୍ତ ପର୍ଯ୍ୟନ୍ତ କହ, ସମସ୍ତେ ବସିଛନ୍ତି ତା ଶଗଡ଼ରେ । ଏସବୁ କଥା କହିଲାବେଳେ ସେ ଏଡ଼େ ଉତ୍ସାହରେ କହେ ଯେ, ବେଳେବେଳେ ବଳଦ ଦୁଇଟା ଠିଆ ହୋଇଗଲେ ମଧ୍ୟ ସେମାନଙ୍କୁ ଅଡ଼ାଏ ନାହିଁ । ଜାଣିପାରିଲେ କହେ, ଏ ପଶୁଗୁଡ଼ାକ ମଧ୍ୟ ଏ କଥା ଶୁଣିବାକୁ କାନଡେରିଛନ୍ତି ।

ମାଗୁଣିର ଶଗଡ଼ ଓ ବଳଦ ଖଲିକୋଟର ଗୋଟିଏ ବିରାଟ ଇତିହାସ ନ ହେଲେ ମଧ୍ୟ ସେ ଇତିହାସର କେତେଟା ପୃଷ୍ଠା । ସେ ଇତିହାସ କହେ, ଏ ଶଗଡ଼ ରାଜ୍ୟର ସମସ୍ତଙ୍କି ଚହ୍ଲିଛି । କେତେ ବାଳବିଧବା ଏହାରି ଉପରେ ବସି ଶାଶୁଘରୁ ବାପ ଘରକୁ ଫେରିଛନ୍ତି । କେତେ ସୁହାସିନୀ କୁଳବଧୂ ବାପଘରୁ ଶାଶୁଘରକୁ ମଧ୍ୟ ଯାଇଛନ୍ତି । ଖଜଣା ଗଣ୍ଡାକ ଦେଇ ନ ପାରି ଯେଉଁଦିନ ମଣ୍ଡଳ ଗାଁର ଗଦା ରାଉଳ ଜେଲ ଗଲା, ସେଇଦିନ ତା ଘରର ଗୁଣ୍ଡୁଣୀ ମୁଣ୍ଡା ଆଦି ଏଇ ଶଗଡ଼ରେ ବୁହାହୋଇ ଆସି ରଜାଘର କଚେରି ଦୁଆରେ ଜମା ହୋଇଥିଲା । ଯେଉଁଦିନ ବେନ୍ଧାଳିଆ ଗାଆଁର ମଧୁ ରଥେ ନରହତ୍ୟା ଅପରାଧରେ ଧରାହେଲେ, ସେଦିନ ସେ ଏଇ ଗାଡ଼ିରେ ବସି ଯାଇଥିଲେ । ଏଇ ଗାଡ଼ିରେ ବଡ଼ ଓକିଲ ଆସି

ରଜାଘର ପକ୍ଷ ନେଇଛନ୍ତି । ଏଇ ଗାଡ଼ିରେ ରଇତ ନେତାଏ ହାତକଡ଼ା ପିନ୍ଧି କଚେରିକି ଯାଇଛନ୍ତି । ଏଇ ଗାଡ଼ି ସୁଖ ଦେଖିଛି, ଦୁଃଖ ଦେଖିଛି । ଲୁହ ବୋହି ଏଇ ଗାଡ଼ିର ଶୁଖିଲା ପାଲର ଗନ୍ଧ ଓଦା ହୋଇଯାଇଛି; ହସଖେଳରେ ଏଇ ଗାଡ଼ି କେତେ କମ୍ପିଛି ।

ଏଇସବୁ କଥା କହି ମାଗୁଣୀ ଯେତେବେଳେ ଗାଡ଼ି ଚଳାଏ, ମନେହୁଏ ମାଗୁଣୀ ଗୋଟାଏ ଜୀବନ୍ତ ଇତିହାସ । ଏପରି ଦଶ ପାଞ୍ଚଟା ଇତିହାସକୁ ଏକାଠି କଲେ ଓଡ଼ିଶାରେ ଗୋଟାଏ କୋଣାର୍କ ତିଆରି ହୁଅନ୍ତା ।

ଦିନେ ମାଗୁଣୀ ଶୁଣିଲା, ତା ଗାଡ଼ିରେ ଆଉ ଲୋକେ ବସିବେ ନାହିଁ; କାରଣ ସିଂହଘର ଗୋଟାଏ ମୋଟର ବାସ୍ ଆଣୁଛନ୍ତି । ଶୁଣିଲା ମାତ୍ରେ ସେ ହସି ହସି ଆକାଶ ଫଟାଇଦେଲା । କହିଲା—"ମୋଟର ବାସ୍ ! ତା କ'ଣ ମୋ କାଳିଆ କଣ୍ଢେଇକୁ ଟପିଯିବ ? ଭଲ କରି ଆହାର ଦେଇ ଯେତେବେଳେ ହାତ ମାରିଦେବି, ଲୋକେ କ'ଣ ମୋ ଗାଡ଼ି ଛାଡ଼ି ସେ ଗାଡ଼ିକି ଯିବେ ? ଏ କଥା ଶୁଣି ସମସ୍ତେ ହସିଲେ ସତ; ମାତ୍ର ସେ ଖାତିର କଲା ନାହିଁ । ଦୁଇ ଚାରି ଦିନ ଗଲା । ଦେଖୁ ଦେଖୁ ଗଡ଼ରେ ମୋଟର ବାସ୍ ପହଞ୍ଚିଲା । ଲୋକେ କହିଲେ, ଏଥର ମାଗୁଣୀର ବ୍ୟବସାୟ ବୁଡ଼ିଲା । ଏକାବେଳକେ କୋଡ଼ିଏ ଜଣଙ୍କୁ ଧରି ଘଣ୍ଟାକେ ଚାଳିଶ ମାଇଲ ଯିବ । ମାଗୁଣୀ କି ତାକୁ ବଳିଯିବ ?

କଥା ସତ । ଦୈତ୍ୟଦାନବ ପରି ଗଡ଼ରେ ମୋଟର ବାସ୍‌ଟାକୁ ଦେଖି ମାଗୁଣୀର ମନରେ ଛନକା ପଶିଗଲା । ସେ କାନ୍ଦିପାରିଲା ନାହିଁ ସତ, କିନ୍ତୁ କାନ୍ଦକାନ୍ଦ ହୋଇ ଭାବିଲା, ସେଦିନ ଯାଇଥିଲି କୋଦଳା ସଭାକୁ । କିଏ କହୁଥିଲେ, କଳ ଜିନିଷଠୁଁ ହାତ ଜିନିଷ ଭଲ । ତା ହେଲେ ମୋଟର କଳଠୁଁ କ'ଣ ମୋ ଶଗଡ଼ ଭଲ ନୁହେଁ ? ଏତେ ଲୋକ ସଭାରେ ବସି ଶୁଣୁଥିଲେ, ସେମାନେ କ'ଣ ମୋର ଦୁଃଖ ବୁଝିବେ ନାହିଁ ? କର୍ମୀ ନ ବୁଝିଲେ ଯିବି ଗାନ୍ଧୀଙ୍କ ପାଖକୁ । ଦରିଦ୍ରର ସାଥୀ ସେ, ଗରିବଙ୍କ ବନ୍ଧୁ ସେ । ସେ କ'ଣ କହିବେ, ମାଗୁଣୀ ମରିଯାଉ ଆଉ ଏ ସିଂହେ ବଞ୍ଚନ୍ତୁ ?

ଷ୍ଟେସନରୁ ଗଡ଼କୁ ସିଂହଙ୍କ ବାସ୍ ଚାଲିଲା । ମାଗୁଣୀର ଶଗଡ଼ ମଧ୍ୟ ଚାଲିଲା; କିନ୍ତୁ ବାସ୍ ପୂର୍ଣ୍ଣ, ଶଗଡ଼ ଖାଲି । ମାଗୁଣୀ ଯେତେ ଆଗରୁ ଗାଡ଼ି

ଅଧରୁ ଉଠି ଷ୍ଟେସନରେ ଶଗଡ଼ ହାଜର କଲେ ମଧ୍ୟ ଲୋକେ ଗଲେ ବାସ୍‌ରେ । ଯେତେ ନୂଆ ଅଖାର ଗନ୍ଧ ପକାଇଲେ ମଧ୍ୟ ଲୋକେ ଧାଇଁଲେ ବାସ୍ ମୁହଁକୁ । ଯେତେ ହାତ ଧରି ଡାକିଲେ ମଧ୍ୟ ଲୋକେ ଚାହିଁଲେ ବାସ୍ ଆଡ଼କୁ । ଦିନେ ଗଲା, ଦୁଇ ଦିନ ଗଲା । ସେ ଦୁଇଓଳି ଖାଇକରି ଆସୁଥିଲା, ଓଳିଏ ଖାଇ ଆସିଲା । ସେ ଭାତ ଖାଇ ଆସୁଥିଲା, ତୋରାଣି ପିଇ ଆସିଲା । ସେ ଦୁଇ ଓଳିରେ ଥରେ ପିଇ ଆସୁଥିଲା, କ୍ରମେ ତିନି ଓଳି ଚୁଲି ଲଗିଲା ନାହିଁ । କାଳିଆ କଣ୍ଢେଇଙ୍କ ଛାତିହାଡ଼ ଦିଶିଲା । ସେମାନଙ୍କୁ ଧରି ସେ ଯେତେବେଳେ କାନ୍ଦିଲା—କିଏ କହିଲା ପାଗଳ, କିଏ କହିଲା ବାୟା ।

ତା'ପରେ ଯେଉଁ ଦିନ ମାଗୁଣିର କୁଡ଼ିଆଦୁଆର ଭାଙ୍ଗି ଗାଁ ଲୋକେ ତା ଶବ କାଢ଼ିଲେ, ଦେଖିଲେ ଛୁଣ୍ଡା କଣ୍ଢେଇ ତଳେ ପାଞ୍ଚଣ ବାଡ଼ିଖଣ୍ଡିକ ଶୁଆଇଦେଇ ମାଗୁଣି ଆଖି ବୁଜିଦେଇଛି । ମଶାଣିରେ ନିଆଁ ଜଳିଲା, ଆକାଶରେ ପକ୍ଷୀ ଉଡ଼ି ଧୂଆଁ ପାର ହେଲେ । ପୃଥିବୀର ଦୁଇ ଲକ୍ଷ ଲୋକ ସେ ଖବର ପାଇ ଦୁଃଖରେ କହିଲେ—"ଆହା, ମାଗୁଣି ଚାଲିଗଲା !"



# ମାଂସର ବିଳାପ



କାଳନ୍ଦୀଚରଣ ପାଣିଗ୍ରାହୀ

ଜଲି ଏବଂ ଡୋଗ୍ ଆବାଲ୍ୟ ପରମ ସାଥୀ । କ୍ଷଣେ ଏକ ଅପରକୁ ଛାଡ଼ି ରହିବାକୁ ସହଜରେ ରାଜି ହୁଏ ନାହିଁ । ଜଲି ଥରେ ଅସୁସ୍ଥ ହେଲା, ଡୋଗ୍ ତାକୁ ଅହର୍ନିଶ ଜଗି ବସିଥାଏ । ସକଳ ତାଡ଼ନା ତାହା ନିକଟରେ ବ୍ୟର୍ଥ । ଅବଶେଷରେ ସେହିଠାରେ ତା'ର ପାନାହାର ଯୋଗାଇବା ଲାଗି ହୁକୁମ ହେଲା । ଡୋଗ୍‌ର ପାଦ ଥରେ ଜଖମ ହେଲା । ଜଲି ଭଲ କରି ଜାଣେ ଡୋଗର ବଳ ଅପରିସୀମ; କିନ୍ତୁ ବୁଝିପାରିଲା ନାହିଁ, କାହିଁକି ତାକୁ ଏତେ ଦିନ ଏକସ୍ଥାନରେ ବନ୍ଦୀ ହୋଇ ରହିବାକୁ ହୋଇଛି । ତା'ର ପାଦ ମୁଖରେ ସ୍ପର୍ଶ କରି ତା'ର ବ୍ୟଥା କେଉଁଠାରେ ଜାଣିବା ପାଇଁ ସଚେଷ୍ଟ ହେଲା ।

ଡୋଗ୍ ଗୋଟିଏ ଇଂଲିଶ୍ ଟେରି ହାଉଣ୍ଡ ଏବଂ ଜଲି ଗୋଟିଏ ଗଡ଼ଜାତ ଜଙ୍ଗଲର କୃଷ୍ଣସାର । ଡୋଗ୍ ଆସିଛି ବିଖ୍ୟାତ ଲଣ୍ଡନ ନଗରୀରୁ, ଜଲିର ଜନ୍ମସ୍ଥାନ ଓଡ଼ିଶାର ନିଭୃତ ଅରଣ୍ୟାନୀ । ଡୋଗ୍ ସମ୍ପୂର୍ଣ୍ଣ ମାଂସାଶୀ ଜଲି ନିରାଟ ଶାକାହାରୀ; କିନ୍ତୁ ଅତି ଶୈଶବରୁ ଦୁହିଁଙ୍କ ମଧ୍ୟରେ ସଦ୍ଭାବ ଜନ୍ମି ଯାଇଥିଲା ।

ଡୋଗର ଅସୁସ୍ଥତା ନିବାରଣପାଇଁ ଜଲି ତାହାର ସର୍ବାଙ୍ଗ ଲେହନ କରି ଶୁଶ୍ରୂଷାରେ ଲାଗିଲା । ଅବଶେଷରେ ଡୋଗ୍ ଟିକିଏ ସୁସ୍ଥ ହୋଇ ପ୍ରଥମେ ଅସ୍ତେ ଅସ୍ତେ ଚାଲିବାକୁ ଆରମ୍ଭ କଲା । ତା'ପରେ ଯେତେବେଳେ ବସନ୍ତ ପୁଣି ଲେଉଟିଲା, ଫୁଲର ଗନ୍ଧ ଚହଟିଲା, ଦୁଇ ବନ୍ଧୁ ଦକ୍ଷିଣାଭିମୁଖରେ ଇତସ୍ତତଃ ଧାଇଁ କ୍ରୀଡ଼ାକୌତୁକରେ ମଗ୍ନ

ହେଲେ—ଯେପରି କି ଏହି ଆନନ୍ଦର ସ୍ରୋତ ଯେଉଁ ଦିଗରୁ ଭାସିଆସୁଛି, ସେହି ରହସ୍ୟମୟ ଦେଶଟାକୁ ଦୁହେଁ ମିଳି ଏକ ମୁହୂର୍ତ୍ତରେ ଆବିଷ୍କାର କରି ନେବେ । ଦୁହିଁଙ୍କ ଦୌଡ଼ିବାର ଭଙ୍ଗୀରେ ବିଶେଷ ପାର୍ଥକ୍ୟ ଓ ସୌନ୍ଦର୍ଯ୍ୟ କଳା ନହିତ ଅଛି । ଡୋଗି ଯେତେବେଳେ ଦୌଡ଼େ, ସେତେବେଳେ ଗୋଟିଏ ଲମ୍ବମାନ କ୍ଷୀଣସୂତ୍ର ଭୂମିରେ ମିଶିଗଲା ପରି ମନେହୁଏ । ସେତେବେଳେ ତା'ର ଚକ୍ଷୁ, କର୍ଣ୍ଣ, ପାଦ, ମୁଖ ଇତ୍ୟାଦି ଚିହ୍ନିବାର ଉପାୟ ନାହିଁ; କିନ୍ତୁ ଜଲିର ଦୌଡ଼ରେ ଭଙ୍ଗିମା ଭିନ୍ନ ଧରଣର । ସେ ଯେପରି ଫ୍ୟାରିସ୍ ଡାନ୍ସ ! ଗୋଡ଼ ଯେପରି ତା'ର ତଳେ ଲାଗୁ ନାହିଁ; କେବଳ ଶୂନ୍ୟେ ଶୂନ୍ୟେ ନାଚି ନାଚି ଯାଉଛି ।

ପଶୁ ଦିଓଟି ଜମିଦାର ବାବୁଙ୍କର ବଡ଼ ପ୍ରିୟ ଥିଲେ । ଡୋଗି ତ ବିଳାତି ଉତ୍ପାନ ବୋଲି ତା'ର ଇଂରାଜୀ ନାମ ରଖାଯାଇଥିଲା; ଜଲିକୁ ତା'ର ଅତ୍ୟନ୍ତ ପ୍ରିୟ ଦେଖି ତାକୁ ମଧ୍ୟ ସେହି ଭାଷାରେ ଅନ୍ୟ ଗୋଟିଏ ନାମରେ ଅଭିହିତ କରାଯାଇଥିଲା । କର୍ମକ୍ଲାନ୍ତ ଦିବସ ପରେ ଜମିଦାର ବାବୁ ଯେତେବେଳେ କଚେରି ସମ୍ମୁଖସ୍ଥ ପ୍ରକାଣ୍ଡ ପଡ଼ିଆରେ ସାୟଂଭ୍ରମଣ ଉଦ୍ଦେଶ୍ୟରେ ବାହାରନ୍ତି, ସେତେବେଳେ ଏ ଦିଓଟି ପଶୁ ତାଙ୍କର ସହଚର ହୋଇ ଗ୍ଭଲିବାରେ ଏବଂ ତାଙ୍କ ସମ୍ମୁଖରେ କ୍ରୀଡ଼ାକୌତୁକ କରିବା ଦ୍ୱାରା, ତାଙ୍କ ଶ୍ରାନ୍ତ ଅନ୍ତରରେ ଯେ ଆନନ୍ଦ ସଞ୍ଚାର କରନ୍ତି, ତାହାର ମୂଲ୍ୟ ସାମାନ୍ୟ ନୁହେଁ । ତାହା ନ ହେଲେ ଶିକାରସ୍ଥଳୀରେ ଡୋଗିର କିଛି ଆବଶ୍ୟକତା ଅଛି, ଜଲି ତ ସମ୍ପୂର୍ଣ୍ଣ ଅନାବଶ୍ୟକ । ତଥାପି ଜମିଦାର ବାବୁଙ୍କର କର୍ମପ୍ରବାହ ମଧ୍ୟରେ ଜଲିର ଟିକିଏ ସ୍ଥାନ ଅଛି । ସେହି ଆନନ୍ଦଟିକକର କାରଣ ସେ ।

ଜମିଦାର ବାବୁ ଗସ୍ତରେ ଯେତେବେଳେ ବାହାରନ୍ତି, ଜଲି ତାଙ୍କ ହାତ ଗୁଣ୍ଡି ଗୁଣ୍ଡି ଖୋଡ଼ରେ ଘଷି ହୋଇ ଗ୍ଭଲେ । ଡୋଗି କେତେବେଳେ ପଛରେ ରହିଗଲେ ଛୁଟିଆସି ତାଙ୍କ ସମ୍ମୁଖରେ ନମସ୍କାର ଛଳରେ କର ଯୋଡ଼ ହୋଇ ବସିପଡ଼ି ଲାଙ୍ଗୁଳ ହଲାଏ । କେତେବେଳେ ତାଙ୍କ ଦୁଇ ପାଦମଧ୍ୟରେ ପ୍ରବେଶ କରି ଗତି ଶିଥିଳ କରିଦିଏ । ଅନ୍ୟ କୌଣସି କୁକୁର ଯେବେ ଆସି ଜଲି ଉପରେ ଲୋଲୁପ ଦୃଷ୍ଟି ପକାଏ, ଜଲି ଭୟକାତର ହୋଇ ବାବୁଙ୍କ ଦୁଇ ପାଦ ମଧ୍ୟରେ ଠେଲି ଠେଲି

ପ୍ରବେଶ କରେ । ଡୋବା ଜାଣିପାରି ସଙ୍ଗେ ସଙ୍ଗେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଦେଖା ଦେବାମାତ୍ରକେ ତା'ର ସ୍ୱଜାତିମାନେ ପୃଷ୍ଠପ୍ରଦର୍ଶନ କରି ବମୀତଭାବରେ ଅପସାରିତ ହୁଅନ୍ତି । କାରଣ ଡୋବାର ବଳବୀର୍ଯ୍ୟ ତା'ର ପଡ଼ୋଶୀମାନଙ୍କୁ ଅଜ୍ଞାତ ନଥିଲା ।

ଜମିଦାର ବାବୁଙ୍କର ଶିକ୍ଷା ସମ୍ବଲପୁରଠାରେହିଁ ସମାପ୍ତ ହୋଇଅଛି । ବେଶ୍ ଆଧୁନିକ ଧରଣର ଲୋକ; ମିଷ୍ଟାଳାପ, ଶିଷ୍ଟାଚାର ଇତ୍ୟାଦି ଗୁଣର ଅଭାବ ନ ଥିଲା । ଦେଶୀ ଲୋକଙ୍କ ପାଖରେ କୁର୍ତ୍ତା ଗୁଦରପକା ଖାଣ୍ଟି ଦେଶୀ ଓ ବଲାତିଙ୍କ ପାଖରେ ପୁରା ସାହେବ । ଅବସର ସମୟରେ ବଡ଼ ବଡ଼ ସାହେବସୁବା ଶିକାର ଉଦ୍ଦେଶ୍ୟରେ ଜମିଦାର ଭବନରେ ଆତିଥ୍ୟ ଗ୍ରହଣ କରିଥାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ ବେଶ୍ ଆଡ଼ମ୍ବରରେ ଅତିଥିଶାଳା ନିର୍ମାଣ କରାଯାଇଅଛି । କେବଳ ଜଲ ଓ ଡୋବା ତାଙ୍କର ପୋଷା ନ ଥିଲେ । ଏହାଛଡ଼ା କେତେ ଜାତିର ପକ୍ଷୀ, ମର୍କଟ, ଭଲ୍ଲୁକ, ମତ୍ସ୍ୟ ଇତ୍ୟାଦି କେତେ ଜୀବ ଜମିଦାର ବାବୁଙ୍କ ଅନ୍ନରେ ପ୍ରତିପୋଷିତ ହେଉଥିଲେ । କହିବାକୁ ଗଲେ ଜମିଦାର-ଭବନରେ ଗୋଟିଏ ଶ୍ରେଷ୍ଠ ଧରଣର ଚିଡ଼ିଆଖାନା ଥିଲା ।

କିନ୍ତୁ ଡୋବା ଓ ଜଲ ତାଙ୍କର ପାର୍ଶ୍ୱଚର । ବିଶେଷତଃ ତାଙ୍କର ଅତି ସୁନ୍ଦର ଏକମାତ୍ର କନ୍ୟାଟି ଜଲ ଓ ଡୋବାର ଅନ୍ୟତମ ସଙ୍ଗୀ ଥିଲା । ତା'ର ଅଧିକାଂଶ ସମୟ ସେ ଏ ଦୁହିଁଙ୍କୁ ନେଇ ଥାଏ । ବଗିଚାରେ ଧାଈର ତତ୍ତ୍ୱାବଧାନରେ ଯେ ଯେତେବେଳେ କଅଁଳ ଘାସ ଛିଣ୍ଡାଏ, ଜଲ ଜାଣିପାରି ତା'ମୁହଁ ପାଖରେ ନିଜ ମୁହଁଟି ନେଇ ରଖେ । ଡୋବା ଦୌଡ଼ିଆସି ତା'ର ଏହି ଶ୍ରେଷ୍ଠ ଖାମିଦାଣୀ ପାଖରେ କେତେ ଗେଲ କୌତୁକର ଅଭିନୟ କରେ । ଖାମିଦାଣୀ 'ତୁ କାଇବୁ' 'ତୁ କାଇବୁ' କହି ତା' ମୁହଁରେ ଘାସ ଗୁଞ୍ଜି ଦିଅନ୍ତି । ସେ ଅମାନ୍ୟ ନ କରି ମୁଖରେ ତାହା ଧରି ସ୍ୱୀୟ ବାଧ୍ୟତା ଜ୍ଞାପନ କରେ । ବାରଣ୍ଡା ଇଜି-ଚେୟାରରେ ବସି ଏସବୁ ନିରୀକ୍ଷଣ କରି ବାବୁଙ୍କ ଚିତ୍ତ ଉତ୍ଫୁଲ୍ଲ ହୋଇଉଠେ ।

ଜମିଦାର ବାବୁ ସାହେବମାନଙ୍କ ସହିତ ଯେତେ ମିଳାମିଶା କରନ୍ତୁ, ଦେଶୀ ଲୋକମାନଙ୍କ ପ୍ରତି ଯେ ତାଙ୍କର ଅବଜ୍ଞା ଅଥବା ଘୃଣା ଥିଲା, ଏହା ବୋଲଯାଇ ନ ପାରେ । ଦେଶର କୌଣସି ପଦସ୍ଥ ବ୍ୟକ୍ତି

ତାଙ୍କର ଦ୍ଵାରସ୍ଥ ହେଲେ ତାଙ୍କ ସମ୍ମାନ ଅଭ୍ୟର୍ଥନାରେ କୌଣସି ତ୍ରୁଟି ହେଉ ନ ଥିଲା । ପ୍ରଜାମାନଙ୍କ ମଧ୍ୟରେ ମଧ୍ୟ ଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଖାଯାଉଥିଲା । ତଥାପି ଲୋକମତ ତାଙ୍କ ସ୍ଵଭଗତର ଅନୁକୂଳରେ ନ ଥିଲା । ବୁଢ଼ା ବୁଢ଼ା ଲୋକେ ତାଙ୍କୁ ଭ୍ରଷ୍ଟ, ସ୍ଵଧର୍ମତ୍ୟାଗୀ କହୁଥିଲେ । ଆଉ କେହି କେହି ବହୁବ୍ୟୟୀ, ପ୍ରଜାପୀଡ଼କ କହୁଥିଲେ । ଦେଶଚକ୍ଷୁରେ ତାଙ୍କର ପ୍ରଧାନ ଦୋଷ, ସେ ବିଦେଶୀୟମାନଙ୍କ ସହିତ ମିଶିଲେ ଏବଂ ସେହିମାନଙ୍କ ଆଚାର ଗ୍ରହଣ କଲେ । ଯଥାର୍ଥରେ ତାଙ୍କର ଆହାର ପରିଚ୍ଛଦରେ ବିଜାତୀୟ ଭାବ ଅନେକ ପରିମାଣରେ ଲକ୍ଷିତ ହେଉଥିଲା । ସେସବୁରେ ଯେତିକ ସଂଯମ ଆବଶ୍ୟକ, ସେ ତା'ର ସମ୍ପୂର୍ଣ୍ଣ ଅବହେଳା କରୁଥିଲେ ।

ଏଥର ଶୀତ ଛୁଟିରେ ପୋଲିସ ବିଭାଗର ଡି. ଆଇ. ଜି. ସାହେବ ଶିକାର ଉଦ୍ଦେଶ୍ୟରେ ଜମିଦାର-ଭବନରେ ଆତିଥ୍ୟ ଗ୍ରହଣ କରିବେ ବୋଲି ଲେଖି ପଠାଇଛନ୍ତି । ତାଙ୍କ ସହିତ ତାଙ୍କର ସ୍ତ୍ରୀ ଓ କନ୍ୟା ଆସିବେ । ଡି. ଆଇ. ଜି. ସାହେବଙ୍କ ସହିତ ଜମିଦାର ବାବୁଙ୍କର ବନ୍ଧୁତା ବହୁଦିନର । ଏଥର ପୁଣି ସଙ୍ଗରେ ସ୍ତ୍ରୀ କନ୍ୟା ଆସୁଛନ୍ତି । ଗୃହ ଦିନ ଆଗରୁ ଅତିଥିଶାଳା ପରିଷ୍କୃତ ହୋଇ ସଜାସଜି ଲାଗିଛି ଏବଂ ଯେଉଁ ସ୍ଥାନରେ ହରିଣ ଓ ପକ୍ଷୀ ପ୍ରଭୃତି ଶିକାର କରିବାର କଥା, ସେ ସ୍ଥଳରେ ତମ୍ବୁ ପ୍ରଭୃତିର ଆୟୋଜନ ଚାଲିଛି । ଆବଶ୍ୟକ ଜିନିଷ କିଣିବା ଲାଗି କଟକକୁ ଲୋକ ପଠାଯାଉଅଛି । ଚାକର, ବେଠିଆ ଓ ଅମଲା ପ୍ରଭୃତି ବ୍ୟତିବ୍ୟସ୍ତ ହୋଇ ଲାଗିପଡ଼ିଛନ୍ତି । ସବୁଥର ପରି ଏଥର କାହାରିକି ମରିବାକୁ ତର ନାହିଁ । ସବୁଥର ପରି ଏଥର ମଧ୍ୟ ଜମିଦାର ବାବୁଙ୍କ ଅସାକ୍ଷାତରେ ଗାଳି ବର୍ଷଣ କରୁଛନ୍ତି ।

ସାହେବଙ୍କ ଆସିବା ସମୟକୁ ତାଙ୍କୁ ବାଟରୁ ସଙ୍ଗୋଳି ଆଣିବା ଲାଗି ଜମିଦାର ବାବୁ ଖଣ୍ଡେଦୂର ମଟରରେ ଗଲେ । ନିର୍ଦ୍ଦିଷ୍ଟ ସମୟରେ ସାହେବ ପହଞ୍ଚିଗଲେ । ତାଙ୍କର ସ୍ତ୍ରୀ କନ୍ୟାମାନଙ୍କ ସହିତ ଯୋଗ ଦେଇ ଜମିଦାର ବାବୁଙ୍କ ମନପ୍ରାଣ ଆପ୍ଲୁତ ହୋଇଉଠିଲା । ଜମିଦାର-ଭବନରେ ମହା ଗୁଞ୍ଜନ; କାହାରି ଦଣ୍ଡେ ସ୍ଥିର ହୋଇ ରହିବାର ସମୟ ନାହିଁ । ସମସ୍ତେ ଦୌଡ଼-ଧାପଡ଼ କରୁଛନ୍ତି । ଅତିଥିମାନଙ୍କ ସହିତ ଠିକ୍

କରାଗଲା, ଆଜି ଅତିଥିଶାଳାରେ ରହି ପରଦିନ ପ୍ରାତଃଭୋଜନ ପରେ ଶିକାରସ୍ଥଳୀକୁ ଯାତ୍ରା କରିବାକୁ ପଡ଼ିବ ।

ଶିକାରସ୍ଥଳୀ ଜମିଦାର-ଭବନରୁ ବାର ଚୌଦ ମାଇଲ ରାସ୍ତା, ନିପଟ ଜଙ୍ଗଲମଧ୍ୟରେ, ଘର ଗାଁ ପାଖରେ ନାହିଁ । ଚାକର, ଖାନ୍‌ସମା, ବେଠିଆ ପ୍ରଭୃତି ଆଗରୁ ସବୁ ଜିନିଷପତ୍ର ନେଇ ଚାଲିଲେ । ପଛରେ ସାହେବ ପରିବାର, ଜମିଦାର ବାବୁ, ସାହେବଙ୍କ ଦୁଇଟା ଶିକାରି କୁକୁର ଏବଂ ଜମିଦାର ବାବୁଙ୍କର ଡୋରା ଓ ଜଲି ମଟରରେ ଆରୋହଣ କରି ଚାଲିଲେ । ଜଲର ଯିବା ଅନାବଶ୍ୟକ ହେଲେହେଁ ଡୋରା ତାକୁ ଛାଡ଼ି କୌଣସି ସ୍ଥାନରେ ରହିବ ନାହିଁ । ଯେଉଁ ଦେଶକୁ ନିଆଯାଉ, ସୁଯୋଗ ପାଇଲେ ଆସି ତା' ନିକଟରେ ହାଜର ହେବ । ସୁତରାଂ ଜଲିକୁ ମଧ୍ୟ ସଙ୍ଗରେ ନେବାକୁ ହେଲା । ସେଥିପାଇଁ ଅବଶ୍ୟ ଗୃହ ସ୍ୱାମି-ଦାଣୀଙ୍କର ଅନୁମତି ନିଆଯାଇଅଛି । ତାଙ୍କର ହୁକୁମ ହୋଇଛି, ଦୁଇ ଦିନରୁ ଅଧିକ କାଳ ଡୋରା ଓ ଜଲିକୁ ସେପରି ଅଟକା ନ ଯାଏ ।

କିନ୍ତୁ 'ମେରି କ୍ରିଷ୍ଟମସ୍'ର ଆନନ୍ଦ ଉତ୍ସାହରେ ଶିକାରସ୍ଥଳୀରେ ରହିବାର ଆଜି ପାଞ୍ଚ ଦିନ ହୋଇଗଲା । ସେହି ଜଙ୍ଗଲ ଜାଗାଟାରେ ସାହେବଙ୍କର ମନୋମତ ସବୁ ଜିନିଷ ଯୋଗାଯାଉଛି । ତାଙ୍କର ଅସୁବିଧା ହେବା ଦୂରେ ଥାଉ, ସହରର କୋଳାହଳ କ୍ଲାନ୍ତ ଜୀବନରେ ଏହି ନିର୍ଜନ ବନବାସଦ୍ୱାରା ସେମାନଙ୍କର ଭାରି ଆନନ୍ଦ ଜନ୍ମିଛି । ସୁତରାଂ ଦୁଇଦିନପାଇଁ ଆସି ଆଜି ପାଞ୍ଚ ଦିନ ହୋଇଗଲା, ସାହେବଙ୍କର ଫେରିବାପାଇଁ କୌଣସି ଉଦ୍‌ବେଗ ନାହିଁ । ଆଜି କିନ୍ତୁ ସବୁ ଜିନିଷପତ୍ର ଶେଷ ହୋଇଆସିଅଛି । କାଲି ପ୍ରାତଃରୁ ଫେରିବା କଥା ।

ମଧ୍ୟାହ୍ନଭୋଜନ କରି ସାହେବଙ୍କ ସହ ଜମିଦାର ବାବୁ ଶିକାର ଉଦ୍ଦେଶ୍ୟରେ ବାହାରିଲେ । ଗତ ଚାରି ଦିନ ସାହେବଙ୍କର ସ୍ତ୍ରୀ କନ୍ୟାମାନେ ଖେଳକୌତୁକ, ନୃତ୍ୟଗୀତ ଆଦିରେ ଉପଭୋଗ କରି ଯାଇଛନ୍ତି । ଆଜି ଆଉ ସେମାନେ ଶିକାରର ସହଯାତ୍ରୀ ହୋଇପାରିଲେ ନାହିଁ । ନିରୀହ ଚାକର ବେଠିଆଗୁଡ଼ିକ ଗୋଟିଏ ଚଢ଼େଇପିଲା ନ ମାରି ମଧ୍ୟ କେବଳ ଟିକିଏ ଶିକାରରେ ସାହାଯ୍ୟ କରିବାରେ ଧକେଇ

ପଡ଼ିଛନ୍ତି । ତଥାପି ସେମାନଙ୍କ ମଧ୍ୟରୁ ଦୁଇ ତିନି ଜଣଙ୍କୁ ମିଳିବାକୁ ହେଲା । ପକ୍ଷୀ ମାରିବାରେ ଥରେ ଦୁଇ ଥର ଲକ୍ଷ୍ୟଭ୍ରଷ୍ଟ ହେବାରୁ ଆଉ ମାରିବା ଅସମ୍ଭବ ହୋଇପଡ଼ିଲା । ପକ୍ଷୀମାନଙ୍କୁ ପୁନଶ୍ଚ ଆସି ବସିବାକୁ ଅବସର ଦେବା ଉଦ୍ଦେଶ୍ୟରେ ଏବଂ ସେ ସମୟଟା ହରିଣ ପ୍ରଭୃତି ଅନୁସନ୍ଧାନ କରିବା ଲାଗି ଶିକାରୀଦ୍ୱୟ ନିକଟବର୍ତ୍ତୀ ଜଙ୍ଗଲମଧ୍ୟକୁ ବାହାରିଲେ । ନାନା ଦିଗରେ ଭ୍ରମି କୌଣସିଠାରେ କିଛି ସନ୍ଧାନ କରିପାରିଲେ ନାହିଁ । ଗୃହକର ତିନିଟାଙ୍କୁ ହରିଣ ଦେଖିବାକୁ ଜଙ୍ଗଲକୁ ପଠାଗଲା । ସେମାନେ କେଉଁଠାରେ ବସି ପିକା ଟାଣିଲେ କି ଗୁଣ୍ଡିପଥ ମକଚି ଖୁସିଗପ କଲେ, ତାହା ଦେଖିବାର ତ ଉପାୟ ନାହିଁ । ଶିକାରୀ ଦୁଇଜଣ ନିଃଶବ୍ଦ ପଦକ୍ଷେପରେ ଏ ଜଙ୍ଗଲ, ସେ ଜଙ୍ଗଲ ଖୋଜିବାକୁ ଲାଗିଲେ । ତମ୍ବୁ ନିକଟରୁ ତିନି ଚାରି ମାଇଲ ଦୂରରେ ଯାଇ ପଡ଼ିଛନ୍ତି ବୋଲି କାହାରି ଭ୍ରୂକ୍ଷେପ ନାହିଁ ।

ସେତେବେଳକୁ ବେଳ ରତରତ ହୋଇ ଆସୁଛି । ନିକଟବର୍ତ୍ତୀ ପାହାଡ଼ ଉଢ଼ାଳରେ ସୂର୍ଯ୍ୟ ଲୁଚିଯାଇଛି; କିନ୍ତୁ ତା'ର ରକ୍ତିମ ଆଭା ପଶ୍ଚିମାକାଶରେ ଖେଳେଇ ପଡ଼ୁଛି । ଶିକାରୀଦ୍ୱୟ ଜୀବଦେହର ଲାଲ ରକ୍ତ ଦେଖିବାର ଅଭିଳାଷୀ, ଏ ଦିଗରେ ନଜର ନାହିଁ । ତେଣେ କିନ୍ତୁ ପୂର୍ବଦିଗ ମେଘାଚ୍ଛନ୍ନ କରି ଅନ୍ଧାର ଘୋଟି ଆସିଲାଣି । ପୃଥିବୀ ଉପରେ ଏମାନଙ୍କର ଦୃଷ୍ଟି, ଆକାଶ ସହିତ ସମ୍ପର୍କ କ'ଣ ? ଘଗୀ ବୃଷ୍ଟିର ଶୀତ ପବନ ଯେତେବେଳେ ଦେହରେ ଲାଗିଲା, ଶିକାରୀଦ୍ୱୟ ଫେରି ଚାହିଁଲେ ଅକସ୍ମାତ୍ ବୃଷ୍ଟିର ଆୟୋଜନ । ତମ୍ବୁ ନିକଟରୁ ସେମାନେ ତିନି ଚାରି ମାଇଲ ଦୂରବର୍ତ୍ତୀ ହୋଇପଡ଼ିଛନ୍ତି । ସୁତରାଂ ବର୍ଷା ପୂର୍ବରୁ ତମ୍ବୁ ଧରିବା ଅସମ୍ଭବ । ଅଗତ୍ୟା ବନ୍ଧୁକ-ସ୍କନ୍ଧ ହୋଇ ଦୁଇ ବନ୍ଧୁ ମିଲିଟାରୀ ଡବଲ ମାର୍ଚ୍ଚ ଆରମ୍ଭ କରିଦେଲେ । କିନ୍ତୁ ଠିକ୍ ସେହି ସମୟରେ ହୁ-ହୁ ଆନନ୍ଦଧ୍ୱନି କରି ମେଘ ସେମାନଙ୍କୁ ଆକ୍ରମଣ କଲା । କୌଣସି ଦିଗରେ ନିକଟରେ ଆଶ୍ରୟ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ, ଘୂର୍ଣ୍ଣିବାୟୁ ସନ୍ନିକଟ ଅରଣ୍ୟାନୀମଧ୍ୟରେ ମହାକ୍ରନ୍ଦନରୋଳ ଉପୁଜାଇଦେଲା । ଅତି କଷ୍ଟରେ ସନ୍ତର୍ପଣରେ ଦୁଇ ଜଣ ବାଟ ଖୋଜି ଖୋଜି ଚାଲିଲେ । ପରିଚ୍ଛଦ ସବୁ ଓଦା ହୋଇ ଖୁବ୍ ଭାରି ହୋଇଗଲା । ଦୀର୍ଘ ନିଶ୍ୱାସ ଛାଡ଼ି ତମ୍ବୁରେ ପହଞ୍ଚିଲା ବେଳକୁ ରାତି ଆଠଟା ।

ନୈଶଭୋଜନର କୌଣସି ବନ୍ଦୋବସ୍ତ ନାହିଁ, ତାହାହିଁ ବର୍ତ୍ତମାନ ବିଶେଷ ଭାବନାର ବିଷୟ ହୋଇପଡ଼ିଲା । ଶିକାର ତ କିଛି ହେଲା ନାହିଁ । ଆଜି ମଧ୍ୟ ପରଦିନ ପ୍ରାତଃରୁ ଏ ସ୍ଥାନ ଛାଡ଼ିବାର ବିଚାର ଥିବାରୁ ଏବଂ ଶିକାର ପାଇବା ବିଷୟରେ କୌଣସି ସନ୍ଦେହ ନ ଥିବାରୁ ପୂର୍ବରୁ ନୈଶଭୋଜନପାଇଁ କୌଣସି ଆୟୋଜନ କରାଯାଇ ନ ଥିଲା । ବର୍ତ୍ତମାନ ଆଉ ଉପାୟ ନାହିଁ । ଜମିଦାରଙ୍କ ଉଆସ ଏଠାରୁ ବାର ଚୌଦ ମାଇଲ ଦୂର । ଏ ବର୍ଷାରେ ପୁଣି ସେ ସ୍ଥାନକୁ ଯାଇ ରାତିଭିତରେ ଖାଦ୍ୟଦ୍ରବ୍ୟ ଆଣିବା କି ସମ୍ଭବ ! ମଝିର ରାସ୍ତା ତ ବର୍ଷାଜଳରେ ଅଗମ୍ୟ ହୋଇ-ପଡ଼ିଥିବ । ନିକଟବର୍ତ୍ତୀ ସେପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ ସାହେବ ଓ ଜମିଦାର ବାବୁଙ୍କ ଆହାରୋପଯୋଗୀ କିଛି ହେଲେ ମିଳିବ । ମାଂସ ନ ହେଲେ ଯେ ଅନାହାର ! ଆଜ ପୁଣି ଏତେ ବିପଦ ସହ୍ୟ କରାଯାଇଛି । ସମସ୍ତଙ୍କର ଭାବନା ପଡ଼ିଗଲା । ଜମିଦାର ବାବୁଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେହେଁ ସାହେବଙ୍କର ମଧ୍ୟ ଭାବନା ପଡ଼ିଲା । କାରଣ ଶିକାର କରିବାକୁ ଯିବାବେଳେ ଜମିଦାର ବାବୁ ଲୋକ ପଠାଇ ମାଂସର ଆୟୋଜନ କରିବାକୁ ଯାଉଥିଲେ । ସାହେବ କିନ୍ତୁ ଶିକାର ନିଶ୍ଚୟ ମିଳିବ କହି ତାଙ୍କୁ ସେସବୁ ଆୟୋଜନରୁ ନିବୃତ୍ତ କରାଇଥିଲେ । କରାଯାଏ କ'ଣ ? ଜମିଦାର ବାବୁ ଅଯଥା ବେଟିଆ ଚାକରଗୁଡ଼ାଙ୍କ ଉପରେ କ୍ରୁଦ୍ଧ ହେଲେ ।

ଏସବୁ ଦେଖି ସାହେବ ଟିକିଏ ମୁରୁକିହସା ଦେଇ କହିଲେ, 'Well, let me devise some means of the dinner.' (ଆଚ୍ଛା, ରାତିଭୋଜନର ଗୋଟାଏ ବ୍ୟବସ୍ଥା କରାଯାଉ ।)

ଜମିଦାର ବାବୁ ସେହି ହାସ୍ୟର ଉତ୍ତର ହାସ୍ୟରେ ପ୍ରଦାନ କରି କହିଲେ, 'Well ?'

ସାହେବ କହିଲେ, Won't you mind spare your hart ? It will make a sumptuous feast and you can have a lot of them from the jungles. Don't you like the idea ?'' (ଆପଣଙ୍କର ହରିଣଟିକୁ ଦେବାକୁ କିଛି ଆପତ୍ତି ଅଛି କି ? ଏହା ବେଶ୍ ସୁନ୍ଦର ଆହାର ହେବ ଏବଂ ଜଙ୍ଗଲରୁ ଆପଣ ସେଥିରୁ ଅନେକ ପାଇପାରିବେ । କିପରି ? କଥାଟା ଭଲ ଲାଗୁ ନାହିଁ ?)

ଜମିଦାର ବାବୁ କ'ଣ ଭାବୁଥିଲେ । ସାହେବଙ୍କ ବାକ୍ୟ ଶେଷ ହେବାର ଦେଖି ହଠାତ୍ ଚମକପଡ଼ି ଉତ୍ତର କଲେ, **"Oh yes, it's a fine idea"** (ଠିକ୍ କହୁଛନ୍ତି) । ଜମିଦାର ବାବୁ ସମ୍ଭ୍ରାନ୍ତ ବନ୍ଧୁ ଓ ଅତିଥିଙ୍କ କଥାରେ ଅମତ ହୋଇପାରିଲେ ନାହିଁ; କିନ୍ତୁ ଜଲି କଥା ଶୁଣି ତାଙ୍କ ହୃଦୟଟା କାହିଁକି ଦପ୍‌କିନା ପଡ଼ିଗଲା । ଜଲି ପ୍ରତି ତାଙ୍କର ଟିକିଏ ବିଶେଷ ମମତା ଜନ୍ମିବାର କାରଣ ଅଛି । ଦିନେ ଅନ୍ୟ ଏକ ବିଦେଶୀୟ ବନ୍ଧୁଙ୍କ ସମକ୍ଷରେ ନିଜ ଶିକାରକୌଶଳର ତାରିଫ୍ ଦେଖାଇବାକୁ ଯାଇ ସେ ଜଲିକୁ ପାଇଥିଲେ । ସେତେବେଳେ ତା'ର ମା ତାକୁ ସ୍ତନ୍ୟପାନ କରାଉଥିଲା । ଜମିଦାର ବାବୁଙ୍କ ଗୁଳି ବସି ମାଆଟି ଢଳିପଡ଼ିଲା; କିନ୍ତୁ ନିର୍ବୋଧ ଶିଶୁ ନିର୍ଭୟରେ ଠିଆ ହୋଇ ରହିଲା । ଜମିଦାର ବାବୁଙ୍କ ଲୋକ ଯେତେବେଳେ ତାକୁ ଧରିବାକୁ ଗଲା, ମା ନିକଟରେ ଅଛି ବୋଲି ସେ ନିଃଶଙ୍କଭାବରେ ଦଣ୍ଡାୟମାନ ରହିଲା । ବିଦେଶୀୟ ବନ୍ଧୁଙ୍କଠାରୁ ଏହି ଶିକାରକୌଶଳରେ ଯଥେଷ୍ଟ ବାହାବା ପାଇଲେହେଁ ଏହି କ୍ଷୁଦ୍ର ଶିଶୁର ନିର୍ବୋଧ ଆଖି ଦି'ଓଟିକି ଚାହିଁ ତା'ର ମାତୃହନ୍ତା ଜମିଦାର ବାବୁଙ୍କର ତା' ପ୍ରତି ସେହି ଦିନୁ ଗୋଟାଏ କିପରି ବାତ୍ସଲ୍ୟ ଓ ଶ୍ରଦ୍ଧା ଜନ୍ମି ଯାଇଥିଲା ।

ଜଲିକୁ ହତ୍ୟା କରି ଦିନେ ତା'ର ମାଂସ ଭକ୍ଷଣ କରିବାକୁ ହେବ, ଏ କଥା ସେ କେବେ କଳ୍ପନା କରିପାରି ନ ଥିଲେ । ବର୍ତ୍ତମାନ ସେହି ପରାମର୍ଶ ଶୁଣି ଜମିଦାର ବାବୁଙ୍କ ଶିକାରୀ ଅନ୍ତର ମଧ୍ୟ କିପରି ଟିକିଏ ଦବିଗଲା । ତାହା ବୋଲି ଏତେ ବଡ଼ ସମ୍ଭ୍ରାନ୍ତ ଅତିଥିଙ୍କୁ କ'ଣ ନାହିଁ କରି ହିଆଯାଇପାରେ ? ଜମିଦାର ବାବୁଙ୍କର ସମ୍ମତି ପାଇ ସାହେବ ମହାନନ୍ଦରେ ନିଜେ କାଟିବାକୁ ଉଦ୍ୟତ ହେଲେ । ନିଜ ହାତରେ କିଛି ହେଲେ ଶିକାର ନ କଲେ ସେଦିନ ତାଙ୍କ ମନଟା ଭଲ ରହେ ନାହିଁ । ଯୁଦ୍ଧରେ ବହୁତ ଲୋକଙ୍କର ପ୍ରାଣ କ୍ଷୟ କରିଥିଲେ ବୋଲି ତାଙ୍କର ବଡ଼ ସୁଖ୍ୟାତି ଅଛି । ଶୁଣାଯାଏ, କୌଣସି ଦିନ ଶିକାର ନ ମିଳିଲେ ସେହି ଉଦ୍ଦେଶ୍ୟରେ ପାଳିତ କୁକ୍କୁଟ ପ୍ରଭୃତି ଗୋଟାଏ କିଛି ଜୀବ ବଧ କଲେ ତାଙ୍କ ମସ୍ତିଷ୍କ ଥଣ୍ଡା ରହେ । ଏହି ଅଭ୍ୟାସକୁ ତାରିଫ୍ କରି ତାଙ୍କ ସ୍ତ୍ରୀ କୁଆଡ଼େ ବହୁବାର କହିଥାନ୍ତି ଯେ,

ବିନେ କିଛି ଶିକାର କରିବାକୁ ନ ପାଇ ସାହେବ ନିଜର ବେକ କାଟିବାକୁ ଉଦ୍ୟତ ହେଉଥିଲେ ।

ଜଲି ଓ ଟୋରି ଏକ ଅପରର କୋଳରେ ମୁହଁ ଗୁଞ୍ଜିଦେଇ ମହା ଆରାମରେ ନିଦ୍ରା ଯାଇଛନ୍ତି । ସେ ସମୟରେ ଅପରିଚିତ କୌଣସି ଲୋକ ଟୋରି ନିକଟକୁ ଯିବାକୁ ସାହସ କରିବା ବଡ଼ ଦୁରୂହ । ବିଶେଷତଃ ଟୋରି ଓ ଜଲି ଏକ ସଙ୍ଗରେ ଥିବାବେଳେ ଜମିଦାର ବାବୁଙ୍କ ମାଧିଆ ଗୁଜର ବ୍ୟତୀତ ଅନ୍ୟ କାହାର ସେମାନଙ୍କ ପାଖ ପଶିବାକୁ ଉପାୟ ନାହିଁ । ଜମିଦାର ବାବୁଙ୍କ ଇଙ୍ଗିତରେ ଜଲିକୁ ଆଣିବା ଲାଗି ମାଧିଆକୁ ଯିବାକୁ ହେଲା । ତା'ର ପାଦଶବ୍ଦ ଶୁଣି ଟୋରି ଚେଇଁଉଠି ଭୁକିଲା । ମାଧିଆ ଚୂପ୍ କହିବାରୁ ସ୍ୱର ବାରିପାରି ସେ ସ୍ଥିର ହୋଇ ରହିଲା; କିନ୍ତୁ ମାଧିଆ ଯେତେବେଳେ ଜଲିକୁ ଉଠାଇ ତାକୁ ସଙ୍ଗରେ ଆଣିବାକୁ ଗଲା, ସେତେବେଳେ ଟୋରି ତା' ସହିତ ଆସିବା ଲାଗି ଅସ୍ଥିର ହୋଇଉଠିଲା । ଅଗତ୍ୟା ମାଧିଆକୁ ଜଲି ସଙ୍ଗେ ସଙ୍ଗେ ଟୋରିର ଶିକୁଳି ଧରି ଆଣିବାକୁ ହେଲା । ଟୋରିର ବୁଦ୍ଧି ଅସମ୍ଭବ ରୂପେ ପ୍ରଖର ହେଲେହେଁ ଏ ସମୟରେ ଜଲିକୁ ତା ନିକଟରୁ ଧରି-ନେବାର କାରଣ ସେ ପ୍ରଥମେ ବୁଝିପାରିଲା ନାହିଁ । ମାଧିଆ ନିଜେ ଟୋରିକୁ ଧରି ଜଲିକୁ ଖାନ୍‌ସମାମାନଙ୍କୁ ଦେଲା । ଟୋରିର ବଡ଼ ସନ୍ଦେହ ହେଲା । ତଥାପି ସେ ତୁନି ହୋଇ ଥାଏ । ସାହେବ ସ୍ୱୀୟ ଆତତାୟୀ ପ୍ରକୃତିର ତର୍ପଣ କରିବା ଲାଗି ଉଦ୍ୟତ ହେଲେ । ଛୁରୀର ଫଳକ ଆଲୋକପାତରେ ଚକ୍‌ଚକ୍ ହୋଇଉଠିଲା ।

ଖାନ୍‌ସମା ଦୁଇଜଣ ଜଲିର ଗୋଡ଼ ବାନ୍ଧି ତାକୁ ସ୍ଥିର କରି ଠିଆ କରାଇଲେ, ଯେପରି ଛୁରୀ ଚଳିବା ସମୟରେ ସେ କୌଣସି ରକମ ହଲଚଲ ହୋଇ ସାହେବଙ୍କର ଅସୁବିଧା ନ ଘଟାଏ । ଜଲିର ଭାବନା କ'ଣ ? ସେ ତା'ର ଜୀବନର ପ୍ରଭୁ ଜମିଦାର ବାବୁ ଏବଂ ସକଳ ଦୁଃଖ-ବିପଦରେ ଆବାଲ୍ୟ ପରମବନ୍ଧୁ ଟୋରିକୁ ଦେଖି ନିର୍ଭୀକଭାବରେ ଠିଆ ହୋଇଥାଏ ଏବଂ ପାଦ ଦିଓଟି ବନ୍ଧା ହେବାରୁ ଥରେ ତା'ର ଦୁଃଖସୁଖର ସାଥୀ ଟୋରି ଏବଂ ଥରେ ତା'ର ଆଶୈଶବ ବିଶ୍ୱାସୀ ପ୍ରଭୁଙ୍କ ପ୍ରତି ଦୃଷ୍ଟି ପକାଉଥାଏ । ଜମିଦାର ବାବୁ ବନ୍ଧୁଙ୍କ ପତ୍ନୀ ଓ କନ୍ୟାଙ୍କ ନିକଟରେ

ଖୁସିଗଲ୍ପରେ ନିମଗ୍ନ ଥାଆନ୍ତି । ତଥାପି ତାଙ୍କ ଭିତରୁ କିଏ କହିଦେଉ-ଥାଏ, ଜଲପ୍ରତି ଟିକିଏ ଦୃଷ୍ଟି ପକାଇବାକୁ । ସେ ଚାହିଁ-ନ-ଚାହିଁଲା ହୋଇ ହସଖୁସିରେ ନିମଗ୍ନ ଥାଆନ୍ତି । ତାକୁ ଚାହିଁଲେ ସେ ମନୁଷ୍ୟ ଭାଷାରେ ଯେପରି କିଛି ପ୍ରକାଶ କରିଦେବାକୁ ଯିବ ଏବଂ ସେଥିରେ ସେ ଦୋଷୀ ସାବ୍ୟସ୍ତ ହେବେ, ଆଉ ତାଙ୍କ ସୁନାମରେ ବାଧା ଘଟିବ । ସାହେବଙ୍କ ହାତରେ ଛୁରୀ ଦେଖି ଡୋରାର ସନ୍ଦେହ କ୍ରମେ ଦୃଢ଼ୀଭୂତ ହେବାକୁ ବସିଲାଣି । ସାହେବ ଛୁରୀ ପରିଷ୍କାର କରି ଯେତେବେଳେ ଆସନରୁ ଉଠିଲେ, ଜମିଦାର ବାବୁଙ୍କ ଦୃଷ୍ଟି ହଠାତ୍ କାହିଁକି ଜଲ ଉପରେ ପଡ଼ିଲା ଏବଂ ତାଙ୍କର ମନେ ହେଲା, ଜଲ ଅନେକ କ୍ଷଣ ହେଲା ତାଙ୍କୁ ଏହିପରି କାତର ଦୃଷ୍ଟିରେ ଚାହିଁ ଜୀବନ ଭିକ୍ଷା କରୁଛି । ଜମିଦାର ବାବୁ କ'ଣ ଗୋଟାଏ ବାହାନାରେ ଆସନ ଛାଡ଼ି ତମ୍ବୁମଧ୍ୟକୁ ଚାଲିଗଲେ । ଡୋରା କିନ୍ତୁ ଜଲର ମିନତି ଶୁଣିଲା । ଆବାଲ୍ୟ ଆଶ୍ରୟଦାତା ପ୍ରଭୁଙ୍କଠାରୁ ହତାଶ ଦୃଷ୍ଟି ଫେରାଇ ଜଲ ଯେତେବେଳେ ତା'ର ପ୍ରିୟ ସହଚର ଡୋରାକୁ ଚାହିଁଲା, ଡୋରା-ପ୍ରାଣରେ ତାହା ବାଜିଲା । ସାହେବଙ୍କ ହାତରେ ନୃଶଂସ ଛୁରିକା ଦେଖି ଡୋରାର ଆଉ ବୁଝିବାକୁ ବାକି ରହିଲା ନାହିଁ । ଏହି ସ୍ଥଳୀରେ ସେ କେତେ ଛେଳି, ହରିଣ କଟାଯାଇ-ଥିବାର ନିଜେ ଦେଖିଛି । ତା'ର ପ୍ରାଣ-ପ୍ରିୟ ଜଲର ଦଶା ତାହାହିଁ ହେବ, ଏଥିରେ ଆଉ ତା'ର ସନ୍ଦେହ ନାହିଁ ।

ସାହେବ ଯେତେବେଳେ ଛୁରୀ ଧରି ଓହ୍ଲାଇ ଆସିଲେ, ତତ୍‌କ୍ଷଣାତ୍ ଡୋରା ଗୋଟାଏ ଝିଙ୍କାରେ ମାଧିଆ ହାତରୁ ମୁକ୍ତ ପାଇ ସଙ୍ଗେ ସଙ୍ଗେ ଜଲକୁ ଧରିଥିବା ଜଣେ ଖାନ୍‌ସମାକୁ ଆଘାତ କଲା । ସାହେବ, ଚାକର, ଖାନ୍‌ସମା ପ୍ରଭୃତି ଇତସ୍ତତଃ ହୋଇ ଦ୍ରୁତଗତିରେ ତମ୍ବୁମଧ୍ୟରେ ପ୍ରବେଶ କଲେ । ଜମିଦାର ବାବୁ ତମ୍ବୁମଧ୍ୟରେ ଅନ୍ୟମନସ୍କ ଥିଲେ । ସାହେବଙ୍କର ଏ ଦୁର୍ଦ୍ଦଶା ଦେଖି ସଙ୍ଗେ ସଙ୍ଗେ ତାଙ୍କୁ କ୍ଷମା ମାଗିଲେ ଏବଂ ମାଧିଆ ଉପରେ କ୍ରୋଧରେ ଜଳିଉଠିଲେ । ତଥାପି ଅନ୍ତରର କି ଗୋଟାଏ ଅବ୍ୟକ୍ତ ବ୍ୟଥା ତାଙ୍କ କଥାରୁ ସୁସ୍ପଷ୍ଟ ପ୍ରକାଶ ପାଉଥିଲା ।

ମାଧିଆ ଅତି କଷ୍ଟରେ ନିଜେ ଡୋରାଦ୍ୱାରା ଆଘାତପ୍ରାପ୍ତ ହୋଇ ଗୋଟାଏ ଗଛରେ ନେଇ ତାକୁ ଉତ୍ତମରୂପେ ବାନ୍ଧିଦେଲା । ସାହେବ

ହସି ହସି ଛୁରୀ ହାତରେ ପୁନଶ୍ଚ ତମ୍ବୁ ମଧ୍ୟରୁ ବାହାରିଲେ । କୌତୁକ କରିବା ଛଳରେ ଆବଦ୍ଧ ଡୋରିକୁ ଛୁରୀ ଦେଖାଇ ଜଳ ଅଭିମୁଖରେ ଗଲେ । ଜମିଦାର ବାବୁ ଦେଖିଲେ, ଜଳ ପୂର୍ବପରି ସେହି କାତର ଦୃଷ୍ଟିରେ ତାଙ୍କପ୍ରତି ଚାହିଁ ସାହାଯ୍ୟ ଭିକ୍ଷା କରୁଛି । ସେ ହଠାତ୍ ଉଠିପଡ଼ି ସାହେବ ବନ୍ଧୁଙ୍କୁ କ'ଣ କହିବାକୁ ଯାଉଥିଲେ, "ଇସ୍, ମୁଁ କ'ଣ ପାଗଳ" କହି ପୁଣି ଆସନ ଗ୍ରହଣ କଲେ । ସେ ସ୍ଥାନରୁ ଉଠି ଦୂରକୁ ଯିବାକୁ ତାଙ୍କର ଇଚ୍ଛା ହେଉଥିଲେହେଁ ସାହେବ କିଛି ମନେ କରିପାରନ୍ତି, ଏହି ଆଶଙ୍କାରେ ସେ ଚେଷ୍ଟାରୁ କ୍ଷାନ୍ତ ହେଲେ । ସାହେବ ଜଳ ନିକଟକୁ ଆସିବାର ଦେଖି ଜମିଦାର ବାବୁ ରୁମାଲ କାଢ଼ି ମୁହଁ ଘୋଡ଼ାଇଲେ । ଡୋରିର ଆର୍ତ୍ତବ୍ୟାକୁଳ କ୍ରନ୍ଦନ ତାଙ୍କ କର୍ଣ୍ଣରେ ପ୍ରବେଶ କରୁଥାଏ । ତାହାରି ମଧ୍ୟରେ ଶୁଣିପାରିଲେ, ଗୋଟିଏ ରୁଦ୍ଧ କଣ୍ଠର ବିଳାପ । ସେ କେବଳ କର୍ଣ୍ଣରେ ନୁହେଁ, ମର୍ମସ୍ଥଳୀରେ ପ୍ରବେଶ କଲା । ସେ ସ୍ୱର ଜଳର । ରୁମାଲ କାଢ଼ି ଚାହିଁ ଦେଖିଲେ, ଶେଷ !

ଖାନା ଟେବୁଲରେ ବସି ବସି ଜଳର ମାଂସ ଭକ୍ଷଣ କଲାବେଳେ ଜମିଦାର ବାବୁଙ୍କ ଅନ୍ତରାତ୍ମା ନାହିଁ-ନାହିଁ କରି ଉଠିଲା । ସେ ପ୍ରାଣପଣେ ଚେଷ୍ଟା କରି ବନ୍ଧୁମାନଙ୍କ ସଙ୍ଗରେ ଯୋଗ ଦେଲେ । ବଡ଼ କଷ୍ଟରେ ଯତ୍ସାମାନ୍ୟ ଆହାର କଲେ । ଭିତରର କ ଗୋଟାଏ ଅବ୍ୟକ୍ତ ବ୍ୟଥାରେ ପ୍ରାଣ ଆକୁଳ ହୋଇଉଠିଲା । ରକ୍ଷା ଏତିକି, ଅତିଥିମାନଙ୍କ ମଧ୍ୟରୁ କେହି ତାହା ଲକ୍ଷ୍ୟ କରିପାରି ନ ଥିଲେ । ଶୋଇବାକୁ ଯିବା-ବେଳେ ମାଧିଆ ଆସି ଖବର ଦେଲା, ଡୋରିକୁ ମାଂସ ଆଦି ଯେତେ ଯାହା ଦିଆଗଲା, ସେ ତାହା ସ୍ପର୍ଶ କଲା ନାହିଁ ।

ଜମିଦାର ବାବୁ ଅନ୍ୟମନସ୍କ ହୋଇ ଶୟନକକ୍ଷକୁ ଗଲେ । ନିଦ୍ରା ଆସୁ ନ ଥାଏ, ବିଛଣାରେ ପଡ଼ି କେତେ କଅଣ ଭାବୁଥାନ୍ତି । ଏ ଜଙ୍ଗଲ ସେ ଜଙ୍ଗଲ ବୁଲୁଛନ୍ତି, ହଠାତ୍ ମେଘର ଆବରଣ ଓ ଚତୁର୍ଦ୍ଦିଗ ଅନ୍ଧକାରଚ୍ଛନ୍ନ—ପୁଣି ସେହି ମଧ୍ୟାହ୍ନ ସମୟ, ଗୁଳି ଖାଇ ମାଆଟି ତା'ର ଭୂତଳଶାୟୀ ହେଲା, ଆଉ ନିର୍ବୋଧ ଶିଶୁ ଅବାକ୍ ହୋଇ ଅନାଇ ରହିଲା, ଟିକିଏ ହଲଚଲ ନାହିଁ, ସ୍ୱେଚ୍ଛାରେ ଆତ୍ମସମର୍ପଣ କଲା । ପୁଣି ସେହି ଘନ ଅନ୍ଧକାର—ଦୁଇ ବନ୍ଧୁ ସ୍କନ୍ଧରେ ସଙ୍ଗିନ୍ ରଖି ତମ୍ବୁ ଅଭିମୁଖରେ— ଛୁରୀ ଧରି ସାହେବଙ୍କର ନୃଶଂସ ହାସ୍ୟ, ଆଉ ସେ ହରିଣ ଶିଶୁଟିର କରୁଣ

ଦୃଷ୍ଟିରେ ଜୀବନଭିକ୍ଷା ଏବଂ ମନୁଷ୍ୟ ଭାଷାରେ ବାକ୍ୟ ଉଚ୍ଚାରଣ—'ମୁଁ ପରା ମୋ ମା'କୁ ଗ୍ରାଡ଼ି ତୁମକୁ ଆଶ୍ରୟ କରି ଧରିଥିଲି ?' ଜମିଦାର ବାବୁ ଚମକିଉଠି ଭାବିଲେ, ଏ ସ୍ୱପ୍ନ। ପୁଣି ନିଦ ଆସିଲା, ପୁଣି ସେହି କାକୁତି-ଭରା ଚାହାଣି, ପୁଣି ସେହି ମର୍ମବିଦାରକ ବିଳାପ । ଥରକୁ ଥର ନିଦ ଭାଙ୍ଗିଯାଏ, କିନ୍ତୁ ସେହି ଏକ ସ୍ୱପ୍ନ ।

ପ୍ରଭାତରୁ ଉଠି ଫେରିଯିବାର ବନ୍ଦୋବସ୍ତ କରାଗଲା । ମଟରରେ ବନ୍ଧୁ ଓ ବନ୍ଧୁ ପରିବାରଙ୍କ ସହିତ ଜମିଦାର ବାବୁ ଆଗ ଚାଲିଗଲେ । ହସଖୁସିରେ ମନଟାକୁ ଭୁଲାଇବାର ଯେତେ ଚେଷ୍ଟା କଲେ ମଧ୍ୟ ଜମିଦାର ବାବୁଙ୍କ ଅନ୍ତରରେ ହରିଣ ଶିଶୁର ସେହି ରୁଦ୍ଧ କ୍ରନ୍ଦନର ବିରାମ ନାହିଁ । ବନ୍ଧୁ ପରିବାର ସେହି ଦିନ ବିଦାୟ ନେଇ ଚାଲିଗଲେ ।

ମାଧିଆ ଡୋରାକୁ ଟାଣି ଟାଣି ବହୁ କଷ୍ଟରେ ଧଇଁସଇଁ ହୋଇ ଆସି ପହଞ୍ଚିଲା ଏବଂ ବାବୁଙ୍କୁ କହିଲା, ଡୋରା ସେ ସ୍ଥଳରୁ ଆସିବାକୁ ଏକାବେଳକେ ଅମଙ୍ଗ ! ଜମିଦାର ବାବୁ ସେତେବେଳେ ଏକାକୀ ବସି ମନେ ମନେ କ'ଣ ଭାବୁଥିଲେ । ମାଧିଆ ଆଉ କିଛି ନ କହି ଚୁପ୍ ହୋଇ ଚାଲିଗଲା । ସେତେବେଳକୁ ଜମିଦାର ବାବୁଙ୍କର ପ୍ରବଳ ଆତ୍ମଗ୍ଲାନି ଉପସ୍ଥିତ । ବଡ଼ ସଂଯମରେ ସେ ନିଜକୁ ସ୍ଥିର କରି ରଖିଛନ୍ତି । ନ ହେଲେ ଲୋକମାନେ ତାଙ୍କୁ ପାଗଳ ବୋଲି ଭାବି ସାରନ୍ତେଣି । ଏହି ଜ୍ଞାନଶୂନ୍ୟ କୁକୁରଟାର ପାଦତଳେ ପଡ଼ି କ୍ଷମା ଭିକ୍ଷା କରିବାଲାଗି ତାଙ୍କ ପ୍ରାଣଭିତରୁ ଯେପରି କିଏ ବାଧ୍ୟ କରୁଛି । କାରଣ ସେ ନିଜକୁ ତା'ଠାରୁ ବହୁ ନିମ୍ନରେ ଦେଖୁଛନ୍ତି । 'କାହିଁ ମାଂସାଶୀ କୁକୁରଟାଠାରୁ କ'ଣ ମୋ ଅନ୍ତର ଏତେଦୂର ନୃଶଂସ ! ଛିଃ, ଛିଃ, ସଂସାରଟାରେ କ'ଣ କେବଳ ସବଳ ଦୁର୍ବଳକୁ ଅଧୀନ ରଖି ଆତ୍ମସାତ୍ କରି, ଉଦରସାତ୍ କରି ଜୀବନଧାରଣ କରିବାକୁ ଜାତ ହୋଇଛି ? ଜଣେ ବଞ୍ଚିବ ବୋଲି ଆଉ ଜଣକର ମୃତ୍ୟୁ ଏକାନ୍ତ ଆବଶ୍ୟକ ! ମନୁଷ୍ୟ ଯେ ବିଶ୍ୱଗ୍ରାସ କରିବାକୁ ବସିଛି, ଏହାର ଯୁକ୍ତି କ'ଣ ନା, ସେ ସବୁ ଜୀବଠାରୁ ବୁଦ୍ଧିମାନ୍ ଓ ବିବେକବାନ୍ !'' ସତ୍ୟ ସତ୍ୟ ଜମିଦାର ବାବୁଙ୍କର ଖୁଷଣ ବିରାଗ ଓ ବିକାର ଜାତ ହେଲା । ଯେଉଁ ଜିହ୍ୱା ଜଳର ମାଂସସ୍ୱାଦ ପରୀକ୍ଷା କରିଥିଲା, ତାହା କପରି ଅବଶ ହୋଇଆସିଲା । ଜଳର କଲିଜା ଯେଉଁ ଗଳାମଧ୍ୟରେ ଯାଇଥିଲା, ତାହା ସଙ୍କୁଚିତ ହୋଇ କପରି ରୁଦ୍ଧ ହୋଇଆସିଲା । ଜମିଦାର ବାବୁ ମନେ

କଲେ, ସେ ଗଳା ଯଦ ଶରବନପାଇଁ ରୁଦ୍ଧ ହୁଏ ଏବଂ ସେ ଜିହ୍ୱା ଯଦ ଅବଶ ହୋଇ ଛିନ୍ନ ହୋଇପଡ଼େ, ତେବେ ତାଙ୍କର ମର୍ମନ୍ତୁଦ ଯାତନାର ଟିକଏ ଅବା ଉପଶମ ହୋଇପାରନ୍ତା ।

ଏହ ସମୟରେ ପଛରୁ କଏ ଡାକଲା, "ଜଲ କାହିଁ ?" ଜମିଦାର ବାବୁ ଫେର ଚାହିଁ ଦେଖିଲେ, ତାଙ୍କର ସେହ ଚାରବର୍ଷର ଶିଶୁ କନ୍ୟାଟି । ସେ ଉତ୍ତର କିଛି ନ ପାଇ ତତ୍‌କ୍ଷଣାତ୍ ଉଠିଯାଇ କନ୍ୟାକୁ ନଜର ଉତ୍ତପ୍ତ ବକ୍ଷରେ ଚାପିଧର କହଲେ, "ଅଛି ମା, ଅଛି ।" ସେ କଥାରେ କର୍ଣ୍ଣପାତ ନ କର ମୁହଁ ଫୁଲାଇ, ଆଖି ଛଳଛଳ କର କହଲା, "ମିଛ କଥା; ମାଧିଆ କହଲା, ସେ ସାହେବ ତାକୁ ମାଲଚ, ମୁଁ ସେ ସାହେବକୁ ମାଲବ ।" କନ୍ୟାର ରାଗ ଓ ଅଭିମାନ ଦେଖି ଜମିଦାର ବାବୁଙ୍କ ଚକ୍ଷୁରୁ ଲୋତକ ବର୍ଷିବାକୁ ଲାଗିଲା । ସେ ତାହା କନ୍ୟା ନକଟରୁ ଲୁଚାଇବାକୁ ଯାଇ ଧାଈହାତରେ କନ୍ୟାକୁ ଦେଇ ଚାଲିଗଲେ ଏବଂ ହୃଦୟର ଆବେଗ ଅସହ୍ୟ ହେବାରୁ ବିଛଣାରେ ପଡ଼ି ଶିଶୁପର ଭେଁ-ଭେଁ କାନ୍ଦିବାକୁ ଲାଗିଲେ; କିନ୍ତୁ କନ୍ୟାର ସେହ ପ୍ରଶ୍ନ "ଜଲ କାହିଁ" ତାଙ୍କର ବାରମ୍ବାର ମନେପଡ଼ଲା । ସେ ନଜକୁ ସେହ ପ୍ରଶ୍ନ କର ସ୍ୱୀୟ ଅଙ୍ଗ-ପ୍ରତ୍ୟଙ୍ଗକୁ ଚାହିଁଲେ । ହରଣଶାବକର ପ୍ରତ୍ୟେକ ଖଣ୍ଡ ଭୁକ୍ତ ମାଂସର କ୍ରନ୍ଦନ ତାଙ୍କର ପ୍ରତ୍ୟେକ ଲୋମକୂପରୁ ଫୁଟି ବାହାରବାର ସେ ଶୁଣିଲେ । ତାଙ୍କର ପ୍ରତ୍ୟେକ ଶିରାରେ ଏ କ୍ରନ୍ଦନ ବିଜୁଳି ଗତରେ ଚମକବାକୁ ଲାଗିଲା । ଜମିଦାର ବାବୁ ରୁଗ୍‌ଣ ହୋଇପଡ଼ଲେ—ଦୁଇ ସପ୍ତାହ ଜ୍ୱର ଓ ଅନାହାର । ସମସ୍ତେ ଭାବଲେ, ଜମିଦାର ବାବୁ ଏ ଯାତ୍ରା ପାର ପାଇବେ ନାହିଁ । କିନ୍ତୁ ସେ ସୁସ୍ଥ ହେଲେ, ଅଥଚ ନୂଆ ଲୋକ ହୋଇ । ସାହେବଙ୍କ ଉପଯୋଗୀ ଅତିଥିଶାଳା ଦରଦ୍ରମାନଙ୍କ ପାଇଁ ପାନ୍ଥ-ନବାସରେ ପରଣତ ହେଲା । ଜମିଦାର ଉଆସରେ ଆମିଷ ପ୍ରବେଶ ନଷିଦ୍ଧ ହେଲା ଏବଂ ଜମିଦାର ମଧ୍ୟରେ କେହ ମୃଗ ଶିକାର କିମ୍ବା ବଧ କରପାରବେ ନାହିଁ ବୋଲ ହୁକୁମ ଜାର ହୋଇଗଲା ।

ଡୋରା କୌଣସିମତେ ଆହାର କଲା ନାହିଁ । ଦନମାନ ନରାହାରରେ ପଡ଼ରହଲା ଏବଂ ଜମିଦାର ବାବୁଙ୍କ ପ୍ରଥମ ଅସୁସ୍ଥତା ଦନ କୌଣସିମତେ ମୁକ୍ତ ପାଇ ଖସି ଚାଲିଗଲା । ମାଧିଆ ଖୋଜ ଖୋଜ ତାକୁ ସେହ ତମ୍ବୁ ପଡ଼ଥିବା ଜାଗାରେ ଜଲର ବଧଭୂମିକୁ ଅଘ୍ରାଣ କରୁଥିବାର

ଦେଖିଲା । ଏହିଠାରେ ସେ ତା'ର ପ୍ରିୟ ସଖାକୁ ହରାଇଛି—କୌଣସିମତେ ଯେବେ ସନ୍ଧାନ ପାଏ ! ସେଥିଲାଗି କରୁଣ ବିଳାପ କରି ସେ ତାକୁ ଖୋଜି ବୁଲୁଛି । ମାଧିଆ ତାକୁ ଧରି ଆଣିଲା । ଯେତେ ଯତ୍ନ କରାଗଲା, ସମସ୍ତ ବିଫଳ ହେଲା । ପୁଣି ଦିନେ କପଟ ସେ ଅଦୃଶ୍ୟ ହୋଇଗଲା । ଆଉ ଯେତେ ଯହିଁ ଖୋଜିଲେ ମିଳିଲା ନାହିଁ । କେହି କେହି କହନ୍ତି, ସେ ସେହି ତମ୍ବୁ ପଡ଼ିଥିବା ଜାଗାରେ ଯାଇଛି । କାଠୁରିଆମାନେ କହନ୍ତି, ନିବିଡ଼ ଜଙ୍ଗଲ-ମଧ୍ୟରେ କାଠ କାଟିଲାବେଳେ ସେମାନେ ବହୁବାର ରୁଦ୍ଧ ପଶୁକଣ୍ଠର ଗୋଟିଏ କରୁଣ ଆର୍ତ୍ତ ବିଳାପ ଶୁଣିପାରନ୍ତି । ସେ କିନ୍ତୁ ଜଳର ନା ଡୋରାର ?

———

ଅନ୍ଧାର ଭିତରେ ଏଣ୍ଡ ଡର କଥା ଶୁଣି ସେ ଚମକିପଡ଼ିଲା ପରି ହୋଇ ମୋ ପାଖକୁ ଘୁଞ୍ଚିଆସିଲା । "ହଁ, ଡର ମାଡ଼ୁଛି ।" ତାହାର ଟେୃଟିଆ ଟେୃଟିଆ ଆଖି ଦୁଇଟି ଡରରେ ନରମି ଯାଇଥାଏ ।

ତାହାକୁ ସାହସ ଦେବା ପାଇଁ ତାହା ଆଡ଼କୁ ହାତଟି ବଢ଼େଇ ଦେଲି । ଡରରୁ ନିଜକୁ ରକ୍ଷା କରିବା ପାଇଁ ସେ ହାତଟି ଧରି ଚାଲିଲା —ତଥାପି ଶଙ୍କି ଶଙ୍କି ହେଉଥାଏ । ଦମ୍ଭ ଦେବା ପାଇଁ କହିଲି, 'ତୋର ଘର ଏଇଠି କଟକରେ । ତେବେ ବି ତୋର ଡର !'

ଭୟ ଭୟ ଗଳାରେ କହିଲା, 'ବାବୁ, ଜାଣ ନାହିଁ ? ଏଇ ଯେଉଁ ପଠାଣ କବର ରହିଲା, ସେଠି କିଏ ଗୋଟାଏ ଅଛି—ଢେଲାମାରେ ।' ତାହାର ପିଠି ଆପୁଡ଼ାଇ କହିଲି, 'ନାହିଁ, ମୁଁ ଆସେ ଆଉ ଯାଏ, କେବେ କିଛି ଦେଖି ନାହିଁ ତ !'

ସେ ପ୍ରତିବାଦ କରି କହିଲା, 'ନାହିଁ ବାବୁ, ସାନ ପିଲାଙ୍କୁ ମାରେ । ଥରେ ମୁଁ ଆସୁଥିଲି—ମୋ ଗୋଡ଼ରେ ଗୋଟିଏ ଢେଲା ବାଜିଲା । ସେଥି ପାଇଁ ମୁଁ ଆଉ ଏକା ଆସେ ନାହିଁ । କିଏ ଆସୁଥିଲେ ତାହାର ସାଙ୍ଗରେ ଚାଲି ଚାଲି ମୁଁ ସେହି କବରଟା ଟପିଯାଏ ।'

ଦେଖିଲି ତାହାର ମନରୁ ଡରକୁ ବାହାର କରିହେବ ନାହିଁ । କୁସଂସ୍କାର ଲୋକର ରକ୍ତ ସାଙ୍ଗରେ ମିଶି ରହିଲା ପରି ଡର ତାହାର ମନରେ ଆସ୍ଥାନ ଜମେଇ ରହିଗଲାଣି । ପିଠି ଆପୁଡ଼ାଇକରି ପଚାରିଲି, 'ତୋର ନାଁ ?'

'ମୋ ନାଁ ଲଙ୍ଗା, ତମେ ଆମ ବାଆକୁ ଚିହ୍ନିଥିବ—ଯୋଗୀ ମହାରଣା ।'

ମୋର ମୁହଁରେ ଯେତିକ ଆଶ୍ଚର୍ଯ୍ୟ ହେବାର ଚିହ୍ନ ଦିଶୁଥିଲା, ତାହାର ମନରେ ମଧ୍ୟ ଠିକ୍ ସେତିକ ଉତ୍କଣ୍ଠା ଉଠୁଥିଲା । ସେ ପୁଣି ଆରମ୍ଭ କଲା 'ଆମ ବାଆ ଗ୍ରାମରେ ସରପ । ସେ କିଛି କାମ ଦାମ କରେ ନାହିଁ । ସବୁବେଳେ ସେଇଥିରେ ଲାଗିଥାଏ । ବଡ଼ ପହିଲମାନ ତାହାକୁ ଡକାଏ । ଆମ ବାଆକୁ କେହି ଗ୍ରାମରେ ପାରନ୍ତି ନାହିଁ । ସେ କପ୍ ଆଣିଛି ।'

ପଚାରିଲି, 'କିରେ, ବାଆ ତୋର ଧନକୁ କେତେ ମଜୁରି ପାଏ ?'

କାଲେ କଏ ଦେଖି ଦେଇଥିବ । ମୁଁ ବୁଝି ପାରୁଥାଏ ଯେ, ସେ ବାପାଙ୍କୁ ଏହି କଥା କହିଁ କହିବ ନାହିଁ ।

ତାହାର ଘର ପାଖ ହୋଇଗଲା । ସେ ହଠାତ୍ କହିଲା, 'ବାବୁ, ଆମର ଘର ଏଇ ଗଳି ଭିତରେ—ମୁଁ ଯାଉଛି' କହି ହରିଆରେ ! ଡାକ ମାରି ମାରି ଦଉଡ଼ି ଚାଲିଲା ।

ମୁଁ ଆସିଲି—ଏକା ଏକା । ରାସ୍ତା ପାଖରେ ଗାଈଟିଏ ଛିଡ଼ା ହୋଇ ଚରୁଥାଏ । ଠାଏ ଠାଏ ଘାସ ଅଛି । କଅଁଳ ଦୂବଘାସ କେତେଥର ଏମିତି ଗୋରୁର ପାଦୁଳ ଭିତରେ ନିଷ୍ପିଷ୍ଟ ହୋଇ ମିଳେଇ ଯାଇଛି, ତଥାପି ସେ ତ ମରି ନାହିଁ । ବାଟ କଡ଼ରେ ଥାଇ ସୁଦ୍ଧା ଏତେ ଲୋକର ଯିବା ଆସିବାର ଧାସ, ଗାଈ ଗୋରୁଙ୍କ ପାଟି ତାହାକୁ ପୋଛି ଦେଇ ପାରିନାହିଁ ।

ତାହାହେଲେ ମଣିଷ ଜାତି କାହିଁକି ଟଳିବ ? ଏହି ଅଭାବ ଭିତରେ ବଢ଼ିଲା ପିଲାଟି କାହିଁକି ହଟିଯିବ ? ସେ ବି ମନରେ ଆଶା ନେଇ ବାଟ ଚାଲିଛି । ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତଥାପି ମନ ଭିତରେ, କଥାରେ ଏହି ଝିଅ ସବୁ ଅଡୁଆ ଧରି ରହୁଥିଲା ।

ଘାସ ଜୀବନରେ ଯାହା ସତ, ମଣିଷ ଜୀବନରେ କ'ଣ ସେଇଆ ଅବିକଳ ସତ ହୋଇପାରେ ?

———

# କଳିଙ୍ଗ ଶିଳ୍ପୀ



ରାଜକିଶୋର ରାୟ

'ତେବେ ତମେ କହୁଛ ନେତ୍ରଯୁଗଳରେ ନୀଳପଦ୍ମର ଠାଣି ଦେବ ?'

'ଆଜ୍ଞା, ମଣିମା ।'

'କର୍ଣ୍ଣଭୂଷା ପାଇଁ କିଛି ଅଳଙ୍କାର ଦେଇପାର ?'

'ତା ବି ଦେବି ।'

'ଆଚ୍ଛା, ଅଙ୍ଗୁଷ୍ଠିର ନଖପ୍ରାନ୍ତରେ ଗୋରୋଚନାର ବିନ୍ଦୁ କମନୀୟ ହେବ କି ?'

'ଗୋରୋଚନାର ବିନ୍ଦୁ ଭାଲପଟରେ ଅଙ୍କିଲେ ସୁନ୍ଦର ହେବ; କିନ୍ତୁ ସ୍ୱର୍ଣ୍ଣ ପ୍ରତିମାର ଲଲାଟରେ ଗୋରୋଚନା ଟିକା ଅସ୍ପଷ୍ଟ ରହିଯିବ, ବରଂ ଲଲାଟରେ ସିନ୍ଦୂର ଗାରେ ଦେବି ।'

'ହୁଁ—ଭ୍ରୂଯୁଗର ଭଙ୍ଗୀ ଯେପରି ଖ୍ୟତବିହ୍ୱଳ ନ ହୁଏ, ତା ପାଇଁ ଦୃଷ୍ଟି ଦେବ ।'

'ଦେବି, ମଣିମା—'

'ଆଚ୍ଛା, ନାଭିବିନ୍ଦୁର କେତେ ତଳକୁ ଝୀନବାସର ବେହରଣ ଦେବ ?'

'ନାଭିବିନ୍ଦୁ ଓ କଟୀବନ୍ଧ ମଧ୍ୟରେ ଯେତିକି ସ୍ଥାନ ମୁଁ ରେଖାଙ୍କିତ କରିବି, ତାର ଏକତୃତୀୟାଂଶ ପରିମିତ ସ୍ଥାନ ଊର୍ଦ୍ଧ୍ୱ'କୁ ରଖି ମୁଁ ବେହରଣ ବସାଇବି । ଆପଣ ସେ ବିଷୟରେ ନିଶ୍ଚିନ୍ତ ଥାନ୍ତୁ ।'

'ଦେଖ ମହାରଣା, ମୋର ଚନ୍ଦ୍ରାଧାର ଆଉ ତୁମ ଚନ୍ଦ୍ରାଧାର ସମାନ ହେବ ତ ?'

'ମଣିମା, ଶିଳ୍ପୀକୁ ତା' ବାଟରେ ଯିବାପାଇଁ ଛାଡ଼ି ଦିଅନ୍ତୁ, ଦେଖିବେ ଫଳ କଣ ହେଉଛି ।'

'କହ, ଅନ୍ୟ କେଉଁ ବିବରଣର ପ୍ରୟୋଜନ ଅଛି ?'

'ମୂର୍ତ୍ତିଟି ନିର୍ଭୁଲ ହେବା ପାଇଁ ଏ ଅଧମ ଶିଳ୍ପୀ ମଣିମାଙ୍କର ଚରଣ ତଳେ ଶରଣ ଭିକ୍ଷା କରେ । କହନ୍ତୁ, ବିନ୍ଧ୍ୟାକୁ ମୃତା ବା ଜୀବିତା ଭାବରେ ରୂପ ଦେବି ? ଅର୍ଥାତ୍ ପ୍ରତିମାକୁ ଦେଖିଲେ ହିଁ ମନେ ହେବ ମୂର୍ତ୍ତି ଜୀବନ୍ୟାସରେ ଅଛି,—ଜଡ଼ ନୁହେଁ ।'

'ମହାରଣା, ତାହା ତୁମେ କରିପାର ?'

'ଦେବ, କଳଙ୍ଗର କାରିଗର ପାଖେ ଏ ଯେ ବଡ଼ ତୁଚ୍ଛ ପରିପାଟୀ ! ପୁଣି ଏ ତ ଆମ ବାପ ଅଜାଙ୍କର ବ୍ୟବସାୟ ।'

'ଶ୍ରୀଧର ! ମୁଁ ତାହା ବିଶ୍ୱାସ କରେ । କହିପାର, ବିନ୍ଧ୍ୟାର ତନୁକାନ୍ତିକୁ କି ରଙ୍ଗରେ ତୂଳି ଦେବ ?'

'ସ୍ୱର୍ଣ୍ଣ ଆଭା ହିଁ ତ ହରିଦ୍ରା ଗୌର ।'

'ନା-ମହାରଣା, ସେ ଯେ ଶ୍ୟାମାଙ୍ଗୀ ଥିଲା ।'

'ଓହୋ ! ତା ହେଲେ ସ୍ୱର୍ଣ୍ଣପିଣ୍ଡ ପରିବର୍ତ୍ତେ କୃଷ୍ଣ ଶିଳାହିଁ ଏ ସ୍ଥାନରେ ବେଶୀ ପ୍ରୟୋଜନ, ମହାରାଜ !'

'କୃଷ୍ଣଶିଳା ? ନା, ଶ୍ରୀଧର ସାମାନ୍ୟ ଶିଳାଖଣ୍ଡ ଉପରେ ବିନ୍ଧ୍ୟାର ବନ୍ଧୁରତ୍ୱ ଆଣିବ ସିନା, ପ୍ରାଣମୟ ତ କରିପାରିବ ନାହିଁ ।'

'ମଣିମା, ଏଇକ୍ଷଣି ପେ କହିଲେ ସେ ଥିଲେ ଶ୍ୟାମାଙ୍ଗୀ ବୋଲି— କିନ୍ତୁ ସ୍ୱର୍ଣ୍ଣ ପିଣ୍ଡରେ ଘନବର୍ଣ୍ଣ ଫୁଟାଇବା ଅସାଧ ନ ହେଲେ ବି ସମୟ-ସାପେକ୍ଷ ।'

'ଦେଖ, ସମୟ ବିଷୟ ଭାବ ନାହିଁ । ଅନନ୍ତକାଳ ବିତିଗଲେ ବି ଦୁଃଖର କାରଣ କିଛି ନାହିଁ ।'

'କିନ୍ତୁ, ମହାରାଜ—'

'କଣ କହ ଶ୍ରୀଧର । '

'ଆପଣଙ୍କୁ କଷ୍ଟ ହୋଇପାରେ, ଯଦି ଏତେ ସମୟ...'

'ଓଃ, ହବିଷାନ୍ନ କଥା କହୁଛ ? ସେ ତ ବିଧି—'

'ହଁ, ସେ ବିଧି । ଅର୍ଥାତ୍ ଆପଣ ଉଦ୍ୟାନ ସମୀପ ତୁଳସୀ ବୃକ୍ଷ ଚଉତରା ଉପରେ ଏକ ବଂଶଦଣ୍ଡ ପ୍ରୋଥିତ କରାଇ ପ୍ରତି ରାତ୍ର ଅର୍ଦ୍ଧ-ଯାମରେ ଗୋଟିଏ ତାମ୍ର ପେଟିକା ଭିତରେ ଦୀପାଳୀଟିଏ ତଥି ଉପରେ ଜଳାଇ ନମସ୍କାର ନ କରିବା ପର୍ଯ୍ୟନ୍ତ ଜଳ ସ୍ପର୍ଶ କରିପାରିବେ ନାହିଁ ।

ଏ ଶାସନ ଶିଳ୍ପଗ୍ରନ୍ଥରେ ଲିପିବଦ୍ଧ ରହିଅଛି । ମୁଁ ସେଇ ଶାସନର ଶିଷ୍ୟ ଓ ସେବକ ମାତ୍ର।'

'ତଥାସ୍ତୁ ।'

× × × ×

ଚନ୍ଦ୍ରସରୋବରର ସ୍ୱଚ୍ଛ ନୀର ଆସ୍ତରଣ ଉପରେ ଉଛୁଳି ପଡୁଛି ଅଷ୍ଟମୀର ସୂର୍ଯ୍ୟ । ବିନ୍ଦୁ ବିନ୍ଦୁ ହୋଇ ସୌରକଣା ଜଳ ପ୍ରବାହରେ ହିରଙ୍ଗ ସୃଷ୍ଟି କରୁଛି । ଶ୍ରୀଧର ମହାରଣା ସ୍ନାନ ସାରି ତୁଳସୀ ବେଦୀ ପ୍ରଦକ୍ଷିଣ କରି ଓଁକାର ତୋଳି ନମସ୍କାର କଲେ — 'ଜବାକୁସୁମ ସଂକାଶ କାଶ୍ୟପେୟଂ ମହାଦ୍ୟୁତିଂ—'

ଅଦୂରେ ଜଣେ ଗୈରିକ ବସନା ଯୋଗିନୀ ଆଚମନ କରୁ କରୁ ସ୍ତୋତ୍ରର ମନ୍ତ୍ରୋଚ୍ଚାରଣ ଶୁଣିସାରି ଟିକିଏ ଅନ୍ତରାଳକୁ ଯାଇ ପଚାରିଲେ — 'ଆପଣ କାହା ସ୍ତୋତ୍ର ଧ୍ୟାନ କରୁଛନ୍ତି ?'

'କାହିଁକି ମା, ଏ ଯେ ସୂର୍ଯ୍ୟ ସ୍ତୋତ୍ର !'

'ସୂର୍ଯ୍ୟ ସ୍ତୋତ୍ର ? ଶୁଣିଛି, କଳଙ୍ଗ ଶିଳ୍ପ ମାତ୍ର ଭାରତରେ ପ୍ରତିଷ୍ଠା ପାଇଛି । କୋଣାର୍କ ପରା ସୂର୍ଯ୍ୟ ଦେବଙ୍କର ମନ୍ଦିର ?'

'ହଁ ମା, ପଚାରି ପାରେ, କି ଅଭିପ୍ରାୟରେ ଆପଣ ତୀର୍ଥାଟନ କରୁଛନ୍ତି ? ଦେଖିଲେ ଜଣାଯାଏ, ଆପଣ ଜଣେ ବିଦୂଷୀ ।'

'ତୀର୍ଥାଟନର ଅଭିପ୍ରାୟ ? କଳଙ୍ଗର ପ୍ରତି ଶିଳାଖଣ୍ଡ କି ମୁକ୍ତବାଣୀ ଜଗତକୁ ଶୁଣାଏ, ସେଇ କଥା ଶୁଣିବା ପାଇଁ ମୁଁ କଳଙ୍ଗର ଦ୍ୱାରରେ ଭିକ୍ଷାର୍ଥିନୀ ।'

ଶ୍ରୀଧର ମହାରଣାଙ୍କ ରକ୍ତୋଜ୍ଜ୍ୱଳ ମୁଖ ଆହୁରି ଦୀପ୍ତିମୟ ଦେଖାଗଲା । ସେ ପୁଣି କୌତୂହଳୀ ହୋଇ ଯୋଗିନୀ ପ୍ରତି ଉନ୍ମୁଖ ହୋଇ ରହିଲେ ।

'ମା, ଏଠାରେ ବିଶ୍ରାମ କରିବାର ସମସ୍ତ ସୁବିଧା ପାଉଛନ୍ତି, ନା ମୁଁ କିଛି ସାହାଯ୍ୟ କରିପାରେ ?'

'ଭଦ୍ର, କହିଛି ପରା, କଳଙ୍ଗର ପ୍ରତି ବୃକ୍ଷ, ପ୍ରତି ଲତା ଅନ୍ତରାଳରେ ବିମୋହନ ବିଶ୍ରାମ ସ୍ଥାନ ଅଛି, ମୁଁ ପ୍ରକୃତିର ପୂଜାରିଣୀ,

ତେଣୁ ଖଣ୍ଡଗିରିର ନିର୍ଜନ ଗୁମ୍ଫାରେ ମୁଁ କିଛିଦିନ ପାଇଁ ଅବସ୍ଥାନ କରୁଛି ।'

ଗୋଟି ଗୋଟି ହୋଇ ସ୍ନାନ ଶେଷ କରି ଲୋକେ ବାହାରି ଆସୁଥାନ୍ତି । ଯୋଗିନୀ ମଧ୍ୟ କମଣ୍ଡଳୁଟି ଧରି ବାଟ ଛାଡ଼ି ଛିଡ଼ା ହେଲେ । 'ମା, ଗୁହା ନିକଟରେ ପହଞ୍ଚାଇ ଦେଇପାରେ, ଯଦି ଅନୁମତି ଦିଅନ୍ତି ।' ଶ୍ରୀଧରଙ୍କ ସ୍ୱର ମିନତିପୂର୍ଣ୍ଣ ।

'ଆସ ତେବେ' କହି ଯୋଗିନୀ ଜନତା ମଧ୍ୟରେ ଲୀନ ହୋଇଗଲେ ।

କେଦାରଗୌରୀ ଦେବାଳୟ ନିକଟରେ ଶ୍ରୀଧର ମହାରଣାଙ୍କର କୁଟୀର । ବେଳ ପ୍ରାୟ ଆଖିର ହୋଇଛି । ଗୋଧୂଳିର କ୍ଷୀଣ ଆଲୋକରେ ଶ୍ରୀଧର ଗୋଟିଏ ଶାର୍ଦ୍ଦୁଳର କେଶରେ ଶେଷ ରୂପ ଦେଉଛନ୍ତି ନିହାଣ ମୁଗୁର ଧରି—ଅସ୍ପଷ୍ଟ ଆଲୋକରେ କାହାର ଛବି ଦେଖି ସେ ଚମକି ପଡ଼ିଲେ, ଆଉ ସଙ୍ଗେ ସଙ୍ଗେ ଶୁଣି ପାରିଲେ କିଏ ଯେପରି କହୁଛି— 'ତେବେ ମୋର ଅନୁମାନ ସତ୍ୟ ।' 'କିଏ' କହି ଶ୍ରୀଧର ଛବି ପ୍ରତି ଚାହିଁ ରହିଲେ ।

ସେହି ଯୋଗିନୀ । ସେ ଧୀରେ ଧୀରେ ମୂର୍ତ୍ତି ସମ୍ମୁଖରେ ବସି ପଡ଼ିଲେ ଓ ହଠାତ୍ କଥା ଆରମ୍ଭ କରି ପଚାରିଲେ—'ତେବେ ମୋର ଅନୁମାନ ସତ୍ୟ, ଆପଣ ଜଣେ ଶିଳ୍ପୀ, ଏଇ ଶାର୍ଦ୍ଦୁଳ ମୂର୍ତ୍ତି ତାର ସାକ୍ଷୀ ।'

ଶ୍ରୀଧର ଟିକିଏ ସଲଜ୍ଜଭାବ ଦେଖାଇ କହିଲେ—'ମା, ଶିଳ୍ପ ସୂକ୍ଷ୍ମକଳା, ପ୍ରତିଦିନ ଟିକିଏ ଅଭ୍ୟାସ ନ କଲେ, ଚକ୍ଷୁ ଓ ହସ୍ତର ଶୈଳୀ ମୂର୍ତ୍ତି ଉପରେ ଠିକ୍ ରୂପ ଧରେ ନାହିଁ ।'

'ତାହାହେଲେ, ଭଦ୍ର, ମୁଁ ବୁଝୁଛି, ଭୁବନେଶ୍ୱର ଓ ଖଣ୍ଡଗିରିର ଅଜସ୍ର ଶିଳା ଦେହରେ ଏ ହାତର ନୈପୁଣ୍ୟ—ସଙ୍କେତ ଅଛି, ନା ?'

ଶ୍ରୀଧର ସସମ୍ଭ୍ରମେ ସ୍ୱୀକାରୋକ୍ତି ପ୍ରକାଶ କଲେ ।

'ବେଶ୍, ମୁଁ ଯାହା ଖୋଜୁଥିଲି ତା ପାଇଛି, ବୋଧହୁଏ ।'

'ମା, ଅନୁମତି ଦିଅନ୍ତୁ, କି ଭଳି କାର୍ଯ୍ୟରେ ମୁଁ ଆପଣଙ୍କର ସହାୟତା କରିପାରିବି ?' ଶ୍ରୀଧର ଆସନ୍ନ ଉତ୍ତର ପ୍ରତୀକ୍ଷାରେ ବସି ରହିଲେ ।

'ଦେଖ ଭଦ୍ର, ଯୋଗିନୀ ପାଖରେ ମୂର୍ତ୍ତିପୂଜାର ମୂଲ୍ୟ ନାହିଁ । ତଥାପି ମର୍ମେ ମର୍ମେ ଜୀବନର ଯେଉଁ ଶେଷ ଅଭିନୟଟିକୁ ବଡ଼ ଯତ୍ନରେ ହୃଦୟରେ ଧରି ଗୁହାରିଣୀ ହୋଇଛି, ସେ ଛବିକୁ, ସେ ଧାରଣାକୁ ବା ସେ ଭାବକୁ ରୂପ ଦେଇପାରିବ କଳିଙ୍ଗ ଶିଳ୍ପୀ ?'

'ମା, ମୂର୍ତ୍ତି ଦେଖି ମୂର୍ତ୍ତି ଗଠନ ଶିଳ୍ପକଳାର ନିମ୍ନସ୍ତରର କଥା— କିନ୍ତୁ କଳିଙ୍ଗରାଜଙ୍କର ଆଶୀର୍ବାଦରୁ ମୋ ପକ୍ଷରେ ଛବିର ଭାବହିଁ ଯଥେଷ୍ଟ, ପ୍ରକାଶ କରନ୍ତୁ ।'

ଯୋଗିନୀ ଟିକିଏ ଇତସ୍ତତଃ ହୋଇ କହିଲେ—'ଏ ସ୍ଥାନ ନିର୍ଜନ ତ ?'

'କେବଳ ସାକ୍ଷୀ ବିଶ୍ୱବିଶ୍ରୁତ କେଦାର ଓ ପ୍ରେମଯୋଗିନୀ ଗୌରୀ ।'

ତପସ୍ୱିନୀର ସର୍ବାଙ୍ଗରେ ଶିହରଣ ଯେପରି ଖେଳିଗଲା ।

'ଆଚ୍ଛା ଶୁଣ—'

'ତମାଳ ଶାଖାରୁ ସହସା ଶୁକପକ୍ଷୀଟିଏ ଗୋଟିଏ ରମଣୀର ଅଙ୍ଗ-ଦେଶକୁ ଉଡ଼ି ଆସିଲା । ରମଣୀର କର୍ଣ୍ଣଭୂଷା ପଦ୍ମକୋରକକୁ ସେ ଚଞ୍ଚୁଦ୍ୱାରା କ୍ଷତ କଲା । ସେ ଚିତ୍କାର କରି ଅତି ନିକଟରେ ଏ ମଧୁର ଅଭିନୟ ଦେଖୁଥିବା ସୁଠାମ ଯୁବାକୁ ଏ ବିପଦରୁ ରକ୍ଷା କରିବା ପାଇଁ ଅନୁରୋଧ କଲା । ସୁଶ୍ରୀ ପୁରୁଷଟି ଶୁକ ପକ୍ଷୀକୁ ରମଣୀର କବଳରୁ ଛିନ୍ନ କରି ନେଇଯିବା ଅଭିପ୍ରାୟରେ ଆକର୍ଷଣ କରନ୍ତେ ତାହା ବିହ୍ୱଳ ହୋଇ ଯୁବକର ପ୍ରଶସ୍ତ ବକ୍ଷ ଉପରେ ଚଞ୍ଚୁ ଓ ନଖଦ୍ୱାରା ଏପରି ଆଘାତ କଲା, ଯାହା ଫଳରେ—

'ମା, ଚୁପ୍ ହୋଇଗଲେ ଯେ !'

ତପସ୍ୱିନୀଙ୍କର ଅଧର ଥରିଉଠିଲା । ସେ ଆତ୍ମସମ୍ବରଣ କରି ଆରମ୍ଭ କଲେ—'ଫଳରେ ଏକ ରକ୍ତସ୍ରାବ ଦେଖାଗଲା । ରମଣୀଟି ଏ ଆକସ୍ମିକ ବିପତ୍ତି ଦେଖି ନିଜ ଅଧର ବସାଇ କ୍ଷତସ୍ଥଳରୁ ରକ୍ତଧାର ବନ୍ଦ ହେବା ପର୍ଯ୍ୟନ୍ତ ଉଷ୍ଣରକ୍ତ ଟାଣି ଆଣୁଥାଏ । ସେହି ଭଙ୍ଗୀ, ସେହି ହୃଦୟର ହୃଦୟ ମିଶା, ଯୁବତୀର ରକ୍ତାଧର, ଯୁବକର ବିସ୍ମୟ ଭାବା-ବେଶ, ପକ୍ଷୀର କୋରକ ଦଂଶନ ଇତ୍ୟାଦି ସବୁ ଯେପରି ଏକ ନିପୁଣ ଶିଳ୍ପୀତୁଳିକାରେ ଜୀବନ୍ତ ହେବ । କରିପାରିବ ଶିଳ୍ପୀ ?'

ଶୁଣୁଥିଲେ ଶ୍ରୀଧର, ଏ ପ୍ରଗଳ୍ଭା ଯୋଗିନୀର ଚିତ୍ର ପରିକଳ୍ପନା ବଡ଼ ମୁଗ୍ଧ ଓ ତନ୍ମୟ ଭାବରେ । ଏ ଅସାଧାରଣ ଭାବ, ଯାହା କି ଏକା କବି ସୂଚନାର ମୋହନ ସଙ୍କେତକୋଠିରେ ସମ୍ଭବ, ତା ଏ ପ୍ରବଜ୍ୟାର ରୂଢ଼ କଳ୍ପନା କେଉଁଠାରୁ ପାଇଲା ! ବ୍ୟସ୍ତ ଭାବ ଛାଡ଼ି ଶ୍ରୀଧର ସ୍ୱୀକାର କଲେ—'ମା, ଆପଣଙ୍କର ସନ୍ତାନ ଏ ଚିତ୍ର ପରିବେଷଣ କରିପାରିବ ।' ଯୋଗିନୀର ଆନନ୍ଦ ଦୁଇଟି ଚକ୍ଷୁରେ ଘନ ହୋଇଉଠିଲା । ସେ ଧୀରେ ଧୀରେ ଆସନ ଛାଡ଼ି, ଆମ୍ରବାଟିକା ତଳ ଘନାନ୍ଧକାରରେ ମିଳାଇ ଗଲେ ·—'

× × × ×

ଚନ୍ଦ୍ରାର ପ୍ରତିମୂର୍ତ୍ତିରେ ଶୁଭ ଦିଅଁହେବାର ଆଜି ଦ୍ୱାଦଶ ଦିନ । ରାଜା ବସୁଭୂମା ଉତ୍ଫୁଲ୍ଲ ପ୍ରାଣରେ ଆଜି ପୂର୍ଣ୍ଣାଙ୍ଗ ପ୍ରତିମାର ଶୋଭା ଦେଖିବେ ବୋଲି କକ୍ଷ ମଧ୍ୟରେ ପଦଚାରଣା କରୁଛନ୍ତି । ଶ୍ରୀଧର ମହାରଣା କକ୍ଷର ଦ୍ୱାର ଉନ୍ମୁକ୍ତ କରି ଚନ୍ଦ୍ରାର ଶିଳ୍ପୀ ପ୍ରତିମା ରାଜାଙ୍କୁ ହାତ ବଢ଼ାଇ ଦେଖାଇ ଦିଅନ୍ତେ ରାଜା ଉଚ୍ଚସ୍ୱରରେ—'ଏ ଯେ ନିଜେ ଚନ୍ଦ୍ରା' କହି ମୂର୍ତ୍ତି ପାଖକୁ ଝୁଙ୍କି ପଡ଼ିଲେ । ଶ୍ରୀଧର ଶାନ୍ତ ଭାବରେ କହିଲେ—'ମହିମା, ଆପଣଙ୍କର ଭ୍ରମହିଁ ମୋର ଯଥାଯୋଗ୍ୟ ପୁରସ୍କାର । ଏ ଚନ୍ଦ୍ରାର ପ୍ରତିମୂର୍ତ୍ତି କଳିଙ୍ଗଶିଳ୍ପୀ ଶ୍ରୀଧର ମହାରଣାର ଦୁଇ କର ଦୁଇଟିରେ ମୂର୍ତ୍ତିମନ୍ତ ହୋଇଛି ।'

'ଶ୍ରୀଧର, ଏ ପ୍ରତିମା ନୁହେଁ—ଏ ଜୀବନ୍ତ ଚନ୍ଦ୍ରା । କର୍ଣ୍ଣଭୂଷାରେ ଯେଉଁ ପଦ୍ମକୋରକ ଝୁଲିଛି, ତାହା ମେହି ଦୁଷ୍ଟ 'ଚମ୍ପାଷ୍ଟ' ଦ୍ୱାରା ଛିନ୍ନଭିନ୍ନ ହୋଇଥିଲା । ମୋର ଠିକ୍ ସ୍ମରଣ ଅଛି । କିନ୍ତୁ, ହେ କଳିଙ୍ଗ ଶିଳ୍ପୀ ! ଅକ୍ଷୁଣ୍ଣ ଜୀବନ୍ତ ପ୍ରତିମାରେ ଚନ୍ଦ୍ରଠାରେ କଳଙ୍କ ନ୍ୟାପୂରେ ଏ ଭୁଲ କଲ କାହିଁକି ? ଚନ୍ଦ୍ରା ତାମ୍ବୁଳ ସେବନ କରେ ନାହିଁ, ଅନ୍ତତଃ ମୁଁ କେବେ ଦେଖି ନାହିଁ । ତାର ଅଧର ଯେ ରକ୍ତବର୍ଣ୍ଣ ଦେଖୁଛି ।'

ଶ୍ରୀଧରଙ୍କର ବିସ୍ମୟାଭିଭୂତ ଅପଲକ ନେତ୍ର ଦେଖିଲେ ଜଣାଯିବ ଯେ, ସେ କେଉଁ ଅଜ୍ଞାତ-ସ୍ମୃତିକୁ ଜୋର୍‌କରି ଟାଣି ଆଣୁଛନ୍ତି । 'କଳିଙ୍ଗ ଶିଳ୍ପୀର ଭୁଲ' ଏତିକି ଶୁଣି ସେ ପାଗଳ ପରି କହିବସିଲେ—'ମହିମା ଶରଣ ପ୍ରାର୍ଥନା କରେ—ଏ ଭୁଲକୁ ମୁଁ ଭୁଲ ବୋଲି ସ୍ୱୀକାର କରି

ପାରିବ ନାହିଁ; ବନ୍ଧ୍ୟାର ପ୍ରତିମାଗଠନ ଯେଉଁ ଦିନ ଶେଷ କଲି, ସେଦିନ ଘଟଣାଚକ୍ରରେ ଅନ୍ୟ ଏକ ଗ୍ରାହକଙ୍କଠାରୁ ଏକ ଶିଳ୍ପ-ଯୋଜନା ଭାବର ନମୁନା ପାଇଲି । ସେ ଯାହା ଚିତ୍ରରେ ଭାବ ଦେଲେ, ତାହା ମତେ ଅସାମାନ୍ୟ ବୋଧ ହେଲା । ତାଙ୍କର ଚିତ୍ର ପରିକଳ୍ପନା ମୋର ହୃଦୟରେ ଘନୀଭୂତ ହୋଇ ରୂପକାର ହେବା ସମୟରେ ମୁଁ ବନ୍ଧ୍ୟା ପ୍ରତିମାର ଅଧରରେ ଶେଷ ତୂଳି ଦେଇଛି । ଜାଣେନା, କାହିଁକି ତୂଳି ମୋର ଏକ ଧାର ରକ୍ତ ଏଭଳି ସୁଷମାଯୁକ୍ତ ଅଧରରେ ବୋଳିଦେଲା । ଅପରାଧ କ୍ଷମା କରିବେ ।'

ଏକ ନିଃଶ୍ୱାସରେ ଏ ସମସ୍ତ କଥା କହି ଶ୍ରୀଧର କିଛି ଗ୍ରନ୍ଥି ଖୋଲିଗଲା ବେଳେ ଶୁଣିଲେ, ରାଜା ପାଗଳଙ୍କ ପରି କହୁଛନ୍ତି—

'ରକ୍ତଧାର...

'ବନ୍ଧ୍ୟା ଅଧରରେ...

'ପୁଣି ଶିଳ୍ପୀ ଦେଇଛି କର୍ଣ୍ଣଭୂଷା ପଦ୍ମ କୋରକ !!'

× × ×

ପ୍ରଳାପ, କେବଳ ପ୍ରଳାପ !

'ଶୁଣ ଶ୍ରୀଧର, ଏଇ ବସନ୍ତ ସମୟ । ପ୍ରାସାଦ କକ୍ଷରେ ଏକାକୀ ବସି ମୁଁ ବସନ୍ତୋତ୍ସବର ଫଲ୍ଗୁଭୋଗଶିରୀ ଉପଭୋଗ କରୁଥିଲି । ଏଇ ସମୟରେ ଦୁର୍ଗରକ୍ଷକ ଜଣାଇଲା, ଜଣେ ନାରୀ ମୋର ଦର୍ଶନପ୍ରାର୍ଥିନୀ । ସାମାନ୍ୟା ନାରୀଜଣେ ଦ୍ୱାର ଦେଶରେ ମୋର ଅପେକ୍ଷା କରୁଛି, ଏ ସମ୍ବାଦରେ ମୁଁ ବିଚଳିତ ହେଲିନି । ଜୀବନରେ ନାରୀ ପ୍ରତି ଅନୁରକ୍ତି ମୋର ବଡ଼ ବିସ୍ୱାଦ ବିଷୟ । ମୁଁ ଜାଣିଶୁଣି ତାର ଦୃଷ୍ଟିରେଖା ଭିତରକୁ ଯିବାପାଇଁ ଶଙ୍କା କରେ । ଏ ମୋର ପ୍ରକୃତିଗତ ଭୀରୁତା ନୁହେଁ— ଦୁର୍ଦ୍ଦମ ଅଭିଳାଷ । କିନ୍ତୁ କି ସମ୍ବାଦ ଘେନି ଜଣେ ନାରୀ ଦୌତ୍ୟ-ବ୍ୟାଜରେ ଆସିଛି, ତାହା ଜାଣିବା ପାଇଁ ମୁଁ ତାକୁ ଆଣିବାକୁ ଆଦେଶ ଦେଲି । ଯେଉଁ ନାରୀ ଯୁଦ୍ଧବର୍ମ ପିନ୍ଧି, କାନ୍ଧରେ ତୂଣୀର ଝୁଲାଇ ସଶସ୍ତ୍ର ସୈନିକ ବେଶରେ ମୋ ସମ୍ମୁଖରେ ଛିଡ଼ା ହେଲା; ସେ ବନ୍ଧ୍ୟା । ଶ୍ରୀଧର, ସେ ବନ୍ଧ୍ୟା, ଅପୂର୍ବ ରମଣୀ ସେ । ତାକୁ ଦେଖି ମୁଁ ଆତ୍ମବିସ୍ମୃତ ହେଲି । ସେ ମୋର ଭାବାନ୍ତର ଯେପରି ଲକ୍ଷ୍ୟ କରି ନାହିଁ, ଏଇ

ଗୀତରେ ମୋର କୁଶଳ ଜିଜ୍ଞାସା କରି ନିଜର ପରିଚୟ ଦେଲା—ତାର ପରିଚୟ ବି ବଡ଼ ରହସ୍ୟମୟ । ସେ କେଉଁଠି ବହୁ ଯୁଦ୍ଧରେ ସୈନିକ ବେଶରେ ରଣତାଣ୍ଡବ ଦେଖିଛି; କିନ୍ତୁ ମୋ ପାଖକୁ ଆସିଛି ଏଇ ମିନତି ନେଇ ଯେ, ସେ ମୋର ଅନ୍ତଃପୁରରେ ଅନ୍ତଃପୁର-ବାସିନୀ ହୋଇ କଣ୍ଟୁଦିନ ପାଇଁ ଯୁଦ୍ଧକ୍ଳେଶ ପାଶୋରି ପକାଇବ । ବେଶ୍ କଥା—ମୁଁ ଅବିବାହିତ ଥିବାରୁ ଓ ମୋର ଅନ୍ତଃପୁର ଶୂନ୍ୟ ପଡ଼ିଥିବାରୁ ମୁଁ ଏଇ ଯୁଦ୍ଧପ୍ରମତ୍ତା ରମଣୀକୁ ବିନା ଆପତ୍ତିରେ ଅନ୍ତଃପୁରବାସିନୀ ହେବାକୁ ଅନୁମତି ଦେଲି । ଏଇ ଭାବ କିନ୍ତୁ ମୋର ହୃଦୟ ଅଧିକାର କଲା ଯେ, ନିଶ୍ଚୟ ଏଇ ସୁନ୍ଦରୀ ରମଣୀ କୌଣସି ଶତ୍ରୁପକ୍ଷ ଦ୍ୱାରା କଳଙ୍କର କଳଙ୍କ ରଟାଇବା ପାଇଁ ସନ୍ଧାନୀ ଭାବରେ ଛୁଟି ଆସିଛି; ମୋର ଅନ୍ତଃପୁରରେ ମତେହିଁ ଦଂଶନ କରିବାକୁ । ସେ ଯାହାହେଉ, ନିର୍ବିଘ୍ନରେ କେତୋଟି ଦିନ କଟିଗଲା ।

"କୁଞ୍ଜିକାକୁ ତାର ସୁବିଧା ଅସୁବିଧା କଥା ଦେଖିବାକୁ ନିଯୁକ୍ତ କଲି । ତାର କଥାରେ ଯଦି ମୁଁ ବିଶ୍ୱାସ କରେ, ତେବେ ଶ୍ରୀଧର, ଏଇଆ ଶୁଣ ଯେ, ବନ୍ଧ୍ୟା ଆସିଲାବେଳେ ଯେଉଁ ଯୁଦ୍ଧବେଶରେ ମତେ ଅଭି-ବାଦନ କଲା, ସେ ତାହା ସବୁ କୁଆଡ଼େ ଭୁଲିଗଲା । ବରଂ ସାଧାରଣ ନାରୀ ବେଶରେ ଉଦ୍ଦାମ ଲୋଲ ଯୌବନଜ୍ୟୋତିକୁ ବିକିରଣ କରି ଅନ୍ତଃପୁରସ୍ଥ ଉଦ୍ୟାନର ଏକପ୍ରାନ୍ତରୁ ଅନ୍ୟପ୍ରାନ୍ତ ପର୍ଯ୍ୟନ୍ତ ଚଳିତ ପ୍ରଜାପତି ଭଳି ଘୂରି ବୁଲିଲା ।

"ଅନାସକ୍ତ ଭାବରେ ମୁଁ ମୋର ରାଜକାର୍ଯ୍ୟ ନିର୍ବାହ କରୁଥାଏ । ଦିନେ 'ବିହଙ୍ଗ ବିହାର' ପରିଦର୍ଶନ କରିବା ପାଇଁ ମୁଁ ରାଜପୋଷାକ ତ୍ୟାଗ କରି ମନବିନୋଦନ ନିମିତ୍ତ ଯାତ୍ରା କଲି । ତାହା ଅନ୍ତଃପୁର ନିକଟସ୍ଥ ସ୍ଥାନ । ଏଇ 'ବିହଙ୍ଗ ବିହାର'ରେ ନାନା ଜାତି ପକ୍ଷୀ ଅଛନ୍ତି, କିନ୍ତୁ ସେଥି ମଧ୍ୟରୁ 'ବିମ୍ବୋଷ୍ଠ'କୁ ମୁଁ ଭାରି ସୁଖ ପାଉଥିଲି । 'ବିମ୍ବୋଷ୍ଠ' ଗୋଟିଏ ଶୁକପକ୍ଷୀର ନାମ । ସେଇଦିନର କଥା । ପିଞ୍ଜରମୁକ୍ତ କରି ମୁଁ ଯେତେବେଳେ ବିମ୍ବୋଷ୍ଠକୁ ଆଣି ତା ସୁନାଶିକୁଳିଟି ମୋ ବାମକର ତର୍ଜନୀରେ ବାନ୍ଧୁଥିଲି, ସେତେବେଳେ ବିମ୍ବୋଷ୍ଠ ଜୋରରେ ଗୋଟାଏ ଝିଙ୍କା ଦେଇ ଉଡ଼ି ଚାଲିଗଲା—ସ୍ୱର୍ଣ୍ଣ ଶିକୁଳି ବି ଖଣ୍ଡ ଖଣ୍ଡ ହୋଇ

ଭୂତଳେ ନିକ୍ଷିପ୍ତ ହେଲା । ଦେଖିଲି, ସେ ଅନ୍ତଃପୁରସ୍ଥ ଉଦ୍ୟାନର ତମାଳ ଶାଖାରେ ବସି ଆତ୍ମଗୋପନ କଲା । ମୁଁ ବଡ଼ ଅନୁନୟ କରି ତାକୁ ଡାକିଲି, ମାତ୍ର ସେ କର୍ଣ୍ଣପାତ କଲା ନାହିଁ । ବରଂ ତମାଳ ଶାଖାରେ ଚକ୍ଷୁତାର ଦୁଇଟି ମୁଦ୍ରିତକରି ସୁଷୁପ୍ତିରେ ନିମଗ୍ନ ହେଲା ।

"ଅନ୍ତଃପୁରକୁ ଯିବା ବନ୍ଧ୍ୟାର ଉଦୟ ହେବା ଦିନଠାରୁ, ମୋ ପକ୍ଷରେ ସମ୍ଭବ ନୁହେ । କିନ୍ତୁ ଯଦି ବିମ୍ବୋଷ୍ଠକୁ ଧରି ନ ପାରେ, ତେବେ ତାର ବିଚ୍ଛେଦ ଦୁଃଖରେ ମୁଁ ବଡ଼ କାତର ହୋଇ ପଡ଼ିବି, ଏହା ଭାବି ଅନ୍ତଃପୁର ଆଡ଼କୁ ଅଗ୍ରସର ହେଲି । ଏକାକୀ ଉଦ୍ୟାନରେ ପୁଷ୍ପବାଟିକା ତଳେ ଯାଉଁ ଯାଉଁ ଦେଖିଲି, ମର୍ମରଖଚିତ 'ନୀଳସର'ର ସୋପାନ ଶ୍ରେଣୀକୁ ଭରା ଦେଇ ବନ୍ଧ୍ୟା ଗୋଟିଏ ନୀଳପଦ୍ମକୁ ନିଜ ମୁଦ୍ରିତ ଚକ୍ଷୁ ଦୁଇଟିରେ ଧୀରେ ଧୀରେ ସଞ୍ଚାର କରୁଅଛି । ବକ୍ଷ ଅନାବୃତ, କର୍ଣ୍ଣାଳଙ୍କାର ପଦ୍ମକୋରକ, କଟୀଦେଶରେ କେବଳ କ୍ଷୀଣ ଉତ୍ତରୀୟ ଖଣ୍ଡେ । ଏ ରୂପ-ଆଲୋକ ମତେ ମୁଗ୍ଧ କଲା । ଚତୁରା ଦୂରରୁ ଦେଖିପାରି ସଲଜ୍ଜ ବଦନରେ ମୋତେ ସ୍ୱାଗତ ଜଣାଇ ଅଭିବାଦନ କଲା । ମୁଁ ନିରୁପାୟ ହୋଇ ଦୂରସ୍ଥ ତମାଳ ଶାଖାକୁ ହସ୍ତ ପ୍ରସାରଣ କରି ସଂକେତ କଲି । ବୁଦ୍ଧିମତୀ ବୁଝିପାରି ପଚାରିଲା—'ଓ, ବିମ୍ବୋଷ୍ଠ ଉଡ଼ିଯାଇଛି, କିଛି ଚିନ୍ତା ନାହିଁ—ଆସନ୍ତୁ ।'

"ଦୁହେଁ ତମାଳ ଶାଖା ଉପରେ ଦୃଷ୍ଟି ରଖି ଯାଉଁ ଯାଉଁ ବନ୍ଧ୍ୟା ପଚାରିଲା—'ମତେ ସ୍ମରଣ କଲେ ? ମୁଁ ସେ ନିତି ଅପେକ୍ଷାରେ ଥାଏ ।'

"ବନ୍ଧ୍ୟା କଥାକୁ ଆଦୌ ଭ୍ରୂକ୍ଷେପ ନ କରି, ଚିତ୍କାର କଲି—'ମୂର୍ଖ ଶୁକପକ୍ଷୀ, ଶୀଘ୍ର ଫେରିଆ ।' ବିମ୍ବୋଷ୍ଠ ମୋ କଥାକୁ ଖାତିର ନ କରି ବରଂ ଆହୁରି ଲତାନ୍ତରାଳରେ ଆତ୍ମଗୋପନ କଲା । ମୁଁ ନିରୂପାୟ ଭାବରେ ବନ୍ଧ୍ୟାର ମୁଖସୁଷମାକୁ ଚାହିଁରହିଲି । ସେ ମତେ 'ଅପେକ୍ଷା କରନ୍ତୁ' କହି ଦ୍ରୁତ ଫଣି ପରି ହଠାତ୍ ପୁଣି ଅନ୍ତଃପୁର ମଧ୍ୟରେ ପ୍ରବେଶ କଲା । ମୁଁ ଅତି ଦୀନ ଭାବରେ ଏକ ପାଖେ ବିମ୍ବୋଷ୍ଠ, ଅନ୍ୟ ପାଖେ ବନ୍ଧ୍ୟାକୁ ଚାହିଁ ରହିଲି ।

"କ୍ଷିପ୍ର ଚରଣରେ ବନ୍ଧ୍ୟା ଅନ୍ୟ ଏକ ଶୁକପକ୍ଷୀ ଧରି ତମାଳ ବୃକ୍ଷ ତଳେ ଡାକ ଦେଲା—'ବିମ୍ବୋଷ୍ଠ, ତୋର ସାଥୀ ତତେ ବଡ଼

କାତର ପ୍ରାଣରେ ଡାକୁଛୁ, ତୁ ଫେରିଆ ।' ଏଇ ଏକ କଥା ବାରମ୍ବାର ଉଦ୍ୟାନ ଗର୍ଭରେ ପ୍ରତିଧ୍ୱନିତ ହେଲା ଓ ପ୍ରତିଥର ବନ୍ଧ୍ୟା ମୋ ଆଡ଼େ କଟାକ୍ଷ ନିକ୍ଷେପ କରି ମତେ ବ୍ରତଭଙ୍ଗ ଉଦ୍ଦେଶ୍ୟରେ ବିଚଳିତ କରୁଥାଏ । ମୁହୂର୍ତ୍ତିକ ପରେ ଦେଖିଲି ବିମ୍ବୋଷ୍ଠ ପକ୍ଷ ବିସ୍ତାର କରି ବନ୍ଧ୍ୟାର କାନ୍ଧ ଉପରକୁ ଉଡ଼ି ଆସିଲା ଓ ବାରମ୍ବାର ତାର କର୍ଣ୍ଣଭୂଷା ପଦ୍ମକୋରକକୁ ଚଞ୍ଚୁରେ ଆଘାତ କଲା - ”

‘ମହିମା, ଏତିକ ଶିଳ୍ପୀ ପକ୍ଷରେ ଯଥେଷ୍ଟ, ତା ପରେ ଯାହା ଘଟିଛି ତା ଶିଳ୍ପରେହିଁ ଫୁଟି ଉଠିବ, ମତେ ବିଦାୟ ଦିଅନ୍ତୁ, ମୁଁ କ୍ଷଣକ ମଧ୍ୟରେ ଫେରି ଆସିବି ।’

କ୍ଷଣକର ଅବସାନ ନ ହେଉଣୁ ଶ୍ରୀଧର ଚଞ୍ଚଳ ପଦକ୍ଷେପରେ କକ୍ଷରେ ପ୍ରବେଶ କଲେ ।

ତା’ପରେ ଗୋଟିଏ ପ୍ରସ୍ତରଖୋଦିତ ମୂର୍ତ୍ତିକୁ ରାଜାଙ୍କ ସମ୍ମୁଖରେ ଥୋଇ ଶ୍ରୀଧର ଯୋଡ଼ହସ୍ତରେ ଛିଡ଼ା ହେଲେ—‘ପ୍ରଭୁ ତା ପର ଘଟଣା ଏଇ ମୂକ ପ୍ରସ୍ତରଖଣ୍ଡ ବ୍ୟକ୍ତ କରିବ ।’

ବଜ୍ରପାତରେ ଚେତନାଲୁପ୍ତ ହେବା ଭଳି ଏ ଅସାଧାରଣ ରହସ୍ୟ ଦେଖି ରାଜାଙ୍କର ବାକ୍‌ସ୍ଫୁର୍ତ୍ତି ଅସମ୍ଭବ ହେଲା । ସେ କେବଳ ଉନ୍ମାଦ ଭଳି ବିସ୍ଫାରିତ ନେତ୍ରରେ ପ୍ରତିମୂର୍ତ୍ତିଟିକୁ ଆଲିଙ୍ଗନ କରି, ବକ୍ଷସ୍ଥଳରୁ ରକ୍ତ ଶୋଷି ନେଉଥିବା ଯୁବତୀର ରକ୍ତାଧରରେ ଚୁମ୍ବନ ଦେଇ ମୂର୍ଚ୍ଛା ଗଲେ··· ।

ଖଣ୍ଡଗିରି ଗୁହା ଶୂନ୍ୟ, ଖଣ୍ଡେ ଶୈବାଳଗୁଳ୍ମପୂର୍ଣ୍ଣ ପ୍ରସ୍ତର ଉପରେ ବର୍ଣ୍ଣାଙ୍କିତ ହୋଇଛି କେତୋଟି ଲିପିମାନ—‘କଳିଙ୍ଗ ଶିଳ୍ପୀ ! କଳିଙ୍ଗର ରାଜା ବସୁଭୂମାଙ୍କୁ ଯୋଗିମା ପାଇଁ ଉଦ୍ଦିଷ୍ଟ ‘ଶୁକପକ୍ଷୀ ଶିଳ୍ପ’କୁ ଉପହାର ଦିଅ ।’

———

# ନୟନପୁର ଏକସ୍‌ପ୍ରେସ୍



ସୁରେନ୍ଦ୍ର ମହାନ୍ତି

ଆସନ୍ନ ବର୍ଷାର ଅନ୍ଧକାର ପ୍ରାଗୈତିହାସିକ ସରୀସୃପ ପରି ଆକାଶକୁ ଗ୍ରାସ କରିଯାଇଛି । ଷ୍ଟେସନ ରାସ୍ତାରେ ବୁଲା କୁକୁର ଗୁଡ଼ାଙ୍କର ସୁଦ୍ଧା ଦେଖା ନାହିଁ । କିଏ ଯାଇଁ କେଉଁଠି ଆତ୍ମରକ୍ଷା କଲେଣି । ବିଜୁଳି କେଇଥର ଲକ୍‌ଲକ୍ ହୋଇ ଖେଳିଗଲା । ମୁଣ୍ଡଟା ଅବିକା ଅନ୍ଧାରରେ ବାଡ଼େଇ ହୋଇଯାଇଥାଆନ୍ତା, ରାସ୍ତା କଡ଼ର ଟେଲିଗ୍ରାଫ୍ ଲାଇନ ଖୁମ୍ବରେ । ଅନ୍ଧାରରେ ନରେନ୍ଦ୍ର ବାଟ ଛାଡ଼ି ଅବାଟରେ ଚାଲୁଥିଲା ।

ଓଃ—ଆଉରି ଅଧେ ବାଟ ! ବର୍ଷା ପଡ଼ିଲା ପରା ! ବଡ଼ ବଡ଼ ବର-କୋଳିଆ ଟୋପା । ବାରଟା ପଇଁଚାଳିଶ···ଫାଇଭ୍ ଡାଉନ୍ ଦୁଇଟା ସମ୍ଭାବନାରେ, ଆଉ ତିନି ଘଣ୍ଟା ବାକି ! ଫାଇଭ୍ ଡାଉନ କୋଉଠି ହୋଇଥିବ ଅବିକା ? ମଧୁପୁର ? ଶାଙ୍କରେଲ୍ ? କମାର ଘାଟୀ ? ହିଂସ୍ର ଆନନ୍ଦରେ ନରେନ୍ଦ୍ରର କ୍ଲାନ୍ତ, ଅବଶ ପାଦ ଦୁଇଟା ସତେଜ ଓ ଚଞ୍ଚଳ ହୋଇଉଠିଲା ।

ନାଃ···ଏତେ ଶୀଘ୍ର "ଟେସଲ"କୁ ଫେରିବାପାଇଁ ମନ ଡାକେନା । ଜୀବନର ଅସୁମାରି ରାତି ଭିତରେ ଏ ଗୋଟିଏ ସ୍ମରଣୀୟ ରାତି । ବର୍ଷାର ବେଗ ବଢ଼ିଉଠିଛି, ତା ଭିତରେ ଝଡ଼ ବି ! ଝଡ଼ ଓ ବର୍ଷାର ଅପୂର୍ବ ଦ୍ୱନ୍ଦ୍ୱ ନୃତ୍ୟ, ଆଉ ବଜ୍ରର ମାଦଳ—ଜରାଜୀର୍ଣ୍ଣ, ଶିଥିଳ, ପଙ୍ଗୁ ଓ ଅଥର୍ବ ସମାଜ ବିରୁଦ୍ଧରେ ବିଦ୍ରୋହର ବେଦଗାନ !

ବିଜୁଳିଟା ପୁଣି ଲକ୍‌ଲକ୍ ହୋଇ ଖେଳିଗଲା । ବାଁ ହାତି ଗଳି ରାସ୍ତାରେ ବାଙ୍କିଗଲେ ଝୋଟକଲର ଶ୍ରମିକବସ୍ତି । ···ନିର୍ଜ୍ଜନ ! ରାତି ଦୁଇଟା ସିଫ୍‌ଟରେ ଶ୍ରମିକମାନେ ବର୍ଷା ଆସନ୍ନ ଦେଖି ମିଲକୁ ଚାଲିଗଲେଣି

କେତେବେଳୁ । ଇସ୍—ସିଗାରେଟ୍ ଗୁଡ଼ା ବର୍ଷାରେ ଭିଜି କାଦୁଅ ହୋଇ-ଗଲଣି । ନନ୍‌ସେନ୍‌ସ୍ !

ଦୂରରେ ଗୋଟାଏ ଟ୍ରେନର ଶବ୍ଦ ଶୁଭୁଛି । ନରେନ୍ଦ୍ର ଚମକି ପଡ଼ିଲା । ଅପ୍ ନା ଡାଉନ୍ ? ଅପ୍ ନିଶ୍ଚୟ, ମଇନା ନଦୀର ପୋଲ ଉପରେ ଆସୁଛି । ମାଲଗାଡ଼ି ଗୋଟାଏ ହୋଇଥିବ ! ଅବିକା ତ ଆଉ ପାସେଞ୍ଜର ନାହିଁ । ସକାଳ ପାଞ୍ଚଟା ଚାଳିଶିରେ ଫାଇଭ୍ ଡାଉନ ନୟନପୁର ଏକସ୍‌ପ୍ରେସ !

ନୂଆ କାନାଡ଼ିଆନ୍ ମେସିନ୍ । ଘଣ୍ଟାକୁ ଅଶୀମାଇଲ ସ୍ପିଡ଼୍ । ଅନ୍ଧକାର ପୃଥିବୀ ଉପରେ ଧାଇଁ ଚାଲିଛି ଲୌହ ଦୈତ୍ୟ ପରି !

ନରେନ୍ଦ୍ରର ପାଦ ଦୁଇଟା ରହିଗଲା । ଚାଳିଶ ବାସ୍ତବୀ ମାଇଲ ଖୁଣ୍ଟି । ତାପରେ ମେଘା ବ୍ରିଜ । ନରେନ୍ଦ୍ରର ମୁଣ୍ଡଟା କିପରି ବୁଲେଇ ଦେଲା । ଆଉ ଭାବି ହୁଏନା । ନାରୀ କଣ୍ଠର ଆର୍ତ୍ତକ୍ରନ୍ଦନ, ଶିଶୁର ଚିତ୍କାର, ବୃଦ୍ଧର ଆର୍ତ୍ତନାଦ, ବୃଦ୍ଧାର ମରଣ ଯନ୍ତ୍ରଣା···ମୃତ୍ୟୁର ଅଟ୍ଟହାସ ! କାଲି ଖବରକାଗଜର ସକାଳ ସଂସ୍କରଣରେ ବଡ଼ବଡ଼ ହରଫରେ ପ୍ରକାଶ ପାଇବ "ନୟନପୁର ଏକସ୍‌ପ୍ରେସ୍‌ର ଶୋଚନୀୟ ଦୁର୍ଘଟଣା" ।

ଏ ହତ୍ୟା ! ନାରୀ ହତ୍ୟା ! ଶିଶୁ ହତ୍ୟା ! ହିଁ ହିଁ ହତ୍ୟା ନୁହେଁ ତ ଆଉ କଣ ? କେଉଁ ନିରୀହ ବୃଦ୍ଧ ହୁଏତ ଜାକଜୁକି ହୋଇ ବେଞ୍ଚଟା ଉପରେ ଢୁଳାଉଥିବ ! ନବବଧୂ ଆଖିରେ, ତଥାପି ଲାଖି ରହିଥିବ ଆସନ୍ତା କାଲିର ସାତରଙ୍ଗୀ ଇନ୍ଦ୍ରଧନୁର ସ୍ୱପ୍ନ—"ତୃତୀୟ ଶ୍ରେଣୀର ଗୋଟିଏ ବଗୀ, ଗୋଟାଏ ଇଣ୍ଟର କ୍ଲାସ ବଗୀ ଭିତରକୁ ଟେଲିସ୍କୋପ କରି ଯାଇଥିଲା" ଜଣେକ ସମ୍ବାଦଦାତାଙ୍କ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ।

ଏ ହତ୍ୟା, ନିର୍ମମ, ପାଶବିକ, ଜଘନ୍ୟ ! ତଥାପି ଇତିହାସର ପୃଷ୍ଠା ଲେଉଟାଇ ଦେଖ, ଦେଖିବ ଯେ ଯେତିକି ନିର୍ମମ, ନରହନ୍ତା, ତା ପାଇଁ ସେତିକି ବେଶୀ ଜୟଗାନରେ ପୃଷ୍ଠା ପରେ ପୃଷ୍ଠା ମୁଖରିତ ହୋଇ ଉଠିଛି । ଆଲେକଜାଣ୍ଡର, ଅଶୋକ, ଖାରବେଳ, ଶିବାଜୀ, ନେପୋଲିୟନ୍, ହିଟଲର୍ !

ଶ୍ରମିକବସ୍ତିର ଗୋଟିଏ କୁଡ଼ିଆରେ ଧୂଆଁଳିଆ ଲଣ୍ଠନଟାଏ ଜଳୁଛି ମିଞ୍ଜି ମିଞ୍ଜି ହୋଇ । କିଏ ଜଣେ ଓଠରେ ଖଣ୍ଡେ ପିକା ଲଗାଇ

ବସିଛି କୁଡ଼ିଆ ଦୁଆରେ । ପିଙ୍କା ନିଆଁ ଦପ୍‌ ଦପ୍‌ କରୁଛି, ଅନ୍ଧାରରେ ।
କିଏ ! କାହାଲାଗି ଏ ପ୍ରତୀକ୍ଷା ? ନରେନ୍ଦ୍ର ଡାକିଲା···"କିଏ ?"

ଲୋକଟା କଣ୍ଠ ଚିହ୍ନିପାରିଲା ହୁଏତ । ଜବାବ ଦେଲା ଛତିଶଗଡ଼ ଭାଷାରେ···"ମୁଁ ବାବୁ ! କମଳାର ମା ଏ ଝଡ଼ବର୍ଷାରେ କେମିତି ଯେ ମିଲରୁ ଫେରିବ ! ତାକୁ ଅନାଇଁ ବସିଛି ।"

ନରେନ୍ଦ୍ରର ସାରା ଦେହ ବର୍ଷାପାଣିରେ ଭିଜି ଜୁଡ଼ୁବୁଡ଼ୁ ହୋଇଛି । କାଦୁଅ ରାସ୍ତା ଉପରୁ ନରେନ୍ଦ୍ର ଉଠିଯାଇ, ସେଇ କୁଡ଼ିଆ ଭିତରକୁ ପଶିଗଲା । "ବନ୍ଦିଆ ବଡ଼ ରଖିଛୁ କରେ ?" ଏ ସମୟରେ ପୁଣି ଏ ଅବସ୍ଥାରେ ନରେନ୍ଦ୍ରକୁ ଦେଖି ବନ୍ଦିଆ ପ୍ରଥମେ ସାମାନ୍ୟ ବିସ୍ମିତ ହୋଇ ଯାଇଥିଲା । କିନ୍ତୁ ଏ ବାବୁମାନଙ୍କ କଥା ବନ୍ଦିଆକୁ ବେଶ୍‌ ଜଣା ! ଏମାନଙ୍କ ପାଇଁ ଦିନ ନାହିଁ, ରାତି ନାହିଁ, ଝଡ଼ ନାହିଁ, ବର୍ଷା ନାହିଁ, ବନ୍ଦିଆ ଆଉ କିଛି ନ କହି କୁଡ଼ିଆର ଗୋଟାଏ କୋଣରୁ କେଇଖଣ୍ଡ ବଡ଼ କାଢ଼ି ନରେନ୍ଦ୍ର ହାତକୁ ବଢ଼ାଇ ଦେଲା । ସନ୍ତସନ୍ତିଆ ଚଟାଣ । ଖଣ୍ଡେ ହେଁସ ଉପରେ ଜାକିଜୁକି ହୋଇ ଶୋଇଛନ୍ତି ବନ୍ଦିଆର ସାନ ସାନ ଝିଅ, କମଳା ଆଉ ବିମଳା । କମଳା ମା'ର ସ୍ଥାନ ଖାଲି ପଡ଼ିଛି ।

ନରେନ୍ଦ୍ର ଲଣ୍ଠନରୁ ଖଣ୍ଡେ ବଡ଼ରେ ନିଆଁ ଲଗେଇଲା । ନୟନପୁର ଏକସ୍‌ପ୍ରେସ୍‌ରେ ସନ୍ଧ୍ୟାବେଳେ କେଉଁ ଜଣେ ସ୍ତ୍ରୀ ହୁଏତ ଚଢ଼ିଥିବ, କୌଣସି ଏକ କମ୍ପାର୍ଟମେଣ୍ଟରେ । ସାଙ୍ଗରେ ତାର ହୁଏତ ଗୋଟିଏ ଗ୍ରେଟ ଶିଶୁ । ଲକ୍ଷ୍ୟ ତାର ହୁଏତ ମସୁଦ୍‌ଗଡ଼, ରାତି ଦୁଇଟା ସତାବନରେ ପହଞ୍ଚିବ ନୟନପୁର ଏକସ୍‌ପ୍ରେସ । ଶିଶୁଟି ନିଶ୍ଚିନ୍ତରେ ଶୋଇପଡ଼ିଛି ବର୍ଥର ଗୋଟିଏ କୋଣକୁ, ସ୍ତ୍ରୀଟିର ଆଖିକୁ ନିଦ ନାହିଁ, ଝରକାର କାଚ ପକାଇଦେଇ ଖାଲି ଚାହିଁ ରହିଛି ବାହାରର ଅନ୍ଧକାର ଭିତରକୁ । ନୟନପୁର ଏକସ୍‌ପ୍ରେସ୍‌ ଚାଲିଛି ଘଣ୍ଟାରେ ଅଶୀମାଇଲ ।

ମସୁଦ୍‌ଗଡ଼ରେ ହୁଏତ ସ୍ୱାମୀ ତାର, ଘର ଛାଡ଼ି, ସଂସାର ଛାଡ଼ି, ଦିନ ପରେ ଦିନ ଗଧଖଟଣି ଖଟୁଛନ୍ତି, ସଂସାର ପ୍ରତିପାଳନ ପାଇଁ । ଏ ଝଡ଼ରାତିରେ ସେ ଷ୍ଟେସନକୁ ଆସିବେ ତ । ହଁ ଆସିଥିବେ ନିଶ୍ଚୟ । ଚିଠି ଲେଖିଥିଲେ, ବହୁ କଷ୍ଟରେ ଖଣ୍ଡେ ଭଡ଼ାଘର ପାଇଛନ୍ତି । ଘର ସାମନାକୁ

କୁଆଡ଼େ ଖଣ୍ଡେ ଗ୍ଲେଟ ବାଡ଼ ଅଛି । ସୁନୁ ସକାଳେ ସଞ୍ଜରେ ଖେଳିବ ସେଠି । କିଛି ଫୁଲ ଲଗାଇ ଦେଲେ ବି ଚଳିବ । ଫୁଲ ନ ହେଲେ ବେଣିବନ୍ଧା ଚଳେନା । ନୟନପୁର ଠାକୁର ବଗିଚାରେ ସିନା ଅସୁମାରି ଫୁଲ ! ଏଇ ମେଘା ବ୍ରିଜ ପଡ଼ିଲା । ନୟନପୁର ଏକ୍ସପ୍ରେସ୍‌ରେ ଯେଉଁ ଯାତ୍ରୀମାନେ ଶୋଇବା ପାଇଁ କୌଣସି ସୁବିଧା କରିପାରି ନଥିବେ, କୌତୂହଳରେ ଝରକା ବାଟେ ସେମାନେ ଚାହିଁ ଦେଖିବେ, ତଳର ମେଘା ବ୍ରିଜ । ତା ପରେ ମସୁଦ୍‌ଗଡ଼ । ଅନେକ ଯାତ୍ରୀ ଓହ୍ଲାନ୍ତି ସେଠି, ସବୁ କମ୍ପାର୍ଟମେଣ୍ଟ ହଠାତ୍ କର୍ମବ୍ୟସ୍ତତାରେ ଚଞ୍ଚଳ ହୋଇଉଠେ । ସେ ସ୍ତ୍ରୀ ଲୋକଟି ହୁଏତ ନିଦ୍ରିତ ଶିଶୁଟିକୁ ଉଠାଉଥିବ···ସୁନୁ, ସୁନୁ, ଉଠ ବାବା, ହେଇ ବାପା ଆସିଛନ୍ତି···ଉଠ୍ ଉଠ୍ ଦେଖି ।

ତା'ପରେ । ତା'ପରେ ଚୈରଣ ବାସ୍ତରି ମାଇଲ ।

ଫିସପ୍ଲେଟ ଉଠିଯାଇଛି । ନୟନପୁର ଏକ୍ସପ୍ରେସ୍···

ନରେନ୍ଦ୍ର ଝଡ଼ପରି କୁଡ଼ିଆ ବାହାରକୁ ଧାଇଁ ପଳାଇଲା ।

× × × ×

ବସ୍ତି ମଝିରେ ଦସ୍ତା ଚାଉଣୀ ଗୋଟିଏ ଭଙ୍ଗା ଘର । ସେଇଟା 'ସେଲ' । ନରେନ୍ଦ୍ର ଦରଜା ଶିକୁଳି ହାତରେ ଝଣ୍ ଝଣ୍ କଲା । ଶ୍ୟାମଳ ଭିତରୁ ଦରଜାରେ ଶିକୁଳି ନ ଦେଇ ଶୋଇପଡ଼ିଛି । ବର୍ଷାର ବେଗ କମି ନାହିଁ, ଝଡ଼ ତଥାପି ସେମିତି ସୁ ସୁ ଗର୍ଜୁଛି । ନରେନ୍ଦ୍ରର କଣ୍ଠଟା ଶୋଷରେ ଶୁଖିଲା ଶୁଖିଲା ଲାଗୁଛି—ନରେନ୍ଦ୍ର ଘର କୋଣରୁ ପାଣି କଳସୀଟା ଉଠାଇ ଆଣିଲା । କଳସୀରେ ପାଣି ନାହିଁ । ନରେନ୍ଦ୍ର ହିଂସ୍ର ଭାବରେ ଗୋଟାଏ ଗୋଇଠା ମାରି କଳସୀଟା ବାହାରକୁ ଫିଙ୍ଗିଦେଲା ।

ମେଘା ବ୍ରିଜ ପାଖ ଚୈରଣ ବାସ୍ତରି ମାଇଲରୁ ଫିସ୍‌ପ୍ଲେଟ୍ ଉଠାଇବାର ଦାୟିତ୍ୱ ନେଇ ଆଜକୁ ସାତଦିନ ହେଲା ସେ ବୁଲୁଥିଲା ବାହାରେ ବାହାରେ । ଆଜ ସେ ଦାୟିତ୍ୱ ଶେଷ କରି ସେ ଫେରୁଛି । ଅଥଚ ଶ୍ୟାମଳ, କି ବ୍ରୁଟ୍ ! କଳସୀରେ ଟୋପାଏ ପାଣି ରଖିନାହିଁ । ରାସ୍କେଲ ! ନରେନ୍ଦ୍ରର ହଠାତ୍ ମନେପଡ଼ିଲା ନିଜ ସ୍ତ୍ରୀ କଥା । ବଗିଚାକୁ ସେ ନିଜେ ଜୋର କରି ଛଡ଼ ଦେଇଥିଲା ଦିନେ ।

"ମଞ୍ଜୁ, ମୁଁ ଗୃହେଁ ସହକର୍ମିଣୀ, ଶଯ୍ୟାସଙ୍ଗିନୀ ନୁହେଁ ।" ମଞ୍ଜୁ କାନ୍ଦି କାନ୍ଦି ଜବାବ୍ ଦେଇଥିଲା···"ମୋତେ କ୍ଷମାକର, ଏସବୁ ହେବନି ମୋ ଦ୍ୱାରା । ପିସ୍ତଲ, ଗୁଳି, ବୋମା ଏସବୁ ଦେଖିଲେ ମୋ ଛାତି ଥରି ଉଠେ ।"

ନରେନ୍ଦ୍ର ସେ ଦିନ ରୁକ୍ଷ କଣ୍ଠରେ ଜବାବ ଦେଇଥିଲା··· "ଆଗାମୀ ବିପ୍ଳବ ବିରୁଦ୍ଧରେ ତୁମର ଏ ହୀନ ଷଡଯନ୍ତ୍ର, ମୁଁ ସହ୍ୟ କରିପାରିବି ନାହିଁ ମଞ୍ଜୁ । ତୁମକୁ ହୁଏତ ଅଣ୍ଡରଗ୍ରାଉଣ୍ଡରେ ଯୋଗ ଦେବାକୁ ପଡ଼ିବ । ନଚେତ୍ ଏଠାରେ ତୁମର ସ୍ଥାନ ନାହିଁ ।"

ବହୁ ଲାଞ୍ଛନା, ଉପେକ୍ଷା ମଞ୍ଜୁ ଅନେକଦିନ ମୁହଁ ବୁଜି ସହିଛି ସର୍ବଂସହା ମାଟି ପରି । କିନ୍ତୁ ସହିବା, ସୀମାଲଙ୍ଘନ କରିଥିଲା, ଯେଉଁଦିନ ନରେନ୍ଦ୍ର ପ୍ରାୟ ଜୋର ଜବରଦସ୍ତ କରି ମଞ୍ଜୁକୁ ଘରୁ ତଡ଼ି ଦେଇଥିଲା ନାନା ଲାଞ୍ଛନା କରି ।

ସେଦିନ ରାତି ପାହାନ୍ତା ପାହାନ୍ତା କରି ନରେନ୍ଦ୍ର ଘରକୁ ଫେରିଥିଲା କୁଆଡ଼ୁ । ମଞ୍ଜୁ ଏ ଅନ୍ତଃସ୍ୱତ୍ତିତା, ଦେହ ପ୍ରତି ଏ ଅନାଗ୍ରହ, ଏମିତି ଆଉ କେଣ ବିପଦ କଥା କହିବାରୁ, ଉପବାସିନୀ ମଞ୍ଜୁ ପ୍ରତି ନରେନ୍ଦ୍ର ସେଦିନ କିପରି ଅସଭ୍ୟ ବର୍ବର ପରି ବ୍ୟବହାର କରିଥିଲା । ଆଜି ସେ କଥା ଭାବିଲେ ବାସ୍ତବିକ ଲଜ୍ଜ୍ୟା ଲାଗେ । ତାପରେ ମଞ୍ଜୁ ତା ବାପଘରକୁ ଚାଲିଯାଇଥିଲା, କୌଣସି ପ୍ରତିବାଦ ନ କରି । ନରେନ୍ଦ୍ରର ଶ୍ୱଶୁର ନୟନପୁର ଗୁଡ଼ସ୍‌ୟାର୍ଡରେ ଜଣେ କିରାଣି । ସେଇ ନୟନପୁରରୁ କିଛି ଦିନ ପରେ ନରେନ୍ଦ୍ର କେବଳ ଚିଠିରେ ଜାଣିଥିଲା ଗୋଟିଏ କନ୍ୟା ସନ୍ତାନର ଜନ୍ମକଥା । ମାତ୍ର ସେ କେବେ ଭୁଲରେ ସୁଦ୍ଧା ସେ ସବୁ କଥା ମନରେ ସ୍ଥାନ ଦେଇ ନାହିଁ । ମଞ୍ଜୁ କଥା ସେ ଭୁଲିଯାଇଛି ଅନେକ ଦିନୁ । କିନ୍ତୁ ଦିନେ ଦିନେ ଏମିତି ଅସହାୟ, ଅତ୍ୟାଗ୍ରହରତ ମୁହୂର୍ତ୍ତରେ ମନେପଡ଼େ ସେବାମୟୀ ମଞ୍ଜୁ କଥା । ମନ ତାର ଅସ୍ୱାଭାବିକ ଭାବରେ ଆର୍ଦ୍ର ହୋଇଯାଏ । ଇଚ୍ଛା ହୁଏ ଏ ନାଗବନ୍ଧନରୁ ମୁକ୍ତ ପାଇ କେଉଁଠି ବିପୁଳ ପୃଥିବୀର କେଉଁ ନାମହୀନ ସଙ୍କୀର୍ଣ୍ଣ କୋଣରେ ଛୁଟିର ଦୀର୍ଘଶ୍ୱାସ ମାରିବା ପାଇଁ । ସେ ମଧ୍ୟ ଅତୀତର ସବୁ ଦୁର୍ଘଟଣା ପାଇଁ ଅନୁତାପ କରି, ମଞ୍ଜୁ ପାଖକୁ ଫେରି ଆସିବା ଲାଗି ଚିଠି ଲେଖିବାର ଚେଷ୍ଟା କେତେବାର

କରିଛି । ମାତ୍ର ସେଥିରେ ବାଧା ଦେଇଛି, ତା'ର ପୌରୁଷ ଓ ଅଭିମାନ । ଶ୍ୟାମଳ ଉଠିବସିଲା । ନରେନ୍ଦ୍ରକୁ ନୀରବ ଦେଖି ଶ୍ୟାମଳ ପଚାରିଲା ...“କେତେବେଳେ ଫେରିଲୁ ?”

ନରେନ୍ଦ୍ର ବାସ୍ତବତା ଭିତରକୁ ଫେରିଆସି ଶାନ୍ତ କଣ୍ଠରେ ଜବାବ ଦେଲା—“ମେଘା ବ୍ରିଜ ଗୃହଣ ବାସ୍ତବ ମାଇଲ ପୋଷ୍ଟ ପାଖରୁ ଛଅଟା ଫିସ୍ ପ୍ଲେଟ ଉଠାଇ ଦେଇ ଫିଙ୍ଗି ଦେଇଛି ମେଘା ଭିତରକୁ । ଫାଇଭ୍ ଡାଉନ୍ ମସୁଦ୍‌ଗଡ଼ରେ ଆସିଲାଣି, ଦୁଇଟା ସତାବନ୍ ।”

ଶ୍ୟାମଳ ଆନନ୍ଦରେ ଗୋଟାଏ ଅଦ୍ଭୁତ ଚିତ୍କାର କରି କହିଲା “ସେଥିରେ ଆଜି ନେତା ସାହେବ ଆସୁଛନ୍ତି, କାଲି ଏଠି ଶ୍ରମିକ ସଭାରେ ଭାଷଣ ଦେବା ପାଇଁ । ବିପ୍ଳବର ଐତିହାସିକ ଭୂମିକା ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାର ଶାସ୍ତି କି ଭୀଷଣ, ନେତାସାହେବ ଠିକ୍ ବୁଝିପିବେ ଏଥର ! ଜାଣ ନରେନ୍ଦ୍ର, କେତେ କଷ୍ଟରେ ଦେହର ବିନ୍ଦୁବିନ୍ଦୁ ଝାଳ ସଙ୍ଗରେ ରକ୍ତ ମିଶାଇ ମୁଁ ଏ ଶ୍ରମିକ ଇଉନିୟନ ଗଢ଼ିଥିଲି ଏଠି ? କିନ୍ତୁ ମିଲ ମାଲିକ, ପୁଞ୍ଜିପତିମାନଙ୍କର ଦଲାଲି କରି ବିପ୍ଳବକୁ ଭ୍ରଷ୍ଟ କରିବା ପାଇଁ ସେମାନେ ବସିଥିଲେ ଏଠି ଆଉ ଗୋଟିଏ ସମାନ୍ତରାଳ ଅନୁଷ୍ଠାନ ଗଢ଼ିବା ପାଇଁ । Welldone ନରେନ୍ଦ୍ର !”

ନରେନ୍ଦ୍ର କ୍ଳାନ୍ତ ଭାବରେ ଖଣ୍ଡେ କାନଭାସ୍ ଖଟିଆ ଉପରେ ସେଇ ଭିଜାଲୁଗା ଜାମା ପିନ୍ଧି ଗଡ଼ପଡ଼ିଲା । ମୁଣ୍ଡ ଉପରେ ସେଲ୍‌ଫରେ ଟାଇମପିସ୍‌ରେ ବାଜିଲାଣି ସାଢ଼େ ଦୁଇଟା । ଆଉ ସତେଇଶ ମିନିଟ୍ ।

ନରେନ୍ଦ୍ର ଖଟ ଛାଡ଼ି ଅସ୍ଥିର ଭାବରେ ଘର ଭିତରେ ଏପାଖ ସେପାଖ ହେବାକୁ ଲାଗିଲା । ବାହାରେ ଝଡ଼ବର୍ଷାର ଅଶାନ୍ତ କଳରୋଳ । ଶ୍ୟାମଳ ମଧ୍ୟ ବିଛଣା ଛାଡ଼ି ଉଠିବସିଲାଣି । ନରେନ୍ଦ୍ରର ଆଖି ପଡ଼ିଲା, ଟେବୁଲ ଉପରେ କେତେଖଣ୍ଡ ଚିଠି ଉପରେ—ନରେନ୍ଦ୍ର ଠିକଣାର ଚିଠି ! ଶ୍ୟାମଳ କହିଲା...“ତମେ ଯିବାପରେ ସେ ଖଣ୍ଡେ ଦିଖଣ୍ଡ ଚିଠି ତୁମ ନାଁରେ ଆସିଥିଲା ।”

ନରେନ୍ଦ୍ର ଲଣ୍ଠନ୍‌ର ଧୂଆଁଳିଆ ଆଲୁଅରେ ଚିଠି ଗୁଡ଼ାକ ଉପରେ ଆଖି ବୁଲାଉ ବୁଲାଉ ଖଣ୍ଡେ ଲଫାପା ଉପରେ ଦେଖିଲା ମଞ୍ଜୁର ହସ୍ତାକ୍ଷର । ଲଣ୍ଠନଟା ତେଜ ଦେଇ ଅସ୍ଥିର ଭାବରେ ନରେନ୍ଦ୍ର ମଞ୍ଜୁର

ଚିଠିଟା ପଢ଼ିଲା । ମଞ୍ଜୁ ଲେଖିଛି । ଅନେକ ଦିନ ପରେ ଲେଖିଛି । କାନ୍ଦି କାନ୍ଦି ଲେଖିଛି । ନରେନ୍ଦ୍ର ତାକୁ ପାଦରେ ଠେଲି ଦେଇଲେ ବି ସେ ପଛେ । କିନ୍ତୁ ତାର ସ୍ଥାନ ନରେନ୍ଦ୍ରର ପାଦତଳେ ! ମନୀଷା, ମନୀକୁ ତିନିବର୍ଷ ହେଲାଣି । ମଞ୍ଜୁ ଫେରି ଆସୁଛି, ସଙ୍ଗରେ ମନୀଷା ! ନରେନ୍ଦ୍ର ଆଖି ଦୁଇଟା ଭଲ କରି ମଳି ଲଣ୍ଠନଟା ତେଜ ଦେଇ ପଢ଼ିଲା···ମଞ୍ଜୁ ଶେଷରେ ଲେଖିଛି···

'ନୟନପୁର ଏକସ୍‌ପ୍ରେସ୍‌ରେ ୨୫ ତାରିଖ ଜୁଲାଇ ଦିନ ମୁଁ ମନୀକୁ ସାଙ୍ଗରେ ଧରି ଯାଉଛି । ତମେ ମୋ ଗଣଟି ଷ୍ଟେସନକୁ ଆସିଥିବ ନିଶ୍ଚୟ ।' ନରେନ୍ଦ୍ର ହାତରୁ ଚିଠିଟା ଖସି ପଡ଼ିଲା । ପାଗଳ ପରି ସେ ଧାଇଁଗଲା କାନ୍ଥ କ୍ୟାଲେଣ୍ଡର ପାଖକୁ···ଆଜି, ଆଜି, ଜୁଲାଇ ୨୫ । ଆଜି ମଞ୍ଜୁ ଆସୁଥିବ ନୟନପୁର ଏକସ୍‌ପ୍ରେସ୍‌ରେ । ସଙ୍ଗରେ ମନୀଷା ।

ଘଣ୍ଟାରେ ଦୁଇଟା ପଇଁଚିଶ୍ ମିନିଟ୍ ।

ନରେନ୍ଦ୍ର ପାଗଳ ପରି ବାହାରକୁ ଛୁଟି ପଳାଇଲା । ଝଡ଼ର ଗର୍ଜନ, ଗୁଇଁଗୁଇଁଆ ବର୍ଷା, ଅଗ୍ନିକଣ ବର୍ଷା । ଆକାଶ ଆଜି ମନଭରି କାନ୍ଦୁଛି । ଉପାୟ ?

ଆଉ ବାଇଶ୍ ମିନିଟ୍ ।

ବନ୍ଧୁଆ ଲୁଡ଼ଆରେ ଆଲୁଅ ନାହିଁ । କମଳୀବ ମା ଘୁରିଲି ଫେରି ଆସିଲାଣି ।

ନରେନ୍ଦ୍ର ପୁଣି 'ସେଲ' ଭିତରକୁ ପଶି ଆସିଲା ।

ଦୁଇଟା ପଇଁତ୍ରିଶ୍ ।

ଆଉ ବାରମିନିଟ୍ ବାକି ।

ଶ୍ୟାମଳ କହିଲା ନରେନ୍ଦ୍ର, କାଲି ଆମକୁ ଗୋଟାଏ ବଡ଼ି ଧରଣର ଶ୍ରମିକ ସଭା ଆୟୋଜନ କରିବାକୁ ପଡ଼ିବ । କଣ କହୁଛି ?

ଦୁଇଟା ସତଚାଳିଶ !

ଆଉ ଦଶମିନିଟ୍ ବାକି ।

ନରେନ୍ଦ୍ର ମୁହଁମାଡ଼ି କାନଭାସ୍ ଖଟଟା ଉପରେ ପଡ଼ିଗଲା । ନୟନପୁର ଏକ୍‌ସପ୍ରେସ ନରେନ୍ଦ୍ରର ମୁଣ୍ଡ ଭିତରେ ଯେମିତି ଛୁଟି ଚାଲିଛି । ଘଣ୍ଟାକୁ ଅଶୀମାଇଲ ବେଗରେ···ନର୍ମମ, ନିଷ୍କରୁଣ, ନିଷ୍ଠୁର ।

# ବଂଶୀ ଓ ବନ୍‌ଶୀ



ବ୍ରହ୍ମାନନ୍ଦ ପଣ୍ଡା

ବିସ୍ତୃତ ଏକ ପ୍ରାନ୍ତର ବକ୍ଷରେ କ୍ଷୁଦ୍ର ଜଳପୂର୍ଣ୍ଣ ସରୋବରଟିଏ । ଅନତିଦୂରରେ, ପଥ ପାର୍ଶ୍ୱରେ ଗୋଟିଏ ଭଗ୍ନସ୍ତୂପାକୃତି ଦେବାଳୟ । ମୃତ ଗୌରବ ଦେବାଳୟର ଜୀବନ୍ତ ପ୍ରତୀକ ସ୍ୱରୂପ ତାର ଜୀର୍ଣ୍ଣ ଚୂଡ଼ା ଭିତରୁ ଅଶ୍ୱତ୍ଥଟିଏ ନିର୍ବିଘ୍ନରେ ବଢ଼ି ଉଠୁଛି ।

ସରୋବର ବନ୍ଧର ଝଙ୍କାଳ ବଟମୂଳରେ ବସିଛନ୍ତି ଦୁଇଟି ପ୍ରାଣୀ – ଜଣେ ତରୁଣ, ଜଣେ ତରୁଣୀ । ତରୁଣ ବନ୍‌ଶୀ ଗୁଡ଼ୁଛି । ଆଖି ତାର ଜଳ ଆସ୍ତରଣ ଉପରେ ଲାଗି ରହିଛି । ପ୍ରାନ୍ତର ଶେଷର ଆରକ୍ତ ଚକ୍ରବାଳ ଉପରକୁ ତରୁଣୀ ଚାହିଁଛି ଶୂନ୍ୟ ଦୃଷ୍ଟିରେ । ପୌର୍ଣ୍ଣମାସୀ ସନ୍ଧ୍ୟା ଆସନ୍ନପ୍ରାୟ ।

ଶାନ୍ତ, ଉଦାର ପରିବେଶ । ବାୟୁମଣ୍ଡଳ ବିଚଳିତ କରି କେଉଁ ଦୂର ଅଜ୍ଞାତ ସ୍ଥାନରୁ ବଂଶୀ ବାଜିଲା । ତରୁଣୀ ଦେହରେ ବିଜୁଳିଭଳି ଏକ ଶିହରଣ ଖେଳିଯାଏ ।

ଆଗ୍ରହିତ ସ୍ୱରରେ ସେ କହେ,
"ଶୁଣୁଚ, ବଂଶୀ ବାଜୁଚି ।"
ତରୁଣ ନୀରବ ।
କିଛିକାଳ ନୀରବରେ ବିତିଯାଏ ।
ବଂଶୀସ୍ୱନରେ ଆକୁଳତା ସଂଚରୁଛି ।
ଆତୁର କଣ୍ଠରେ ତରୁଣୀ ପୁଣି କହେ,
"ଶୁଣୁଚ, ବଂଶୀ ବାଜୁଚି ?"

ଜଳ ଆସ୍ତରଣ ଉପରେ ଦୃଷ୍ଟି ନିବଦ୍ଧ, ବର୍ଷାସଭର କଣ୍ଠରେ ତରୁଣ କହେ,

"ଦେଖୁଚ, ମାଛର କୌତୂହଳ କପରି ବଢ଼ୁଚି । ବନ୍‌ଶୀର ଭେଦ ବୁଝିବାପାଇଁ କଣ୍ଟାଟିକୁ ବାରମ୍ବାର ପରିକ୍ରମା କରୁଚି । ଉଗ୍ର କୌତୂହଳର ପ୍ରରୋଚନାରେ ଶେଷରେ କଣ୍ଟାଟିକୁ ଗିଳି ବସିବ ।"

କାହାକୁ ଯେପରି ବଂଶୀ ଭୁହାଇ ଡାକୁଚି । ସେ ଡାକରେ ସ୍ଥାନ-କାଳ-ପାତ୍ରର ଅତୀତ । ତରୁଣୀ ଭାବବହ୍ୱଳ ହୋଇପଡ଼େ । ତାର ଶୂନ୍ୟ ଦୃଷ୍ଟି ଏକ ଅପୂର୍ବ ତନ୍ମୟତା ଭିତରେ ବୁଡ଼ିଯାଏ ।

ତରୁଣ ମୁହଁରେ ଉତ୍କଣ୍ଠା ଝଲି ଉଠିଚି ।

"ମାଛ ଏଥର କଣ୍ଟାଟିକୁ ନିଶ୍ଚୟ ଗିଳିବ । ଫେରି ଯିବାର ଶକ୍ତି ଆଉ ତାର ନାହିଁ । କି ଏକ ଅମୋଘ ଆକର୍ଷଣରେ ସେ ଜଡ଼ିତ ହୋଇଯାଇଚି ।"

ଚନ୍ଦ୍ରାଲୋକର ମାୟା ଧୀରେ ଧୀରେ ଉନ୍ମୋଚିତ ହେଉଚି ।

ଦେବାଳୟ ଚୂଡ଼ାର ଅଶ୍ୱତ୍ଥ ଶାଖାରେ ନିଶାଚର ପକ୍ଷୀଟାଏ ରହି ରହି ଚିତ୍କାର କରୁଚି ।

ସରୋବର ବକ୍ଷରେ ଚନ୍ଦ୍ରକିରଣ ଝଲମଲ ହେଉଚି ।

ରଙ୍ଗମଞ୍ଚର ଆଲୋକ ଆପ୍ଲୁତ ନର୍ତ୍ତକୀ ଭଳି ବଜନ କଇଁଟିଏ ସମ୍ଭ୍ରମରେ ପାଖୁଡ଼ା ମେଲୁଚି ।

ତରୁଣ ବନ୍‌ଶୀ ଉଠାଇ ଆଣେ । ଶୁଭ୍ର ମାଛଟିଏ ଛଟପଟ ହେଉଚି ବନ୍‌ଶୀ ଅଗ୍ରରେ । କଣ୍ଟାଟି ତାର ଗଳଦେଶ ବିଦ୍ଧ କରିଚି ।

ତରୁଣୀର ମୂର୍ଚ୍ଛିତ ଦେହ ତରୁଣ କୋଳରେ ଢଳି ପଡ଼େ ।

---

# ବିଧର୍ମୀ

କିଶୋରୀଚରଣ ଦାସ

ମୁଁ ବିଧର୍ମୀ ନୁହେଁ । ଏଥିର ପ୍ରମାଣପତ୍ର ଲୋଡ଼ା ନାହିଁ । ଯେ ମୋତେ ଜାଣିଛି, ସେ ଏ କଥା ସ୍ୱୀକାର କରିବ । ଏପରି କି ଅଭିରାମବାବୁ ନିଜେ କହିଛନ୍ତି ଯେ, ମୋତେ ଯାହା କହିଲେ ମଧ୍ୟ ମୋର ହୃଦୟ ନିର୍ମଳ, ମୁଁ ଭଗବାନଙ୍କୁ ଭଲପାଇ ପାରିବ । ସତକଥା । ମୁଁ ଭଗବାନଙ୍କୁ ଭଲପାଇ ପାରିବ,—ଯଦି ସେ ଅଭିରାମ ବାବୁଙ୍କ ପରି ହୋଇଥିବେ । କିନ୍ତୁ ମୁଁ ଜାଣେ ଯେ ସେ ତାଙ୍କ ପରି ନୁହନ୍ତି, ସେ କାହାପରି ନୁହନ୍ତି । ମୋଟ ଉପରେ ସେ ଗୋଟିଏ ମିଛକଥା ।

ଏହି ହେଉଛି ମୋର ଜ୍ଞାନ ଓ ବିଶ୍ୱାସ । ମୁଁ ଆଜି ତାକୁ ବଦଳାଇ ପାରିବି ନାହିଁ । କିନ୍ତୁ ମୁଁ ବିଧର୍ମୀ ନୁହେଁ । ମୋର ଅନୁରାଗ ବେଶୀ ଘୃଣା କମ୍ । ମୁଁ କାହାକୁ ହତ୍ୟା କରିପାରିବ ନାହିଁ, କଳ୍ପନାରେ ସୁଦ୍ଧା ହତ୍ୟା କରିପାରିବ ନାହିଁ । ମୁଁ ପ୍ରକୃତିର ନୀରବ ସୁନ୍ଦର ଓ ଜଗତର ସାନକଥା ଗୁଡ଼ିକୁ ଭଲପାଏ,—ଅଗଣାରେ ଯେଉଁ ପାଣି ଜମିଛି ସେ କେମିତି ଶୀତେଇ ଉଠୁଛି, ପୁଣି ବିଲେଇ ଚୋକେଇ ଭିତରେ ଶୋଇ ତା' ଦେହ ଗୃନ୍ଥୁଛି, ଫଟା କାନ୍ଥ ଭିତରୁ କଅଁଳିଆ ଓସ୍ତପତ୍ରଟିଏ ଅସ୍ତବ୍ୟସ୍ତ ହୋଇ ଥରି ଉଠୁଛି, ଯୋଡ଼ାଏ ଘରଚଟିଆ ଚଢ଼େଇ ଖୁମ୍ପା ଖୁମ୍ପି ହେଉଛନ୍ତି...... । ମୁଁ ସବୁ ପିଲାଙ୍କୁ ଭଲପାଏ । ମୁଁ ଏତେ ଭଲପାଏ ବୋଲି ତ ଆଜି ଏତେ କଷ୍ଟ ପାଉଛି ! ତଥାପି କିଏ କହିବ ଯେ ମୁଁ ବିଧର୍ମୀ ?

ଅଭିରାମ ବାବୁଙ୍କ ସାଙ୍ଗରେ ବହୁତ ଦିନୁ ଦେଖା ହୋଇନାହିଁ । ସେ କଣ ମୋ ସାଙ୍ଗରେ ଦେଖା କରିବାକୁ ଚାହୁଁ ନାହାନ୍ତି ? ନା, ତା କେବେହେଲେ ହୋଇ ନ ଥିବ । ମୁଁ ମଧ୍ୟ ତାଙ୍କ ପାଖକୁ ଯାଉ ନାହିଁ । ତାର କାରଣ ମୋତେ କାମରୁ ଫୁରୁସତ୍ ମିଳୁ ନାହିଁ । ମୁଁ ଆସନ୍ତା ରବିବାର ଦିନ ତାଙ୍କ ଘରକୁ ଯିବି, ନିଶ୍ଚୟ ଯିବି । ଆଉ ମୁଁ ମୋ ପୁଅକୁ ସାଙ୍ଗରେ ନେଇଯିବି ।

ପୁଅର ନାଲି ରବର ବଲଟା ବାରକବାଟ ଆଡ଼କୁ ଗଡ଼ିଯାଇଛି । ବର୍ଷାପାଣିରେ ଭିଜୁଛି । ସେ ତା' ଆଡ଼କୁ ଚାହିଁ ରହିଛି । ମୋର ମନେ-ହେଲା ଯେ ସେ ସେହି ବଲ୍‌କୁ ମୂଳକରି କଣ ଭାବୁଛି, ଭାବନାର ଥଳକୂଳ ପାଉନାହିଁ । ତା' ଭାବନାରେ ମୋ ଦୁଃଖ ରହିଛି, ସେ ତାକୁ ବୁଝିପାରୁ ନାହିଁ । ମୋର ଇଚ୍ଛା ହେଲା ତାକୁ ସବୁକଥା କହିଦେବି । ସେ ଧର୍ମ ଅଧର୍ମ କିଛି ଜାଣେ ନାହିଁ, ସେ ମୋ ପାଇଁ କାନ୍ଦି ପାରିବ ।

...ପ୍ରାୟ ବର୍ଷକ ତଳେ କଲିକତାକୁ ଆସିବା ପରେ ମୋର ଅଭିରାମ ବାବୁଙ୍କ ସାଙ୍ଗରେ ଜଣାଶୁଣା ହେଲା । ସେ ରାଜ୍ୟସରକାରଙ୍କ ଅଧୀନରେ କାମ କରନ୍ତି, କିନ୍ତୁ ତାଙ୍କ ଅଫିସ ଓ ମୋ ଅଫିସ୍ ଲାଗାଲଗି —ଗୋଟିଏ ତିନମହଲା କୋଠାର ବିଭିନ୍ନ ଅଂଶରେ । ଦିନେ ଲଂଚ୍ ଛୁଟିବେଳେ ତିନମହଲାର କ୍ୟାଣ୍ଟିନ୍‌ରେ ଗୋଟିଏ ଅଇଁଠା ଚକଟା ମାର୍ବଲ୍ ଟପ୍ ଟେବୁଲର ଦୁଇ ପାଖରେ ବସି ଆମେ ଦୁଇଜଣ ପରସ୍ପରକୁ ଚାହିଁଲୁ । ସେଦିନ ମୁଁ ପ୍ରଥମେ କ୍ୟାଣ୍ଟିନ୍‌କୁ ଆସିଥାଏ, ଗହଳ ଧୂଆଁ ମଇଳାର ବାତାବରଣ ଦେଖି ଫେରିଯିବାକୁ ଇଚ୍ଛା ହେଉଥାଏ । ଏହି ସମୟରେ ଦେଖିଲି ଯେ ଜଣେ ଭଦ୍ରଲୋକଙ୍କ ସାମନାରେ ଜଳଖିଆ ପ୍ଲେଟ ଥୁଆ ହୋଇଛି ଓ ସେ ଆଖିବୁଜି ପ୍ରାର୍ଥନା କରୁଛନ୍ତି । ପ୍ରାର୍ଥନା ସରିଲା ପରେ ସେ ଭୋଗ ଦେଲେ ଓ ତା'ପରେ ମୋତେ ଦେଖି ସାର ସହାସ୍ୟ ବଦନରେ କହିଲେ, "ବସନ୍ତୁ ।"

ବନ୍ଧୁ ଭାବଠାରୁ କୌତୂହଳର ମାତ୍ରା ଅଧିକ ଥିଲା । ମୁଁ ପାଖ ଚଉକିରେ ବସିପଡ଼ିଲି ଓ ଭାବିଲି,—ଏ ମଧ୍ୟ ଗୋଟିଏ ଧର୍ମପାଗଳ ଜୀବ ।

ଏମାନଙ୍କ ପ୍ରତି ମୋର ଘୋର ବିଦ୍ୱେଷ । ତଥାପି ସେଦିନ ତାଙ୍କର ସରଳ ହସ ଓ ଧୀର କଥା ମୋତେ ଆକୃଷ୍ଟ କରିଥିଲା । ମୁଁ

ମଝିରେ ମଝିରେ କ୍ୟାଣ୍ଟିନ୍‌କୁ ଆସି ତାଙ୍କ ସହିତ ଲଂଚ୍ ଖାଇବା ପାଇଁ ରାଜି ହେଲି । ଭାବିଲି ଯେ ଅଧଘଣ୍ଟାର ଅବସରସାଥୀ ହେବା ପାଇଁ ଲୋକଟି ମନ୍ଦ ନୁହେଁ । ଅନ୍ତତଃ ସେ ଅଯଥା ଦେଖାଣିଆ କଥା ଗୁଡ଼ାଏ କହି ବିରକ୍ତ କରିବେ ନାହିଁ ।

କ୍ରମଶଃ ମୁଁ ଜାଣିଲି ଯେ ସେ କେବଳ ମହାଧାର୍ମିକ ନୁହଁନ୍ତି, ସେ ପରମ ଭକ୍ତ । ରେଡ଼ିଓରୁ ରାମଧୁନ୍ ଶୁଣି ମଧ୍ୟ ସେ ଗଦ୍‌ଗଦ୍ ହୋଇ ପାରନ୍ତି । ସେତେବେଳେ ସେ ଅନ୍ୟମନସ୍କ ହୋଇଯାଆନ୍ତି ଏବଂ ତାଙ୍କ ପ୍ରେମ ଠାକୁରଙ୍କ ଉଠିଗଲା ପରି ମନେହୁଏ,—ସତେ ଯେପରି ସେ ଗୋଟିଏ ଜୀବନ୍ତ ମୂର୍ତ୍ତିମନ୍ତ ପଥର । ସଚେତନ ହେଲାପରେ ସେ ଲଜ୍ଜେଇ-ଯାଇ ମୁହଁ ତଳକୁ କରନ୍ତି, ଜଣାଇ ଦିଅନ୍ତି ଯେ ସେ ଭଦ୍ରତା ହାନି ପାଇଁ ଲଜ୍ଜିତ ।

ସେ କୁରୂପ ନୁହଁନ୍ତି । ଆକୃତି ପ୍ରକୃତିରେ କୌଣସି ଅସ୍ୱାଭାବିକତା ନାହିଁ । ଗୋରା ଦେହ, ଉଚ୍ଚତା ଅଳ୍ପ, ମୁଣ୍ଡବାଳ ଅଧେ ଚନ୍ଦା ହୋଇ-ଗଲାଣି । ସବୁ ଅଫିସରଙ୍କ ପରି ଅଫିସକୁ ବୁସ୍‌ସାର୍ଟ ପ୍ୟାଣ୍ଟ କମ୍ବା ସୁଟ୍ ପିନ୍ଧି ଆସନ୍ତି । ପରିଧାନ ସଫା ଓ ପରିଷ୍କାର ଥାଏ । ଏବଂ ତାଙ୍କର କଥା କହିବାର ଭଙ୍ଗୀ, ହସିବାର ଠାଣି, ଅଙ୍ଗ ସଞ୍ଚାଳନ ଇତ୍ୟାଦିରେ କୌଣସି ମୁଦ୍ରାଦୋଷ ଲକ୍ଷିତ ହୁଏ ନାହିଁ । ମୋଟ ଉପରେ ତାଙ୍କ ବ୍ୟବହାରରେ ଏପରି କିଛି ନାହିଁ, ଯାହା ମନରେ ଲାଗି ରହିବ, ଭୁଲି ହେବ ନାହିଁ । କେବଳ ଏତିକି,—ସେ ଭଗବାନଙ୍କୁ ପ୍ରାଣଭରି ଭଲ ପାଆନ୍ତି ଓ ସେଇ ଦୁର୍ବଳତା ଟିକି ଲୁଚାଇ ପାରନ୍ତି ନାହିଁ ।

ସେ ନିଜ ବିଷୟରେ ବିଶେଷ କିଛି ଗପନ୍ତି ନାହିଁ । କିନ୍ତୁ ତାଙ୍କ ବିନୟ ଓ ସୌଜନ୍ୟର ସୁଯୋଗ ନେଇ ମୋର ଇଚ୍ଛା ହେଲା ତାଙ୍କ ବିକାରର ମୂଳକଥା ଜାଣିବି । ପୃଥିବୀର ଅଧିକାଂଶ ଲୋକ ତଥାକଥିତ ଧର୍ମର ଆଗ୍ରହୀ, କିନ୍ତୁ ଭଗବତ୍‌ପ୍ରେମର ଏପରି ନମୁନା କ୍ୱଚିତ୍ ଦେଖିବାକୁ ମିଳେ । ଯେଉଁମାନଙ୍କଠାରେ ମୁଁ ଏହି ଭାବ ଦେଖିଛି ସେମାନେ ସାଧୁ ସନ୍ଥ ମହାତ୍ମା ବୋଲାନ୍ତି, କିମ୍ବା ସେମାନେ ଗାଁ ଗହଳର ଅଶିକ୍ଷିତ ମଣିଷ । ସେମାନେ ଭିନ୍ନ ଶ୍ରେଣୀର, ଅଭିରାମ ବାବୁଙ୍କ ପରି ନୁହଁନ୍ତି ।

ତେଣୁ ମୁଁ ହଠାତ୍ ତାଙ୍କୁ ଆକ୍ରମଣ କଲି । ସେତେବେଳେ ଆମେ ଚୌରଙ୍ଗୀ ମଇଦାନରେ ଛିଡ଼ା ହୋଇଥିଲୁ । ଉପସ୍ଥିତ ସମସ୍ୟା ଥିଲା କେମିତି ଗୋଟିଏ ଟ୍ରାମ୍‌ରେ ଠାବ ମିଳିବ ଘରକୁ ଯିବାପାଇଁ । ଅଭିରାମ ବାବୁ ଆକାଶକୁ ଅନାଇ ବର୍ଷାର ଅନୁମାନ କରୁଥିଲେ । ମୁଁ ହଠାତ୍ ପଚାରିଲି, 'ଆପଣଙ୍କ ଭଗବାନଙ୍କ ଚେହେରା କେମିତି ?'

ସେ ଟିକିଏ ଆଶ୍ଚର୍ଯ୍ୟ ହୋଇ ମୋ ଆଡ଼କୁ ଅନାଇଲେ । ମୁଁ ମୋର ପ୍ରଶ୍ନକୁ ଉଦ୍‌ଘାଟିତ କରିଦେଲି, "ମାନେ ଆପଣ କେଉଁ ରୂପରେ ଭଗବାନଙ୍କୁ ଦେଖନ୍ତି ? ବାପା, ମାଆ, ପ୍ରିୟା, ବନ୍ଧୁ, ସନ୍ତାନ ନା ଆଉ କଣ ?"

ମୋ ପ୍ରଶ୍ନରେ ସାମାନ୍ୟ ବିଦ୍ରୂପ ଥିଲା ନିଶ୍ଚୟ । କିନ୍ତୁ ସେ ତାକୁ ଅସ୍ୱୀକାର କଲେ । ଖବର ଜଣାଇଲା ପରି ସହଜ ସ୍ୱରରେ କହିଲେ "ମୁଁ ଭଗବାନଙ୍କୁ ଦେଖେ ନାହିଁ । ମୁଁ ତାଙ୍କୁ ଅନୁଭବ କରେ ।" ଏହି ସମୟରେ ଅପେକ୍ଷିତ ଟ୍ରାମ୍ ଆସି ପହଞ୍ଚିଲା । ଓହ୍ଲାଇଥିବା ଲୋକ ବେଶି ନାହାନ୍ତି, ଜାଗା ମିଳିବାର ଆଶାରେ ଆମେ ଦୁଆରମୁହଁକୁ ଧାଇଁଲୁ ।

ଟ୍ରାମ ଭିତରେ ଖୁନ୍ଦାଖୁନ୍ଦି ହୋଇ ଛିଡ଼ା ହେବାର ସୁବିଧା ମିଳିଲା । ଗୋଟିଏ ହାତ ଉପରେ ରେଲିଂକୁ ମୁଠାଇଥିଲି, ଅପର ହାତ ବ୍ରିଫ୍ କେସ୍‌କୁ ସମ୍ଭାଳି ଥିଲି ଏବଂ ବିଳମ୍ବ-ଚଞ୍ଚଳ ଜନତା ମଧ୍ୟରେ ଦେହ କୌଣସିମତେ ସ୍ଥିର ରହିବାକୁ ଚେଷ୍ଟା କରୁଥିଲି । ଏହି ଅବସ୍ଥାରେ ଅଭିରାମ ବାବୁ ତାଙ୍କର ବକ୍ତବ୍ୟ ଶେଷ କଲେ । କହିଲେ, "ଅନୁଭବ କରେ ଅର୍ଥ କଣ ଜାଣନ୍ତି ? ମୁଁ ନିଜକୁ ପାଏ, ସମ୍ପୂର୍ଣ୍ଣରୂପରେ ପାଏ । ମନେ ହୁଏ ଯେ ମୋର କିଛି ଅଭାବ ନାହିଁ ।"

ଭିଡ଼ ଭିତରେ ଠେଲି ହୋଇ କଣ୍ଡକ୍ଟର ପଇସା ମାଗିଲା । ଅତିବ କ୍ଲେଶ ଓ ନିପୁଣତା ସହ ପଇସା କାଢ଼ି ଦେଲାବେଳକୁ ଦେଖିଲି ଯେ ଅଭିରାମ ବାବୁ ଅବିଚଳିତ ନିର୍ଲିପ୍ତ ଭାବେ ଛିଡ଼ା ହୋଇ ରହିଛନ୍ତି, କଣ୍ଡକ୍ଟର ପ୍ରତି ଭ୍ରୂକ୍ଷେପ ନାହିଁ । ଅଥଚ ସେ ଅକାରଣରେ ହସି ଉଠିଲେ । କହିଲେ, "ଗୋଟିଏ ମଜାକଥା ମନେ ପଡ଼ିଲା । ହଠାତ୍ ମୁଁ ପ୍ରାର୍ଥନାରେ ଆଖି ବୁଜିଥିଲି । ଆଖି ଖୋଲିଲା ବେଳକୁ ଦେଖେ ମୋ ଝିଅ ଇନ୍ଦୁ ମୋ ସାମନାରେ ବସି ଆଖି ବୁଜିଛି । ତା'ପରେ ସେ ଆଖି ଖୋଲିଲା ଓ

ମୋ ଆଡ଼କୁ ଅନାଇ ତା' ଖଣ୍ଡିଆ ଦାନ୍ତରେ ଟିକିଏ ହସିଦେଲା । ଆଉ କିଛି କଥା ନାହିଁ । ସତେ ଯେପରି ଆମେ ଦୁହେଁ ଗୋପନରେ କିଛି ପାଇ ପାରିଛୁ । ଆଉ କେହି ତାର ଭେଦ ଜାଣିବେ ନାହିଁ ।" ସେ ପୁଣି ହସିଲେ ଓ କହିଲେ "ଇନ୍ଦୂଟା ଚଗଲା । ସେ ମୋତେ ଚଢ଼ାଏ କିନ୍ତୁ ଘଣା ଭଲପାଏ ।"

ଯଥାକ୍ରମେ ସେ ଜାଣିପାରିଲେ ଯେ ସେ ଟ୍ରାମ୍ ଟିକେଟ୍ ପାଇଁ ପଇସା ଦେଇ ନାହାନ୍ତି ଓ ନିଜ ବିଷୟରେ ବେଶିଗୁଡ଼ାଏ ଗପି ଦେଇଛନ୍ତି । ତେଣୁ ସେ ପଇସା ଯାଚିଲେ, କ୍ଷମା ମାଗିଲେ ଓ ଦୀର୍ଘକାଳ ପାଇଁ ନୀରବ ହୋଇଗଲେ ।

ମୁଁ ତାଙ୍କୁ ମନେ ମନେ କହିଲି,—ଆପଣଙ୍କ ଦର୍ଶନ ଦୁର୍ବୋଧ ଓ କୁହୁଡ଼ିଆ । ମୁଁ ସେଥିରେ ବିଶ୍ୱାସ କରୁନାହିଁ । କିନ୍ତୁ ମୁଁ ଆପଣଙ୍କୁ କ୍ଷମା କରିପାରୁଛି କାହିଁକି ନା ଆପଣ ଆପଣଙ୍କର ଝିଅକୁ ଭଲ ପାଆନ୍ତି । ସେ ଯେ ରକ୍ତ ମାଂସର ପ୍ରାଣୀ, ଭଗବାନ୍ ନୁହେଁ ।

ମୁଁ ତାଙ୍କର ସେହି ଭଗ୍ନଦନ୍ତ ଚଗଲା ଝିଅଟିକୁ ଦେଖିବାର ଅପେକ୍ଷାରେ ରହିଲି ।

...... ତା' ନାଁ ଚନ୍ଦ୍ରିକା । ବୟସ ଦଶବର୍ଷ ଖଣ୍ଡେ ହେବ । ଉପର ଦାନ୍ତ ଗୋଟିଏ ଭାଙ୍ଗି ଯାଇଛି । ନାକ ଅଗ ମୂଳା ପରି ହୋଇ ସାମାନ୍ୟ ଉପରକୁ ଉଠିଛି, ନାକପୁଡ଼ା ବଡ଼ ବଡ଼ । ମୁଣ୍ଡର ପ୍ରଚୁର କଳାବାଳରେ ତେଲ ବୋଳା ହୋଇଛି ଓ ବାଳ ଉପରକୁ ଟଣା ହୋଇ କୁଣ୍ଡା ହୋଇଛି ଗାଉଁଲି ଝିଅଙ୍କ ପରି । ବେଣୀରେ ନାଲି ରିବନ ଓ ଗୋଟିଏ ଗେଣ୍ଡୁ ଫୁଲ ।

ସେ ଓ ମୋ ପୁଅ ପ୍ରଥମ ଦେଖାରେ ସାଙ୍ଗ ହୋଇଗଲେ । ଏପରି କି କିଛି ସମୟ ପରେ ପୁଅ ତା' ବେଣୀରୁ ଫୁଲ କାଢ଼ିନେବାର ସାହସ କରି ପାରିଲା ଓ ଇନ୍ଦୁ ଅଧା ହସ ଅଧା କାନ୍ଦର ବୈଚିତ୍ର୍ୟ ଦେଖାଇ ତା' ପଛରେ ଗୋଡ଼ାଇଲା । ଅଭିରାମ ବାବୁ ସପରିବାରେ ଆମ ଘରକୁ ଆସିଥାଆନ୍ତି । ଆମେ ଦୁହେଁ ଏହି ଦୃଶ୍ୟକୁ ଉପଭୋଗ କରୁଥିଲୁ । ମୁଁ ଅଭିରାମ ବାବୁଙ୍କୁ ପଚାରିଲି, "ତା ନାଁ ତ ଚନ୍ଦ୍ରିକା । ତାକୁ ଇନ୍ଦୁ ବୋଲି କାହିଁକି ଡାକୁଛନ୍ତି ?"

କିନ୍ତୁ ଏହି ପ୍ରଶ୍ନ ବୋଧହୁଏ ତାଙ୍କୁ ଅନେକେ ପଚାରିଥିବେ । କାହିଁକି ନା ସେ ଗୋଟିଏ ମୁଖସ୍ଥ ଗପ ଆରମ୍ଭ କରିବାର ବିଳାସରେ ସଜାଡ଼ି ହୋଇ ବସିଲେ ଓ କହିଲେ, "କଥା ହେଲା କଣ କି—ଜନ୍ମରୁ ତା' ମୁହଁ ଗୋଲ, ଫୁଲ୍‌କା ଗାଲ । ମୁଁ ଓ ତାର ମାଆ ଠିକ୍ କଲୁ ଯେ ତା' ନାଁ । ସମ୍ଭବତ ଜନ୍ମର ସମ୍ପର୍କ ଥିବା ଉଚିତ । ସେ ବାଛିଲା ଚନ୍ଦ୍ରିକା ଓ ମୁଁ ବାଛିଲି ଇନ୍ଦୁମଣି··· ।"

କଥାର ଅବଶିଷ୍ଟ ଅଂଶ ସହଜେ ଅନୁମେୟ । କିନ୍ତୁ ସେ ତାକୁ ବନେଇ ଚୁନେଇ ବଡ଼ କରି କହିଲେ ଯେପରି ସେ ଗୋଟିଏ ବିଶେଷ ରହସ୍ୟମୟ ଉପାଖ୍ୟାନ । କ୍ରମଶଃ ଆମର ଅନ୍ୟ ବିଷୟ ନେଇ କଥାବାର୍ତ୍ତା ହେଲା । ଅଭିରାମ ବାବୁ ତାଙ୍କର ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ । ସ୍ୱଳ୍ପଭାଷୀ ଶାନ୍ତିପ୍ରିୟ ଅଭିରାମବାବୁ, ପୃଥିବୀରେ ସବୁ ଭଲ, କାହାର କିଛି ଦୋଷ ନାହିଁ, ସରକାରଙ୍କ ନୀତିରେ ଭୁଲ୍ ନାହିଁ, ଲୋକମାନଙ୍କ ରାଗ ଅକାରଣ ନୁହେଁ କିନ୍ତୁ ସବୁ ଠିକ୍ ହୋଇଯିବ, ଅମୁକର ସ୍ୱଭାବ ପ୍ରକୃତରେ ମନ୍ଦ ନୁହେଁ, ବାହାରକୁ ସେମିତି ଜଣା ପଡ଼ୁଛି ଇତ୍ୟାଦି କ୍ଷୀଣ ପ୍ରତିବାଦ, ମୃଦୁ ହସ ଓ ସ୍ୱସ୍ତି ବାଣୀ ।

ଧାତ୍—ଏ ଲୋକଟାକୁ କଣ କେବେ କିଛି ବାଧେ ନାହିଁ ? ମୁଁ ବିଶ୍ୱାସ କରି ପାରିଲି ନାହିଁ ଏବଂ ଗୋଟିଏ ମୁହୂର୍ତ୍ତରେ ମୋ ମନରେ ହିଂସାର ଭାବ ଆସିଲା—ଅଭିରାମ ବାବୁ କଷ୍ଟ ପାଆନ୍ତେ କି ! ତାଙ୍କ ଜୀବନରେ ଏପରି କିଛି ଘଟନ୍ତା ଯେଉଁଥିରେ ସେ ବିକଳ ହୋଇ ଆକାଶକୁ ଡାକ ଛାଡ଼ନ୍ତେ, କହନ୍ତେ ଯେ ମୋତେ ଆଉ କନ୍ଦାଅ ନାହିଁ, କଷ୍ଟ ଦିଅ ନାହିଁ । ସେହି ଦିନଠୁଁ ସେ ବୁଝନ୍ତେ ।

ଯାହାହେଉ ସେ କ୍ଷଣକ ଭାବ କଟିଗଲା ଓ ମୁଁ ଲଜ୍ଜିତ ହେଲି । ଭାବିଲି ଯେ ସେ ଧାର୍ମିକ, ତେଣୁ ନିର୍ବୋଧ ଓ ଦୟନୀୟ ।

ଏଣେ ପିଲା ଦୁହିଁଙ୍କର ଖେଳ ସରୁ ନ ଥାଏ । କେତେବେଳେ ପୁଅ ଇନ୍ଦୁ ସାଙ୍ଗରେ ଗୋଡ଼ ମାଟିର ଘର ତିଆରି କରୁଥାଏ, ଭୁଲି-ଯାଉଥାଏ ଯେ ଏ ହେଉଛି ଝିଅମାନଙ୍କ ଖେଳ । ଆଉ କେତେବେଳେ ସେମାନେ ଫୁଟ୍‌ବଲ ଖେଳୁ ଥାଆନ୍ତି । ଇନ୍ଦୁକୁ ବୋଧହୁଏ ସେହି ବଡ଼ ରବର୍ ବଲ୍‌କୁ ଗୋଡ଼ରେ ମାରିବାକୁ ଭଲ ଲାଗୁଥାଏ । ସେ କ୍ଷଣ କ୍ଷଣକେ ବଲ୍‌କୁ କୁଆଡ଼େ ପିଟି ଦେଇ ପାଟି କରୁଥାଏ—ଗୋ···ଲ୍ !

ତାଙ୍କ ଖେଳ ସରିଲା ଏବଂ ସମାପ୍ତିରେ ବଜ୍ରବିଦ୍ୟୁତର ଚମକ ଥିଲା । ଇନ୍ଦୁର ଗୋଟିଏ ବେଗବାନ୍ ବଲ ପୁଅର ନାକରେ ବାଜିଲା ଓ ଇନ୍ଦୁ ବଡ ପାଟିରେ ହସି ଉଠିଲା । ଅପମାନରେ ଜର୍ଜରିତ ହୋଇ ପୁଅ ତତ୍‌କ୍ଷଣାତ୍ ଇନ୍ଦୁର କଣ୍ଢେଇ ଘରକୁ ଗୋଇଠା ମାରି ଭାଙ୍ଗିଦେଲା । ଫଳରେ ଦୁହେଁ ତମତମ ହୋଇ ଫେରି ଆସିଲେ ତାଙ୍କ ବାପାମାନଙ୍କ ପାଖକୁ—ରାଗ, ଅଭିମାନ ଓ ଅଭିଯୋଗର ଆଡ଼ମ୍ବର ନେଇ ।

କଣ କରିବାକୁ ହେବ ? ଯଥାବିଧି ସାନ୍ତ୍ୱନା ଓ ତିରସ୍କାର ଦେବାକୁ ହେଲା । ଅଭିରାମ ବାବୁ କେବଳ ଇନ୍ଦୁର ପିଠି ଥାପୁଡ଼ାଇ କହୁଥା'ନ୍ତି,—ଆଚ୍ଛା ହେଉ, ଆଚ୍ଛା ହେଉ । କିନ୍ତୁ ଦେଖାଗଲା ଯେ ଉପସ୍ଥିତ କ୍ଷେତ୍ରରେ ଅବସ୍ଥା ସୁଧୁରିବ ନାହିଁ । ଅଭିରାମ ବାବୁ ହଡ଼ ଦେଖିଲେ । ମୁଁ ଚଉକିରୁ ଉଠ ଉଠ ହେଲି ।

ଏହି ସମୟରେ ଆମ ଗଳିରେ ସେ ଡାକ ଡାକି ଗଲା—ପଦ୍ୟ ଓ ପ୍ରଲୋଭନର ଡାକ ।

ଖୋକା ଖେଲ୍‌ବେ······ଖୁକ୍କୀ ଖେଲବେ ।

ଖୋକା ଖେଲ୍‌ବେ···

ତା ସାଙ୍ଗକୁ କଣ୍ଢେଇ ପ୍ରାଣୀମାନଙ୍କର ବିଶୃଙ୍ଖଳ କେଁ କଟର କୁଁ କାଁ — । ପୁଅ କାନ ଡେରିଲା । ତା' ଗୃହାଣୀ ଉଜ୍ଜ୍ୱଳ ହୋଇ ଉଠିଲା । କଣ୍ଢେଇ ବାଲା ! କେତେଥର ସେ ଏହି ବାଟେ ଦେଇ ଯାଇଛି । ପୁଅ ଅଳି କରିଛି କିଣିବ ବୋଲି ଓ ମୁଁ ତାକୁ କହିଛି ଏ ଗୁଡ଼ାକ ବାଜେ ଜାପାନୀ କଣ୍ଢେଇ ବୋଲି, ଝିଅ ପିଲାଙ୍କ କଣ୍ଢେଇ ଇତ୍ୟାଦି । ଆଜି କିନ୍ତୁ ତା' ମୁହଁରେ ପାଇବାର ଆଗ୍ରହ । ସେ ଥରେ ମୋ ମୁହଁକୁ ଚାହୁଁଥାଏ, ଆଉ ଥରେ ଇନ୍ଦୁର ମୁହଁକୁ । ଆଜି ଖୋକା ଅଛି, ଖୁକୀ ମଧ୍ୟ ଅଛି । ଆଜି କଣ ବାପା ମନା କରିପାରିବେ ? ମନା କରିପାରିବେ ?

ମୋର ଇଙ୍ଗିତ ପାଇଲା ମାତ୍ରେ ଦାଣ୍ଡ ଦୁଆରେ ହାଜର । ତା ପଛେ ପଛେ କୁତୁହଳୀ ଇନ୍ଦୁ—ରାଗରୁଷା ଭୁଲି ଯାଇଛି ।

"ଘୋଡା ନେବୁ, ଘୋଡ଼ା ? ଦେଖ୍ କେମିତି ଲାଙ୍ଗୁଳ ହଲାଉଛି ?"

"ନାଇଁ ମୋର ଘୋଡ଼ା ଦରକାର ନାହିଁ, ମୁଁ ସେହି ଚଢ଼େଇ କ ନେବ, ନାଲ ଥଣ୍ଟ ।"

"ଏଇ ଦେଖ୍ ବେଙ୍ଗ ? ଇସ୍ ! ..."

ଯଥାକ୍ରମେ ମନପସନ୍ଦ୍ ପଶୁପକ୍ଷୀର ଦଳ ଆସିଲେ, କାନ ଅତଡ଼ା ପକାଇ । ପୁଅ ଝିଅ, ଖୋକା ଓ ଖୁକ୍କା ଉଭୟେ ଖୁସି । ଫେରିବା ବେଳକୁ ମୁଁ ଇନ୍ଦୁକୁ ପଚାରିଲି "ତୁ ପୁଣି କେବେ ଆମ ଘରକୁ ଆସିବୁ କହିଲୁ ?" ମାନମୟୀ ଗମ୍ଭୀରତାର ଭଙ୍ଗୀରେ କହିଲା "ସେ ଆଗ ଆସୁ ।" ତଥାସ୍ତୁ— ଏହି ଭାବରେ ପୁଅ ମୁଣ୍ଡ ଟୁଙ୍ଗାରିଲା । ସେ ଦୁହିଁଙ୍କ ମୁହଁରେ ହସ ଥିଲା ।

...କିନ୍ତୁ ଏହାପରେ ସେ ଦୁଇଜଣଙ୍କର ଆଉ ଦେଖା ହୋଇ ନାହିଁ । ମୋର ଅଭିରାମ ବାବୁଙ୍କ ସାଙ୍ଗରେ ପ୍ରାୟ ଦେଖାହୁଏ । କିନ୍ତୁ ପିଲାପିଲିଙ୍କୁ ନେଇ ତାଙ୍କ ଘରକୁ ଯାଇଁ ହେଲା ନାହିଁ । ପ୍ରଥମେ ମୋର ହେଲା । ତା'ପରେ ସେ ଖରାଦିନେ ଦୁଇମାସ ଛୁଟି ନେଇ ତାଙ୍କ ଗାଆଁକୁ ଗଲେ । ଛୁଟି ପୂରିବାକୁ ଦଶ ପନ୍ଦର ଦିନ ବାକି ଅଛି, ଦିନେ ଫୋନ୍ ଆସିଲା—ଅଭିରାମ ବାବୁଙ୍କ କୋମଳ ଅଚଞ୍ଚଳ ସ୍ୱର—"ନମସ୍କାର, ମୁଁ ଫେରି ଆସିଛି ।" କିଛି ସମୟ ଗପି ସାରିଲା ପରେ ସେ ଆନୁସଙ୍ଗିକ ଭାବରେ କହିଲେ ଯେ, ଇନ୍ଦୁର ଦେହ ଭଲ ରହୁ ନାହିଁ, ସେଇଥିପାଇଁ ଗାଁରୁ ଶୀଘ୍ର ଫେରି ଆସିଲେ ।

ମୁଁ ସେଦିନ ଅଫିସରୁ ତାଙ୍କ ଘରକୁ ଗଲି । ଅଭିରାମ ବାବୁ ଓ ତାଙ୍କ ସ୍ତ୍ରୀ ମୋତେ ସାଦର ଅଭ୍ୟର୍ଥନା କଲେ, ଗାଁରୁ ଆଣିଥିବା ବିଶିଷ୍ଟ ଲଡୁ ଖଜା ଇତ୍ୟାଦି ଖୁଆଇଲେ ଓ ମୁଁ କାହିଁକି ସ୍ତ୍ରୀ ପିଲାଙ୍କୁ ସାଙ୍ଗରେ ନେଇ ଆସିନାହିଁ ବୋଲି ଅଭିଯୋଗ କଲେ ।

ମୁଁ ଇନ୍ଦୁକୁ ଖୋଜିଲି । ଅଭିରାମ ବାବୁ କହିଲେ ଯେ ସେ ଶୋଇଛି, ତାକୁ ସାମାନ୍ୟ ଜ୍ୱର । ତାଙ୍କ ସ୍ତ୍ରୀ କହିଲେ, ତାକୁ ବରାବର ଏମିତି ଜ୍ୱର ହେଉଛି, ସେ ଭଲକରି ଗଣ୍ଡାଏ ଖାଉ ନାହିଁ, ଶୁଖି ଯାଉଛି, କଣ ହେଇଛି କେଜାଣି— । ଅଭିରାମ ବାବୁ ତାଙ୍କର ମୃଦୁ ଧାରାରେ ନା ନା କହିଲେ ଓ ହସିବାର ଚେଷ୍ଟା କଲେ । ଯେପରିକି ତାଙ୍କ ସ୍ତ୍ରୀଙ୍କର ସେପରି କହିବା ଭୁଲ୍ ହୋଇଛି । ସହାନୁଭୂତିର କର୍ତ୍ତବ୍ୟ ଅନ୍ୟ ଉପରେ ଲଦି ଦେବା ଉଚିତ୍ ହୋଇ ନାହିଁ ।

ଅଭିରାମ ବାବୁଙ୍କର ଏହି ପରିଭାବ ପସନ୍ଦ କରି ହେଲି ନାହିଁ । ଇନ୍ଦୁ କଣ ମୋ ଝିଅ ନୁହେଁ ? ମୁଁ ତାକୁ ଦେଖିବ ବୋଲି କହିଲି । ଝିଅ ବିଛଣାରେ ଶୋଇଥିଲି । ସେ ପ୍ରକୃତରେ ଶୁଖିଯାଇଛି । ମୁଁ ତା' କପାଳରେ ହାତ ବୁଲାଇ ଆଣିଲି । ବାପମାଆଙ୍କୁ ଆଶ୍ୱାସନା ଦେଲି ଯେ, ସେ ଶୀଘ୍ର ଭଲ ହୋଇଯିବ ।

କିନ୍ତୁ ସେ ଶୀଘ୍ର ଭଲ ହେଲି ନାହିଁ । ତା' ଦେହରୁ ଜ୍ୱର ଓହ୍ଲାଇଲା ନାହିଁ । କଲିକତାର ଡାକ୍ତର ପରୀକ୍ଷା କରି କହିଲେ, ତାକୁ ଟାଇଫଏଡ୍ । କହିଲେ ଯେ ତା'ସ୍ୱାସ୍ଥ୍ୟକୁ ଅନେକ ଗୋଳମାଳିଆ ରୋଗ ଦେଖାଦେଲାଣି, କିନ୍ତୁ କିଛି ଚିନ୍ତା ନାହିଁ ।

ତଥାପି ଅଭିରାମ ବାବୁଙ୍କ ବ୍ୟବହାରରେ କୌଣସି ପରିବର୍ତ୍ତନ ହୋଇଛି ବୋଲି ମନେ ହେଉ ନାହିଁ । ସେ ନିୟମିତ ଭାବରେ ଅଫିସକୁ ଆସୁଛନ୍ତି, କ୍ୟାଣ୍ଟିନ୍‌ରେ ଜଳଖିଆ ଖାଉଛନ୍ତି, ଦେଶ ବିଦେଶର ଆଲୋଚନା କରୁଛନ୍ତି, ଏବଂ ସମୟ ଅସମୟରେ ତନ୍ମୟ ହୋଇ ଯାଉଛନ୍ତି । ଇନ୍ଦୁର ରୋଗଶେଯରେ ଇନ୍ଦୁର ମାଆ ଆଖି ଛଳ ଛଳ କଲାବେଳେ ସେ ଝିଅର ମୁହଁକୁ ଚାହିଁ ପିଲାଙ୍କ ପରି ହସୁଛନ୍ତି । ପୁଚୁକାଗାଲି ଇନ୍ଦୁ—ତା' ଦେହ ଶୁଖି କଣ୍ଟା ହୋଇଗଲାଣି; କିନ୍ତୁ ଗାଲର ଚହଲ ଭାଙ୍ଗି ନାହିଁ । ତା'ର ପୁଷ୍ଟ-ପୂର୍ଣ୍ଣ ହସର ଉତ୍ତର ଦେଉଛି, ଯେପରି କି ବାପ ଝିଅ ଗୋଟିଏ ଦୁଇଜଣିଆ ଅନ୍ତରଙ୍ଗ ଖେଳ ଖେଳୁଛନ୍ତି । ପ୍ରାର୍ଥନାରେ ଏକାଠି ଆଖିବୁଜି ସାରି ପରସ୍ପରକୁ ଦେଖିଲା ପରି,—ଚୁପଚାପ୍, ଆମେ ଜାଣିଛୁ, ଏକା ଆମେ । ମାଆ କେଉଁଠୁ ବୁଝିବ ?

ଏହି ଆତ୍ମୀୟତାରେ ବିଷାଦ ଅଛି, ସହସ୍ରବାର ଅଛି । କିନ୍ତୁ ଏପରି ଦୃଶ୍ୟ ଦେଖି ମୋର ମନେ ହୁଏ ଯେ, ଏ ବାପଝିଅ ସୃଷ୍ଟିଛଡ଼ା, ଏମାନଙ୍କ ଦୁଃଖରେ କିଛି ଅଧିକ ଗୁଣ ବା ଦୋଷ ଅଛି, ଯାହା ଆମ ଅନୁଭୂତିର ବାହାରେ । ସତେ ଯେପରି ଏମାନଙ୍କ ଦୁଃଖ ଏତେ ଗଭୀର ଓ ବିଶ୍ୱରୂପୀ ଯେ, ତାକୁ ଦୁଃଖ ବୋଲି କହି ହେବ ନାହିଁ । ସୁନୀଳ ନିସ୍ତଳ ମହାସାଗର । ତା'ର ଆନନ୍ଦ ନାହିଁ କି ଶୋକ ନାହିଁ । କେବଳ ଅଛି ଗୋଟିଏ ଚିରନ୍ତନ ବିଷାଦ । ସେହି ତାର ଉପଲବ୍ଧି ଓ ପ୍ରଶାନ୍ତି ।

ବୋଧହୁଏ ସେଥିପାଇଁ ଅଭିରାମ ବାବୁଙ୍କର ଆଖିରେ ପଡ଼ୁନାହିଁ । କେଜାଣି ?

ତେବେ ମୁଁ ଅଭିରାମ ବାବୁଙ୍କ ସ୍ତ୍ରୀଙ୍କୁ ପ୍ରବୋଧନା ଦେଇ ପାରୁଥିଲି । ଦିନେ ସେ କହିଲେ "ଡାକ୍ତର କହୁଛି ଯେ, ବାରଅଣା ଆଶା ଇନ୍ଦୁ ଭଲ ହୋଇଯିବ !" ମୁଁ ତାଙ୍କ ଆଶାରେ ମୋର ଆଶୀଷ ଦେଇ କହିଲି, "ସେ ନିଶ୍ଚୟ ଭଲ ହୋଇଯିବ । ବାକି ଚାରିଅଣା ଆମର ପ୍ରାର୍ଥନା ।" ସେ ମୋ ଆଡ଼କୁ ଜଳଜଳ ହୋଇ ଚାହିଁଲେ । ମୁଁ ତାଙ୍କୁ ବୁଝାଇ ପାରିଲି ନାହିଁ ଯେ ମୁଁ ଭଗବାନଙ୍କ କଥା କହୁ ନାହିଁ । ପ୍ରାର୍ଥନାର ଅର୍ଥ ମଣିଷର ଇଚ୍ଛା ଓ ଆକୁଳତା । ତାର କଣ କିଛି ମୂଲ୍ୟ ନାହିଁ ?

···ହଠାତ୍ ମୋ ପୁଅ ସବୁ ଓଲଟପାଲଟ କରିଦେଲା । ତାକୁ ଜ୍ୱର ହେଲା । ତାର ଦୁଇ ଦିନ ପରେ ତା ଦେହଯାକ ଫୋଟକା ବାହାରିଲା । ଡାକ୍ତର ନିଃସନ୍ଦେହରେ କହିଲେ ଯେ ଏ ହେଉଛି ବସନ୍ତ, ଏହିକ୍ଷଣି ସହରର ଚାରିଆଡ଼େ ଲାଗିଛି ।

ମୁଁ ପ୍ରଥମେ ଯେତେବେଳେ ଅଭିରାମ ବାବୁଙ୍କୁ ଏହି ଖବର ଦେଲି, ମୋ ମନରେ ଗୋଟିଏ ବିକୃତ ଗାରିମା ଥିଲା । ମୋତେ ମଧ୍ୟ ଟ୍ରାଜେଡ଼ି ଛୁଇଁଛି—ମୋତେ ସମ୍ମାନ ଦିଅ, ସହାନୁଭୂତି ଦିଅ । ମୁଁ ଅଭିରାମ ବାବୁଙ୍କୁ କ୍ଷମା ମାଗିଲି ଯେ ମୁଁ ତାଙ୍କ ଘରକୁ ଯାଇପାରିବି ନାହିଁ ଓ ତାଙ୍କୁ ମୋ ଘରକୁ ଆସିବାକୁ ବାରଣ କଲି ।

କିନ୍ତୁ ଅଳ୍ପଦିନ ମଧ୍ୟରେ ପୁଅର ଅବସ୍ଥା ସାଂଘାତିକ ହୋଇ ଉଠିଲା । ଟ୍ରାଜେଡ଼ିର ଜରିଖୋଳ ଫିଙ୍ଗିଦେଇ ମୁଁ ତାର କଷ୍ଟକୁ ଦେଖିଲି । ଜୀବନ୍ତ ଦେହରେ କଷ୍ଟ । ତା ଦେହଯାକ ଘାଆ ହୋଇ ଯାଇଛି । ସେ କାନ୍ଦୁଛି । ସେହି ଭୟାନକ ରୋଗର ରାକ୍ଷସ ତାକୁ କଲବଲ କରୁଛି । ତା' ଦେହରେ ଛୁଞ୍ଚି ଫୋଡ଼ି ଦେଉଛି । ତା' ଦେହକୁ ରନ୍ଧନିଆଁରେ ପୋଡୁଛି ।

ମୁଁ ତା' ପାଖରେ ବସି ତା'କୁ ଖୁସି କରିବାକୁ ଚାହିଁଲି, ଅଭିରାମ ବାବୁ ଯେମିତି କରନ୍ତି । ତା'ର ମାଆକୁ ସାନ୍ତ୍ୱନା ଦେଲି; କିନ୍ତୁ ମୁଁ ମୋର ଅସ୍ଥିରତାକୁ ସମ୍ଭାଳି ପାରିଲି ନାହିଁ । ମୋର ଇଚ୍ଛା ହେଲା କିଛି ଗୋଟାଏ କରନ୍ତି, କିଛି ଗଢ଼ନ୍ତି ବା ଭାଙ୍ଗି ଦିଅନ୍ତି । ଯେଉଁଥିରେ ନିଜ ଉପରେ ବିଶ୍ୱାସ ଆସନ୍ତା ଓ ସେହି ବିଶ୍ୱାସକୁ ମୋ ପୁଅର ବେଦନାଭରା

ମୁହଁରେ ମାଖି ଦିଅନ୍ତି, ଯେଉଁଥିରେ ତା'ର ବଞ୍ଚିବା-ମରିବାରେ ମୂଲ୍ୟ ଆସନ୍ତା

ଦିନେ ମୁଁ ତା' ମୁହାଣୀରେ ମରିବାର ଛାଇ ଦେଖିଲି । ଡାକ୍ତରଙ୍କୁ ପଚାରି କିଛି ଲାଭ ନାହିଁ । ସେ ମହାତ୍ମାମା ପରି କେବଳ ମୁଣ୍ଡ ହଲାଇବ —ଦେଖିବା ଅପେକ୍ଷା କରି । ସେଦିନ ରାତିରେ ମୁଁ ଆଲୁଅ, ଘରର ଅସଂଖ୍ୟ ଔଷଧ ଶିଶି, ମାଆର ଅସରନ୍ତି କାନ୍ଦଣା, କମଳା ଚୋପା, ଡାଳିମ୍ବ ମଞ୍ଜିର ପ୍ରଚୁରତା, ନିମ୍ବ ପତ୍ରର ଉତ୍କଟ ବାସ୍ନାକୁ ସହିପାରିଲି ନାହିଁ । ଜୀବନକୁ ବଢ଼ାଇବାର ସେହି ତୀବ୍ର ପ୍ରଜ୍ୱଳନ ମୋ ଆଖିକୁ ବିନ୍ଧିଲା । କାହିଁକି ଏହି ନିଷ୍ଠୁର ଅନାବଶ୍ୟକତା ? ଯେ ମରିବ ସେ ବଞ୍ଚୁଛି କାହିଁକି ? ଯେ ବଞ୍ଚିଛି ସେ ମରିବ କାହିଁକି ?

ମୁଁ ଏକୁଟିଆ ହେବାପାଇଁ ଛାତ ଉପରକୁ ଚାଲିଗଲି । ତାରାଖଚିତ ଆକାଶକୁ ଦେଖିଲି । ପୃଥିବୀରେ ମୋର ସାଙ୍ଗ ମଣିଷମାନଙ୍କୁ ଦେଖିଲି । କିଏ ତାର ଗ୍ୟାରେଜରେ କାର୍ ଭିତରକୁ ଟର୍ଚ୍ଚ ପକାଇ କଣ ଦେଖୁଛି । ମୂଲ୍ୟବାନ୍ ଅନୁସନ୍ଧାନ ! ସେ ମୋ ପୁଅ ବୟସରେ କିଛି ଜାଣେ ନାହିଁ କି ଜାଣିବାକୁ ଚାହେଁନାହିଁ । ଆଉ କାହାର କାଚ ଝରକା ଭିତରୁ ଗପ ଓ ହସର ଦୃଶ୍ୟ ଦେଖାଯାଉଛି । ରାସ୍ତାରେ ଗୋଟିଏ ଭଙ୍ଗା ଶଗଡ଼ ଗାଡ଼ିକୁ ଦୁଇଜଣ ଟାଣି ଟାଣି ନେଉଛନ୍ତି । ପୋଲିସ୍-ବ୍ୟାରାକ୍ର ଫାଟକରେ ଜଣେ ପହରାବାଲା ଉପରକୁ ଅନାଇ ତାରା ଗଣୁଛି ।

ପ୍ରାର୍ଥନା ? ଅସହାୟର ପ୍ରାର୍ଥନା ! ତାହାହେଲେ ମୁଁ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ—ଯେଉଁ ଦୁର୍ବଳ ପ୍ରାଣୀମାନେ ବୁଦ୍ଧିରେ ଭଗବାନଙ୍କୁ ଉଡ଼ାଇ ଦିଅନ୍ତି, କିନ୍ତୁ ଏକୁଟିଆ ଭୂତ ଦେଖି ପରମ ପିତାଙ୍କ ଶରଣ ପଶନ୍ତି । ମୁଁ ନିଜକୁ ସଂଯତ କଲି । ପ୍ରାର୍ଥନାର ଲୋଭକୁ ଦମନ କଲି ଏବଂ ସେଥିସହ ଅଭିରାମ ବାବୁ ମନେ ପଡ଼ିଲେ । ଅଭିରାମ ବାବୁ ଓ ଇନ୍ଦୁ । ଅଭିରାମ ବାବୁ ମୋ ପରି କଷ୍ଟ ପାଉ ନାହାନ୍ତି, କାରଣ ସେ ଗୋଟିଏ ମିଛ ଧାରଣାରେ ନିଜକୁ ଲୁଚାଇ ରଖିଛନ୍ତି ।

ସେହିଠୁଁ ମୋ ମନରେ ଆସିଲା ଯେ— । ମୋ ମନରେ ଆସିଲା ଜଣେ କେହି ମରିବ । ଜଣେ ମରିଲେ ଅନ୍ୟ ଜଣକ ବଞ୍ଚି ଉଠିବ ।

ମୋର ଇଚ୍ଛା ପୂରଣ ନୁହେଁ । ଏ ମୋର ପ୍ରାର୍ଥନା ନୁହେଁ, କାମନା ନୁହେଁ । ମୋର କଣ ତାଙ୍କ ଉପରେ ଅହନ୍ତା ଥିଲ ? ନା ମୁଁ ଇନ୍ଦୁକୁ ଭଲ ପାଏ ନାହିଁ ? କିନ୍ତୁ ମୋର ବିଶ୍ୱାସ ହେଲି ଯେ ମୋ ପୁଅ ବଞ୍ଚି ଉଠିବ । ଇନ୍ଦୁ ମରିବ । କାହିଁକି ନା ଅଭିରାମ ବାବୁ ଧାର୍ମିକ, ତାଙ୍କୁ କିଛି ବାଧିବ ନାହିଁ । ସେମିତି ହେବା ଉଚିତ ।

ଏହି ସମୟରେ କାଚ ଝରକା ଭିତରର ଲୋକମାନେ ବୋଧହୁଏ ବେଶୀ ଜୋରରେ ହସି ଉଠିଲେ । ରାସ୍ତାଘାଟ ଘର ବାହାରରେ ଥିବା ମୋର ପଡ଼ୋଶୀମାନେ ଅଧିକ ଚଞ୍ଚଳ ହେଲପରି ମନେ ହେଲେ । ଚଞ୍ଚଳ ଓ ସମ୍ଭ୍ରମଶୀଳ । ଏପରିକି ମୋତେ ଲାଗିଲି ଯେ ଏହି ଧାଉଁଥିବା କାର୍ ସବୁ ଓ ଏକୁଟିଆ ପୋଲିସ ପ୍ରହରୀ ଏକାଠି ଅଛନ୍ତି,—ଅଭିନ୍ନ, ଗୋଟିଏ ସମ୍ପୂର୍ଣ୍ଣ ଗୀତିକାବ୍ୟର ପଦେ ପଦେ । କେବଳ ମୁଁ ସେଠି ନାହିଁ, ମୁଁ ଅପର ବ୍ୟକ୍ତି, ବିଧର୍ମୀ ।

ପଳାଇ ଆସିଲି ପରି ମୁଁ ତରବର ହୋଇ ଫେରିଲି ମୋର ସ୍ତ୍ରୀ ପିଲାଙ୍କ ପାଖକୁ । ମୁଁ ମୋ ପୁଅ ପାଖରେ ବସିଲି ଖଟ ଉପରେ । ଖଟର ଆର ପାଖରୁ ତା'ର ମାଆ କ୍ଲାନ୍ତ ଗୃହୀଣୀରେ ମୋ ଆଡ଼କୁ ଅନାଇଲେ । କହିଲେ "କୁଆଡ଼େ ଯାଇଥିଲ ? ଫୋନ୍ ଆସିଥିଲି ଏହି-କ୍ଷଣି । ଅଭିରାମ ବାବୁ ।"

"କଣ କହିଲେ ?"

ମୋର ଆଶଙ୍କା ଓ ଉଦ୍‌ବେଗ ତାଙ୍କ ପାଖରେ ପହଞ୍ଚି ପାରିଲି ନାହିଁ । ସେ ପୂର୍ବବତ୍ ନିଷ୍କ୍ରିୟ ଓ ବିରକ୍ତ ଭଙ୍ଗୀରେ କହିଲେ, "କିଛି ନାହିଁ । ପୁଅ କଥା ପଚାରୁଥିଲେ । ଆଉ କହିଲେ ଯେ ଇନ୍ଦୁର ଅବସ୍ଥା ପୁଣି ଖରାପ ଆଡ଼କୁ ଯାଉଛି ।"

ମୋର ଆଉ ବିଶେଷ କିଛି କହିବାର ନାହିଁ । ଇନ୍ଦୁର ଶେଷ ଦିନ ମୁଁ ଯାଇପାରିଲି ନାହିଁ । ମୋ ସ୍ତ୍ରୀ ଯାଇଥିଲେ । ସେ କହିଲେ ଯେ, ଅଭିରାମ ବାବୁ କାନ୍ଦିଥିଲେ କି ନାହିଁ ଜାଣି ହେଲି ନାହିଁ । ତେବେ ସେ କୁଆଡ଼େ କେତେ ସମୟ ଗୋଟିଏ ଘରେ କବାଟ ବନ୍ଦକରି ଏକୁଟିଆ

ରହୁଥିଲେ । ସେଠୁ ବାହାରିଲା ବେଳକୁ ତାଙ୍କ ଆଖିରେ ଲୁହର ଚିହ୍ନମାତ୍ର ନ ଥିଲା । ସେ ଦେଖାଯାଉଥିଲେ ସବୁଦିନ ପରି ।

ମୁଁ ଠିକ୍ ଭାବିଥିଲି । ତେଣୁ ମୋର ଅନୁଶୋଚନାର କୌଣସି କାରଣ ନାହିଁ । କିନ୍ତୁ କେହି ଜଣ ମନେ କରୁଛି ଯେ, ଏ ମୋର ଦୁଃଖ ନୁହେଁ, ଦୁଃଖର ବିଳାସ ? ଆପଣା ସୁଖ ସହି ନ ପାରିବାର ଛଳନା ? ଏହିକ୍ଷଣି ସେ ଏ ବାଟେ ଡାକି ଡାକି ଆସିବ । କିମ୍ବା ହୁଏତ ନ ଆସି ପାରେ । ହେଲେ ତାର ସ୍ୱର ମୋତେ ଶୁଭି ଯାଉଛି, ଛଟପଟ କରୁଛି, —ଖୋକା ଖେଲ୍‌ବେ···ଖୁକ୍କା ଖେଲ୍‌ବେ ।

ମୁଁ ତା'ଠୁ କିଛି ହେଲେ କିଣି ନାହିଁ କି କିଣିବି ନାହିଁ ।



# ଅବତାର



ପଞ୍ଜାବୀ କାହାଣୀ—**କୁଲୱନ୍ତ ସିଂହ ବାର୍କ**

ଅନୁବାଦ—**ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର**

ଅମୃତସରଠାରୁ ତାଙ୍କ ଗାଁ ବେଶୀ ଦୂର ବାଟ ନୁହେଁ । ତାହା ଗୋଟିଏ ପକ୍କା ରାସ୍ତାର ପାର୍ଶ୍ୱରେ ଅତି ସୁବିଧାଜନକ ସ୍ଥାନରେ ଅବସ୍ଥିତ । ସେ ଯାହା ହେଉ ମାନସିଂ ମନରେ ଉତ୍ସାହ ଏବଂ ବିଶେଷ ସ୍ଫୂର୍ତ୍ତି । ଏମିତି ଅବସ୍ଥାରେ ରାସ୍ତା ଯେତେ ଦୂର ହେଲେ ମଧ୍ୟ ଆଦୌ ଜଣା ପଡ଼େ ନାହିଁ । ଅବଶ୍ୟ ସନ୍ଧ୍ୟାର ଛାୟା କ୍ରମଶଃ ଚତୁର୍ଦ୍ଦିଗରେ ଖେଳିଯାଉଥିଲା ଏବଂ ଟାଙ୍ଗା ଟାଣୁଥିବା ଟଟ୍ଟୁଘୋଡ଼ାଗୁଡ଼ାକ ରାସ୍ତାରେ କ୍ଲାନ୍ତଭାବରେ ପାଦ ପକାଉଥିଲେ । ତଥାପି ମାନସିଂ ମନରେ ଆଦୌ ଶଙ୍କା ନ ଥିଲା । ମାନସିଂ ସୈନ୍ୟ ବିଭାଗରେ ଚାକିରି କରେ । ବର୍ତ୍ତମାନ ସେ ଛୁଟିରେ ଅଛି । ସେ ତାର ବନ୍ଧୁ କରମସିଂର ଗାଆଁକୁ ଯାଉଥିଲା । ସୈନ୍ୟ ବିଭାଗରେ ସହକର୍ମୀମାନଙ୍କ ମଧ୍ୟରେ ବନ୍ଧୁତା ସବୁଠାରୁ ଦୃଢ଼ ହୋଇଥାଏ ଏବଂ ଏପରି ପ୍ରଗାଢ଼ ବନ୍ଧୁତା ଆଉ କେଉଁଠାରେ ଦେଖାଯାଏ ନାହିଁ । ମାନସିଂ ଏବଂ କରମସିଂ ଏକତ୍ର ଏକ ସୈନ୍ୟ ବିଭାଗରେ ଚାକିରି କରୁଥିଲେ । ବର୍ତ୍ତମାନ ମଧ୍ୟ ବର୍ମା ସୀମାରେ ଏକତ୍ର ଅବସ୍ଥାପିତ ହୋଇଛନ୍ତି । କରମ୍‌ସିଂଙ୍କର ଚାକିରି ବେଶୀଦିନ ହୋଇଥିବାରୁ ସେ ବର୍ତ୍ତମାନ ହାବିଲ-ଦାର ପାହ୍ୱାଆକୁ ଯାଇପାରିଛନ୍ତି । କିନ୍ତୁ ମାନସିଂ ବର୍ତ୍ତମାନ ଜଣେ ନାୟକ ମାତ୍ର ।

ଗାଆଁ ଲୋକେ ବରାବର କରମ୍‌ସିଂର ବାପାଙ୍କୁ, ପୁଅକୁ କେବେ ଛୁଟି ମିଳିବ ବୋଲି ପଚାରୁଥିଲେ । କରମ୍‌ସିଂ ବନ୍ଧୁ ହିସାବରେ ଜଣେ ବଡ଼ ମିଳାପୀ ସଦାପ୍ରୟ ବ୍ୟକ୍ତି ଥିଲେ । ତାଙ୍କର କଥାବାର୍ତ୍ତା ବେଶ୍ ଖୁସି

ଲାଗୁଥିଲା । ତେଣୁ ତାଙ୍କଠାରୁ ଯୁଦ୍ଧ ଏବଂ ଯୁଦ୍ଧଭୂଇଁର ଗଳ୍ପ ଶୁଣିବାପାଇଁ ଲୋକମାନେ ବରାବର ଇଚ୍ଛା କରୁଥିଲେ । କରମ୍‌ସିଂ ଛଡ଼ା ତାଙ୍କ ଗାଆଁର ଅନ୍ୟ କେତେକ ଯୁବକ ମଧ୍ୟ ଯୁଦ୍ଧବିଭାଗରେ ଚାକିରି କରୁଥିଲେ । କିନ୍ତୁ ସେମାନେ ଯେତେବେଳେ ଛୁଟିରେ ଗାଆଁକୁ ଆସନ୍ତି, ସେମାନେ ଗାଆଁ-ବାଲାଙ୍କ ସହିତ କିଣ କଥାବାର୍ତ୍ତା କରିବେ, କି ଚର୍ଚ୍ଚା କରିବେ, ତାହା ସେମାନଙ୍କୁ ଜଣା ନ ଥିଲା । ସେମାନଙ୍କ ମଧ୍ୟରୁ ହୁଏତ ଅନେକ ଗାଆଁ-ବାଲାଙ୍କୁ ଦେଖିଲେ କେବଳ ଦଣ୍ଡବତଟାଏ କରିବା ଛଡ଼ା ଅନ୍ୟ କିଛି କଥାବାର୍ତ୍ତା କରୁ ନ ଥିଲେ । ମାତ୍ର କରମ୍‌ସିଂର କଥା ସ୍ୱତନ୍ତ୍ର । ସେ ଯେତେବେଳେ ଗାଆଁକୁ ଆସେ, ସେତେବେଳେ ଲୋକମାନେ ସକାଳ-ବେଳା କୂଅ ନିକଟରେ ମେଳା ବାନ୍ଧି ତା ସହିତ ଗପସପ କରନ୍ତି । ଏପରି ମଧ୍ୟ କେହି କେହି ଗପସପ କରୁକରୁ ଗାଧୋଇବା ଭୁଲିଯାଆନ୍ତି । ଶୀତଦିନ ରାତିରେ ମଧ୍ୟ ଗାଆଁ ଲୋକମାନେ ଅଧରାତି ପର୍ଯ୍ୟନ୍ତ ଗ୍ରାମଦାଣ୍ଡରେ ନିଆଁ ପୋଉଥାନ୍ତି ଏବଂ କରମ୍‌ସିଂଠାରୁ ଯେ ଗପ ଶୁଣୁଥାନ୍ତି ତାର କଳନା ନାହିଁ । ଏହିପରି କରମ୍‌ସିଂର ଉପସ୍ଥିତି ଯୋଗୁଁ ଆଲୋଚନାଟା ସରଗରମ ହୁଏ ।

ସୈନ୍ୟବିଭାଗରେ ତାଙ୍କ ନିଜ ଦଳରେ ବନ୍ଧୁକ ମାରିବା ପ୍ରତି-ଯୋଗିତାରେ କରମ୍‌ସିଂ ଏପରି ଦକ୍ଷହସ୍ତ ଥିଲା ଯେ, ସେ ଯେଉଁଠିକି ଲକ୍ଷ୍ୟ କରି ଗୁଳି ମାରୁଥିଲା, ତାହା ଅବ୍ୟର୍ଥଭାବରେ ବିଦ୍ଧ ହେଉଥିଲା । ତାର ଲକ୍ଷ୍ୟଭେଦ ଦେଖିଲେ ମନେ ହୁଏ ସତେ ଅବା କେହି ଛୁଞ୍ଚିରେ ବିନ୍ଧି କରିଦେଇଛି । ଯୁଦ୍ଧ ସମୟରେ ବହୁ ଜାପାନୀ ସୈନ୍ୟ ବୃକ୍ଷ ଆଢୁଆଳରେ ଲୁଚି ରହିଥାନ୍ତି । କିନ୍ତୁ କରମ୍‌ସିଂର ଗୁଳି ସେମାନଙ୍କୁ ଧ୍ୱସ୍ତ-ବିଧ୍ୱସ୍ତ କରିଦିଏ । ଏହିପରି କରମ୍‌ସିଂ ନିଜ ବନ୍ଧୁମାନଙ୍କର ହତ୍ୟା ନିମିତ୍ତ ବହୁ ଜାପାନୀ ସୈନ୍ୟଙ୍କ ଉପରେ ପ୍ରତିଶୋଧ ନେଇଥିବ । ଫଳରେ କେତେ ଅଶାନ୍ତ ହୃଦୟ ଶାନ୍ତ ହୋଇଥିବ । ଯେଉଁଠି ମେସିନ୍‌ଗନ୍ ହାର ମାନିଯାଏ ଏବଂ ଲକ୍ଷ୍ୟ ହାସଲ କରି ନ ପାରେ, ସେଠି କରମ୍‌ସିଂର ଗୋଟାଏ ଗୁଳି ମଧ୍ୟ ଯଥେଷ୍ଟ । ଯଦ୍ୟପି ତାହାର ଅଙ୍ଗପ୍ରତ୍ୟଙ୍ଗରୁ ବର୍ତ୍ତମାନ ଯୌବନର ଦୃଢ଼ ଶକ୍ତି କମିଆସିଲାଣି, ତଥାପି ତାହାର ବିଭିନ୍ନ ପ୍ରକାର କୁସ୍ତି କସରତ ଦେଖିଲେ ଲୋକେ ଆଶ୍ଚର୍ଯ୍ୟ ହୋଇଯାଆନ୍ତି ।

ଯୁଦ୍ଧ ସମୟରେ କୁସ୍ତିକସରତ, କ୍ରୀଡ଼ା ଏବଂ ବ୍ୟାୟାମ ପ୍ରଭୃତି ଚାଲୁ ହୁଏ ନାହିଁ । ସୈନ୍ୟମାନଙ୍କୁ କଠିନ ପରେଡ୍ କରିବାକୁ ପଡ଼େ ନ ଥାଏ । ନିକଟରେ ହାଟ ବଜାର ମଧ୍ୟ ନ ଥାଏ, ଯେଉଁଠାରେ କି ଜଣେ ଯାଇ ଟିକିଏ ବୁଲିଆସିବ । କେହି କାହା ପାଖକୁ ଯିବାଆସିବା କରୁ ନ ଥିଲେ । ତେଣୁ ବର୍ତ୍ତମାନ ଯେତେବେଳେ ମାନସିଂର ଛୁଟିରେ ଗାଆଁକୁ ଯିବାର ପାଳି ପଡ଼ିଲା, ସେତେବେଳେ କରମ୍‌ସିଂ ମନରେ କେମିତି ଗୋଟାଏ ଈର୍ଷା ଜାତ ହୋଇଥିଲା । ସେ ମଧ୍ୟ ଇଚ୍ଛା କଲା, ତାକୁ ଛୁଟି ମିଳିଥାନ୍ତା କି, ତାହାହେଲେ ସେମାନେ ଏକସଙ୍ଗରେ ଗାଆଁକୁ ଯାଇ-ପାରନ୍ତେ ଏବଂ ଛୁଟିଟା ଆରାମରେ ଅତିବାହିତ ହୁଅନ୍ତା । ନୂରିକଣା ମଧ୍ୟ ଅମୃତସରଠାରୁ ବେଶୀ ଦୂର ନୁହେଁ । ଏ ଦୁଇଟି ମଧ୍ୟରେ ବ୍ୟବଧାନ ହେଉଛି ମୋଟେ ପଚିଶ ମାଇଲ । ଅବଶ୍ୟ ଗୋଟିଏ ଅଞ୍ଚଳର ନାମ 'ମାଝା' ଏବଂ ଅନ୍ୟ ଅଞ୍ଚଳଟିର ନାମ 'ବରି' । ଗୋଟିଏ ଅତ୍ୟନ୍ତ ପ୍ରାଚୀନ—ଅନ୍ୟଟି ଆଧୁନିକ । ଗୋଟିକର ପ୍ରାଚୀନ ଐତିହ୍ୟ ଯଥେଷ୍ଟ ବେଶୀ, ଅନ୍ୟଟିର ଆଧୁନିକ ପରିବେଶ ବେଶ୍ ପରିଦୃଷ୍ଟ ହୁଏ ।

କିନ୍ତୁ ଯୁଦ୍ଧ ସମୟରେ ଛୁଟି ପାଇବା ବଡ଼ ମୁସ୍କିଲ । କେବଳ ଜଣେ ସୈନିକ ଭାଗ୍ୟବାନ୍ ହୋଇଥିଲେ ଛୁଟି ମିଳିଯାଏ—ଠିକ୍ ଯେପରି ଯୁଦ୍ଧ-ଭୂଇଁରେ ସାହସ ଓ ବୀରତ୍ୱ ପ୍ରଦର୍ଶନ କରିବା ସୁଯୋଗ କେବଳ ଭାଗ୍ୟ-ବାନଙ୍କ ପକ୍ଷରେ ଜୁଟିଥାଏ । ମାନସିଂ ଯେତେବେଳେ ମିଲିଟାରୀ ଟ୍ରକରେ ବସିଲା, ସେତେବେଳେ କରମ୍‌ସିଂ ତାକୁ ବିଦାୟ ଦେବାପାଇଁ ଆସିଥିଲା । ସେ ସେତେବେଳେ ତାକୁ କହିଲା, "ଭାଇ, ତୁ ଫେରିବା ପୂର୍ବରୁ ଆମ ଗାଆଁକୁ ନିଶ୍ଚୟ ଯିବୁ ଏବଂ ମୋର ଘର ଲୋକଙ୍କୁ ଦେଖିଆସିବୁ । ତୋତେ ଦେଖିଲେ ସେମାନେ ଭାରି ଖୁସି ହୋଇଯିବେ । ତୁ ମୋ କଥା ତାଙ୍କୁ ସବୁ କହିବୁ । ସେମାନେ ତୋତେ ଦେଖି ମୋତେ ଦେଖିଲାଭଳି ଅନୁଭବ କରିବେ ଏବଂ ତାପରେ ମୁଁ ଯେତେବେଳେ ତୋଠାରୁ ତାଙ୍କ ଖବର ସବୁ ଶୁଣିବି, ସେମାନଙ୍କୁ ସବୁ ଦେଖିଲା ପରି ମନେ କରିବି ।"

ମାନସିଂର ଆଗ୍ରହ ବଢ଼ାଇବାପାଇଁ କରମ୍‌ସିଂ କହିଲା, "ଆମ ଗାଆଁର ଶେଷ ମୁଣ୍ଡରେ ବହୁତ ଦୃଶ୍ୟ ଅଛି । ତୁ ସେସବୁ ଦେଖିଛୁ ?"

ମାନସିଂ କହିଲା, "ମୁଁ ଦେଖି ନାହିଁ । ମୁଁ ଅମୃତସର ବାଟେ ଯାଇଛି । କିନ୍ତୁ ସେଠାରୁ ଆଉ ଦୂରକୁ ଯାଇନାହିଁ ।" "ଓହୋ ! ସେଠାରେ ବହୁତ କିଛି ଦେଖିବାର ଜିନିଷ ଅଛି । ତୁ ଏଥର ସେସବୁ ଦେଖିବୁ, ମୋ ଲୋକମାନଙ୍କ ସହିତ ଆଳାପ ହେବ । ମୁଁ ସେମାନଙ୍କୁ ଚିଠି ଲେଖୁଛି ।" ଏହା କହିସାରି କରମ୍‌ସିଂ ନିଜର ପ୍ରୀତି ଦେଖାଇ ସେଠାରୁ ଚାଲିଗଲା ।

ସେଥିପାଇଁ ମାନସିଂ ବର୍ତ୍ତମାନ ଛୁଟି ଶେଷ ବେଳକୁ କରମ୍‌ସିଂର ଗାଆଁକୁ ଗୋଟାଏ ଟାଙ୍ଗାରେ ଯାଉଥିଲା ।

× × × ×

"ନମସ୍କାର ବାପୁଜୀ ! ମୁଁ ଚୁହାରକଣାରୁ ଆସିଛି । ମୋ ନାମ ମାନସିଂ ।" ମାନସିଂ କରମସିଂର ଘର ବାରଣ୍ଡାରେ ବସିଥିବା ବୃଦ୍ଧ-ଲୋକଙ୍କୁ ହାତ ଯୋଡ଼ି ଭଙ୍ଗୀରେ ନମସ୍କାର କଲା । "ବେଶ୍ ବେଶ୍, ଭଲ କଥା, ଆସ, ବସ ।" ବୃଦ୍ଧ ଏହି କେତୋଟି ପଦ କଥା କହିଲେ । ମାନସିଂ ଘରଭିତରକୁ ଯାଇ ଗୋଟିଏ ଖଟଉପରେ ବସିପଡ଼ିଲା । ମାନସିଂକୁ ଦେଖି ବୃଦ୍ଧ ଟିକିଏ ବ୍ୟସ୍ତ ହେଲପରି ଜଣାଗଲା । ସେ ଥରେ ମାନସିଂକୁ ଚାହିଁ ତାପରେ ଧୀର ନିଶ୍ଚଳ ହୋଇ ଗମ୍ଭୀରଭାବରେ ତଳକୁ ଚାହିଁଲେ । ମାନସିଂ ଅବଶ୍ୟ ଧୈର୍ଯ୍ୟ ହରାଇବା ଲୋକ ନୁହେଁ, କିନ୍ତୁ ସେ ଗୋଟାଏ କପଟ ଅସ୍ୱସ୍ତି ଅନୁଭବ କଲା । ସେ ମନେ ମନେ ଭାବିନେଲା ଯେ, ବୃଦ୍ଧଲୋକଟି କରମ୍‌ସିଂର ବାପା ନୁହନ୍ତି ।

ଏହାପରେ ମାନସିଂ ଟିକିଏ ଗମ୍ଭୀର ସ୍ୱରରେ ପଚାରିଲା, "ଆପଣ କଣ କରମ୍‌ସିଂର ବାପା ?"

"ହିଁ, ଏଇଟା ଆମ ଘର ।"

"ସେ କଣ ଆପଣଙ୍କୁ ମୋ କଥା ଲେଖିଥିଲା ?"

"ହିଁ, ଲେଖିଥିଲା । ତାପରେ ସେ ଲେଖିଥିଲା ତୁମେ ଆସି ଆମକୁ ଦେଖିଯିବ ।"

ଏହା କହି କହି ବୃଦ୍ଧ ଠିଆ ହେଲେ ଏବଂ ଘର ଅଗଣାଭିତରେ ପ୍ରବେଶ କଲେ । ସେ ଗୋଟିଏ ମଇଁଷିକୁ ଗୁହାଳରୁ ଫିଟାଇ ଅନ୍ୟ ଖୁଣ୍ଟିରେ ବାନ୍ଧିଦେଲେ । ସେ ସେହି ମଇଁଷିକୁ ଟିକିଏ ଆଉଁସିଲେ ଏବଂ

ତାଙ୍କ ହାତ ଚଟାଇଲେ । ଏହାପରେ ଘରଭିତରକୁ ଯାଇ ମାନସିଂ ଆସିବା କଥା ବଡ଼ପାଟିରେ ଘୋଷଣା କଲେ ଏବଂ ଚୂ ବଗାଦ କଲେ । ସେ ଯେପରି ବାରଣ୍ଡାକୁ ଆସିବାପାଇଁ ଭୟ କରୁଥିଲେ—ତେଣୁ ଅଗଣା ମଧ୍ୟରେ ଟିକଏ ଅପେକ୍ଷା କଲେ । ଏହାପରେ ଘୋଡ଼ା ଆଗରେ କିଛି ବୁଟ ଅଜାଡ଼ିଦେଇ ବାରଣ୍ଡାକୁ ଫେରିଆସିଲେ । କିନ୍ତୁ ପୂର୍ବପରି ତାଙ୍କ ମୁଖମଣ୍ଡଳରେ ସ୍ୱଚ୍ଛପ୍ରଣ ପ୍ରକାଶ ପାଉଥିଲା । ମାନସିଂ ଜାଣେ ଯେ କରମ୍ ସିଂର ଗୋଟିଏ ଛୋଟ ଭାଇ ଅଛି—ତା ନାମ ହେଉଛି ଯଶୋବନ୍ତସିଂ । ନୀରବତା ଭଙ୍ଗ କରି ମାନସିଂ ପଚାରିଲା "ଯଶୋବନ୍ତ କାହିଁ ?"

"ଦାନା ଆଣିବାକୁ ଯାଇଛି । ସେ ଏଇକ୍ଷଣି ଆସିଯିବ ।" ଇତ୍ୟବସରରେ କରମ୍ ସିଂର ମା ଚୂ ଆଣି ଦେଲେ ।

ମାନସିଂ ଏହି ସମୟରେ ମାଆଙ୍କୁ ଲକ୍ଷ କରି କହିଲା, "ସତ୍ଶ୍ରୀ ଅକାଲ ବେଜ ।" ମାନସିଂ କଥାରେ ଭକ୍ତି ଓ ଶ୍ରଦ୍ଧା ଭାବ ପରିପୁଷ୍ଟ ହୋଇଥିଲା । ମାତ୍ର ବୁଢ଼ୀଙ୍କର ସମଗ୍ର ଦେହ କମ୍ପିତ ହୋଇଉଠିଲା—ସତେ ଅବା ସେ ଯେପରି କଣ କହିବାକୁ ଚାହୁଁଛନ୍ତି, ମାତ୍ର ପ୍ରକାଶ କରିପାରୁ ନାହାନ୍ତି । ମାନସିଂ ବୁଢ଼ୀଙ୍କ ହାତରୁ ଚୂ ନେଲା । ବୁଢ଼ୀ ଘରଭିତରକୁ ଚାଲିଗଲେ ।

ମାନସିଂ ମନେ ମନେ କହିଲା—ଏ ମଝାଲମାନେ ବଡ଼ ଅଦ୍ଭୁତ ଲୋକ । ଯାହାହେଉ, ସେ ଆଉ ବୁଲିଚାଲି କରିପାରିଲା ନାହିଁ । ତାର ପାଦ ଘୁଞ୍ଚିଲା ନାହିଁ । ସେ ଭାବିଲା—ଯାହାହେଉ ଆଜି ରାତିକ ଏଠି ରହିବ ଏବଂ କାଲି ବଡ଼ସକାଳେ ଚାଲିଯିବ । ଆଜି ଏଠି ରହିବାକୁ ମୁଁ ବାଧ୍ୟ ।

ରାତିରେ ଯେତେବେଳେ ଯଶୋବନ୍ତ ସିଂ ଘରକୁ ଫେରିଲା, ସେତେବେଳେ ସେମାନଙ୍କ ମଧ୍ୟରେ ମାମୁଲି ଧରଣର ଟିକଏ କଥାବାର୍ତ୍ତା ହେଲା । ମାନସିଂ କହିବାକୁ ଲାଗିଲା, "ବର୍ମାଯୁଦ୍ଧବେଳେ କରମ୍ ସିଂର ଗୁଳି ଖୁବ୍ କାମ ଦିଏ, ଏକାବେଳକେ ଅବ୍ୟର୍ଥ । ସେ ଯେତେବେଳେ ବନ୍ଧୁକରେ ଘୋଡ଼ା ଟାଣିବ, ସେତେବେଳେ ଜଣେ ନା ଜଣେ ଜାପାନୀ ସୈନ୍ୟ ମରିବା ସୁନିଶ୍ଚିତ । କରମ୍ ସିଂ କିପରି ବଣ-ଜଙ୍ଗଲରେ ବୁଲି ଜାପାନୀମାନଙ୍କୁ ଖୋଜି ବାହାର କରେ, ତାହା କେହି

ଜାଣିବା ମୁସ୍କିଲ ।" ଏହା କହିସାରି ମାନସିଂ ଟିକିଏ ନୀରବ ହେଲା । ସେ ଆଶା କରିଥିଲା ପରିବାରର ଲୋକେ ତାକୁ ଜାପାନୀ ସୈନ୍ୟ ଏବଂ ଯୁଦ୍ଧ ସମ୍ପର୍କରେ ବହୁତ ପଚାରିବେ, କରମ୍‌ସିଂ ସମ୍ପର୍କରେ ଜାଣିବାକୁ ସମସ୍ତେ ଆଗ୍ରହୀ ହୋଇ ଉଠିବେ । କାରଣ ସେ ବହୁତଗୁଡ଼ାଏ ଖବର ରଖିଥିଲା ଏବଂ ସେ ସବୁ ଖବର ପ୍ରକାଶ କରିବାଦ୍ୱାରା ହୃଦୟଭାର ଟିକିଏ କମିଯିବ । କିନ୍ତୁ ବଡ଼ ବିଚିତ୍ର ବ୍ୟାପାର, କେହି ତା କଥା ଶୁଣିଲେ ନାହିଁ—ସତେ ଯେପରି ତାଠାରୁ ଶୁଣିବା ପାଇଁ କାହାରି ହେଲେ ଖାତିର ନ ଥିଲା ବା ଟିକିଏ ହେଲେ ଆଗ୍ରହ ନ ଥିଲା । ଏହି ସମୟରେ ନିସ୍ତବ୍‌ଧତା ଭଙ୍ଗ କରି ବୃଦ୍ଧ ପିତା ପଚାରିଲେ, "ଯଶୋବନ୍ତ, ପୁଣି କେବେ କେନାଲରେ ପାଣି ଛାଡ଼ ହେଉଛି ?" ଯଶୋବନ୍ତ ଉତ୍ତର ଦେଲା, "ପନ୍ଦରଦିନ ପାହାନ୍ତା ତିନଟାରେ କେନାଲରେ ପାଣି ଆସିବ ।"

ପାହାନ୍ତା ସମୟ କଥା ଶୁଣି ମାନସିଂର ମନରେ ଗୋଟାଏ କୌତୂହଳ ସୃଷ୍ଟି ହେଲା । ସେ ତ କଥାର ଖିଅ ଖୋଜି ବୁଲୁଥିଲା; କାରଣ ସେ ମନେ ମନେ ଉପାୟ ପାଞ୍ଚୁଥିଲା କିପରି ଆଳାପ ବଢ଼ିଚାଲିବ । ତେଣୁ ଠିକ୍ ଏତିକିବେଳେ ମାନସିଂ କଥାଚ୍ଛଳରେ ପ୍ରକାଶ କଲା, "କରମ୍‌ସିଂ ଅନ୍ତତଃ ଲଢ଼େଇରେ ରହି ଏହି ପାହାନ୍ତାରେ ଶେଯରୁ ଉଠିବା ଦୁଃଖରୁ ମୁକ୍ତି ପାଇଛି । ପାହାନ୍ତାରେ ଶୋଇରହିବାକୁ ସେ ଭଲ ପାଏ ଏବଂ ଆମେ ସମସ୍ତେ ଶେଯରୁ ଉଠିବାପରେ ସେ ଖୁବ୍ ବିଳମ୍ବରେ ଶେଯରୁ ଉଠେ ।"

ମାନସିଂ ତାର ବନ୍ଧୁ କରମ୍‌ସିଂ ସମ୍ପର୍କରେ ଏତେଗୁଡ଼ାଏ କଥା ଅବିଶ୍ରାନ୍ତଭାବରେ ଏବଂ ଆଗ୍ରହରେ ଗପିଯାଉଥିଲା । ତଥାପି ମାନସିଂର ଶେଷ କେତେପଦ କଥା ପରିବାରରେ କୌଣସି ଲୋକ ମନରେ ଆଗ୍ରହ କିମ୍ବା ସ୍ପନ୍ଦନ ସୃଷ୍ଟି କଲା ନାହିଁ । ପରିବାରଟିର ଶ୍ରୋତାମାନେ ସବୁ ଶୁଣି ଶୁଣି ନୀରବ, ସ୍ପନ୍ଦନହୀନ ଏବଂ ଉଦାସୀନ ପରି ଜଣାପଡ଼ୁଥିଲେ ।

ଏହାପରେ ରାତିଭୋଜନର ବ୍ୟବସ୍ଥା ହେଲା । ମାନସିଂପାଇଁ ସ୍ୱତନ୍ତ୍ର ତରକାରୀମାନ ରନ୍ଧାଯାଇଥିଲା । ସେ ଖାଇଲାବେଳେ ପାଖରେ ଯଶୋବନ୍ତ ବସି ପଙ୍ଖା କରିଦେଲା । ଯାହାହେଉ ମାନସିଂର ମନରେ ଗୋଟାଏ ଧାରଣା ଦୃଢ଼ବଦ୍ଧ ହେଲା ଏବଂ ସେ ମଧ୍ୟ ସ୍ପଷ୍ଟ ଅନୁଭବ କରି-ପାରିଲା ଯେ, ତାପ୍ରତି କେହି ବିଶେଷ ଦୃଷ୍ଟି ଦେଉ ନାହାନ୍ତି ।

ସେ ଖାଇସାରିବା ବେଳକୁ କରମ୍‌ସିଂର ଛୋଟିଆ ପୁଅଟି ଧୀରେ ଧୀରେ ଯାଇ ତା ପାଖରେ ବସିଲା । ମାନସିଂ ମନେ କଲା, ଅନ୍ୟ କାହା ସହିତ କରମ୍‌ସିଂ ସମ୍ପର୍କରେ କଥାବାର୍ତ୍ତା କରି ପାରି ନ ଥିଲେ ମଧ୍ୟ ବର୍ତ୍ତମାନ ତାକୁ ଏକ ସୁଯୋଗ ମିଳିଲା । ଅନ୍ତତଃ ସେ ଶିଶୁଟି ସହିତ ଟିକିଏ ମନ ଖୋଲି କଥାବାର୍ତ୍ତା କରିପାରିବ । ଶିଶୁଟିକୁ କୋଳରେ ଧରି ମାନସିଂ ଗେଲରେ ପଚାରିଲା, "ତୁମେ ତୁମ ବାପା ପାଖକୁ ଯିବ ? ଯଦି ଯିବ, ତେବେ ମୋ ସାଙ୍ଗରେ ଆସ । ମୁଁ ତୁମକୁ ତୁମ ବାପା ପାଖକୁ ନେଇଯିବି । ସେଠି ବହୁତ ବର୍ଷା ହୁଏ । ଆଉ ତୁମକୁ ଖେଳିବାକୁ ସେଠାରେ ବହୁତ ପାଣି ମିଳିବ ।" ମାନସିଂର ଏଇ କେତେ ପଦ କଥା ବୃଦ୍ଧ ପିତାଙ୍କର ବକ୍ଷରେ ବିଦ୍ଧ ହୋଇଥିବା ପରି ଜଣାପଡ଼ିଲା । ବୃଦ୍ଧ ଗର୍ଜନ କରି କହିଲେ, "ପିଲାଟାକୁ ଏଠୁ ନେଇଯାଅ । ତାକୁ ଅନ୍ୟ କୁଆଡ଼େ ରଖ । ସେ ତାଙ୍କୁ ଦି'ଟା ଶାନ୍ତିରେ ଖୁଆଇଦେବ ନା ।" ମା ଆସି ତତ୍‌କ୍ଷଣାତ୍ ଶିଶୁପୁଅକୁ ଭିତରକୁ ଭିଡ଼ିନେଲା ।

ମାନସିଂର ଗଳା ରୁଦ୍ଧ ହେଲାଭଳି ଜଣାପଡ଼ିଲା । ତା ତଣ୍ଟିରେ ଖାଦ୍ୟ ଅଟକି ରହିଗଲା । ସେ କିପରି ଶ୍ୱାସରୁଦ୍ଧ ହେଲାଭଳି ଅନୁଭବ କଲା ଏବଂ ସେ ଘରେ ଶାନ୍ତିରେ ନିଶ୍ୱାସ ନେଇ ପାରିଲା ନାହିଁ । ଏହାପରେ ସେ ତାର ତତ୍‌ପରବର୍ତ୍ତୀ ଦିନ ସକାଳେ ଫେରିଯିବା ସମ୍ପର୍କରେ ପ୍ରଶ୍ନ ପଚାରିଲା, "ଏଠାରୁ ତରନ୍‌ତରନ୍ କେତେ ଦୂର ହେବ ?"

ଉତ୍ତର ଆସିଲା, "ପ୍ରାୟ ଚାରି ମାଇଲ ।"

"ବଡ଼ିସକାଳେ କଣ ସେଠାକୁ ଟାଙ୍ଗା ମିଳେ ?"

"ସେଥିପାଇଁ ତୁମେ ବ୍ୟସ୍ତ ହୁଅନା । ତୁମ ସାଙ୍ଗରେ ଯଶୋବନ୍ତ ଯିବ । ତୁମେ ଦୁଇ ଜଣ ଆଜି ଏଠାରେ ନାନା ସ୍ଥାନ ବୁଲି ଦେଖିଆସ ।" ଏହି ପ୍ରକାର କଥାବାର୍ତ୍ତା ଓ ପ୍ରତିଶ୍ରୁତି ମାନସିଂକୁ ଗଭୀର ଆନନ୍ଦ ଦେଇଥିଲା, କାରଣ ସେ ଜାଣେ ଯଶୋବନ୍ତ ଟିକିଏ ମିଳାମିଶା ଧରଣର ଯୁବକ । ସେ ସେମିତି ଗମ୍ଭୀର ବା ଉଦାସୀନ ନୁହେଁ ।

କିନ୍ତୁ ମାନସିଂର ଆଶା ନୈରାଶ୍ୟରେ ପରିଣତ ହେଲା । କାରଣ ଯଶୋବନ୍ତର ମଧ୍ୟ ମୁହଁ ବନ୍ଦ । ସେ ଦୁଇ ଜଣ ଯେତେବେଳେ ବୁଲିବାକୁ

ଗଲେ, ସେତେବେଳେ ଯଶୋବନ୍ତ ବରାବର ଗମ୍ଭୀର ହୋଇ ରହିଲା । ବାଟରେ ସେ ଯେବେ କୌଣସି ବନ୍ଧୁବାନ୍ଧବଙ୍କୁ ଭେଟିଲା, ତାହେଲେ ମାମୁଲି ନମସ୍କାର କରିବା ଛଡ଼ା ଅଧିକା କିଛି କହୁ ନ ଥିଲା । ବାଟସାରା ଯଶୋବନ୍ତ ବଡ଼ ଉଦାସୀନ ଓ ମ୍ରିୟମାଣ ଜଣାପଡ଼ୁଥିଲା । କିନ୍ତୁ ମାନସିଂର ବିଷୟ ସ୍ୱତନ୍ତ୍ର । ସେ ତ ଆଉ ଏ ଅଞ୍ଚଳକୁ ଆସିବ ନାହିଁ । ତେଣୁ ସେ ବାଟରେ ଅନେକ ଲୋକମାନଙ୍କ ସହିତ କଥାବାର୍ତ୍ତା କରିବାପାଇଁ ବରାବର ଆଗ୍ରହ ପ୍ରକାଶ କରୁଥିଲା ।

ମାନସିଂ କଥାବାର୍ତ୍ତା ଆରମ୍ଭ କରେ, "ତୁମ ଭାଇ କରମ୍‌ସିଂ ସୈନ୍ୟ ବିଭାଗରେ ଖୁବ୍ ସୁନାମ ଅର୍ଜନ କରିଛି । ସୈନ୍ୟ ବିଭାଗରେ ତାର ଖୁବ୍ ପ୍ରଶଂସା । ତୁମେ ତେବେ କାହିଁକି ଲଢ଼େଇକୁ ଯାଉନା ? ତୁମେ ତ ତା ଭାଇ, ସୈନ୍ୟ ବିଭାଗରେ ଯୋଗ ଦେଇପାରନ୍ତ ।"

ଯଶୋବନ୍ତ ହଠାତ୍ ଚମକି ପଡ଼ିଥିଲା । ଯାହା ହେଉ, ପର ମୁହୂର୍ତ୍ତରେ ଧୈର୍ଯ୍ୟ ସଂଗ୍ରହ କରି କହିଥିଲା, "ଯୁଦ୍ଧକୁ ଜଣେ ତ ଯାଇଛି, ତାହାହିଁ କଣ ଯଥେଷ୍ଟ ନୁହେଁ ?"

ଏତିକିବେଳେ ବାଟରେ ଗୋଟିଏ ଆଖୁକିଆରି ପଡ଼ିଲା । ସେହି ବାଟେ ଯାଉ ଯାଉ ଯଶୋବନ୍ତ ପଚାରିଲା, "ତୁମ ଅଞ୍ଚଳରେ ବର୍ତ୍ତମାନ ଆଖୁଗଛ କେତେ ବଡ଼ ହେଲଣି ?"

ମାନସିଂ ଉତ୍ତର ଦେଲା, "ଆଖୁଗଛଗୁଡ଼ାକ ମଣିଷେ ମଣିଷେ ବଢ଼ିଛନ୍ତି । ବେଶ୍ ଖୁବ୍ ଉଚ ।"

କିନ୍ତୁ ମାନସିଂର ହୃଦୟ ଏକ ଅସ୍ୱସ୍ତି ଏବଂ ଅତୃପ୍ତିରେ ପୂର୍ଣ୍ଣ ହୋଇଥିଲା । ତାର ଚିନ୍ତାର ଧାରା ସ୍ୱତନ୍ତ୍ର । ସେ ଚାହୁଁଥିଲା କେବଳ ତାର ବନ୍ଧୁ କରମ୍‌ସିଂ ସମ୍ପର୍କରେ କଥାବାର୍ତ୍ତା କରିବାକୁ । କରମ୍‌ସିଂ ପ୍ରସଙ୍ଗ ବ୍ୟତୀତ ତା ମନରେ ଅନ୍ୟ କୌଣସି ଭାବ ନ ଥିଲା । ସେଦିନ ଘରକୁ ଆସି ମାନସିଂ ତା ଗାଆଁକୁ କିପରି ଶୀଘ୍ର ଫେରିଯିବ ତାହା ଚିନ୍ତା କଲା । ସେ ଭାବିଲା, ସେ ଅମୃତସରଠାରୁ ସେଇ ରାତିରେ ଟ୍ରେନ୍ ଧରିବ ।

ଯଦ୍ୟପି ପରିବାରର ପ୍ରତ୍ୟେକେ ତାକୁ ସୁଖୀ କରାଇବାପାଇଁ ଚେଷ୍ଟା କରିଥିଲେ, ତଥାପି ତା ମନରେ ଗୋଟାଏ ଭୟଙ୍କର ଅବଶୋଷ

ଦେଖାଦେଲା । ସେ ଯେପରି ଆଶା କରି ଏଠାକୁ ଆସିଥିଲା, ତଦନୁଯାୟୀ ଆଦର ଅଭ୍ୟର୍ଥନା ପାଇ ନ ଥିଲା । ଏପରି କି ବର୍ତ୍ତମାନ ସେ ଯେତେବେଳେ ସେମାନଙ୍କଠାରୁ ବିଦାୟ ନେବାକୁ ଯାଉଛି ଏବଂ ତା ପାଇଁ ଘରେ ଗୃହ ତିଆରି କରାଯାଉଛି, ସେ ସେତେବେଳେ ଏକାକୀ ବାହାର ବାରଣ୍ଡାରେ ବସିରହି କଣ ଗୁଡ଼ାଏ ଭାବୁଥିଲା । ସେ ଗଳିଭିତରକୁ ଲକ୍ଷ କରି ଦେଖିଲା ଯେ, ପୋଷ୍ଟମ୍ୟାନ୍ କାନ୍ଧରେ ଚିଠିମୁଣା ଝୁଲାଇ ଗାଆଁ ଦାଣ୍ଡରେ ଗ୍ଲୁଲିଛି । ପୋଷ୍ଟମ୍ୟାନ୍ ଗାଆଁ ଦାଣ୍ଡରେ ସିଧା ଚାଲିଯାଉଥିଲା, କିନ୍ତୁ ହଠାତ୍ ବୁଲିପଡ଼ି ଆସି ମାନସିଂ ପାଖରେ ବସିପଡ଼ିଲା । ମାନସିଂ ପୋଷ୍ଟମ୍ୟାନ୍‌କୁ ପଚାରିଲା, "କଣ ଆସିଛି ?" ପୋଷ୍ଟମ୍ୟାନ୍ ଟିକିଏ ବିସ୍ମୟଭାବ ପ୍ରକାଶ କରି କହିଲା, "ଆଉ କଣ ହୋଇପାରେ ? କରମ୍‌ସିଂର ପେନ୍‌ସନ୍‌ର କାଗଜପତ୍ର ହୋଇଥିବ ।"

ହଠାତ୍ ମାନସିଂ ମନରେ ଗୋଟାଏ ଧକ୍କା ଲାଗିଲା—"କଣ କହିଲ, କରମ୍‌ସିଂର ପେନ୍‌ସନ୍ ? କରମ୍‌ସିଂ କଣ ମରିଯାଇଛି ?"

"ବାଃ, ତୁମେ କଣ ଏକଥା ଜାଣ ନା ? ଏ ଗାଆଁର ବୃକ୍ଷଲତା, ପଶୁପକ୍ଷୀ ମଧ୍ୟ ଆଜି କରମ୍‌ସିଂପାଇଁ କାନ୍ଦୁଛନ୍ତି, ଆଉ ତୁମେ ତା ଘରେ ବସି ପଚାରୁଛ ସେ କଣ ମରିଯାଇଛି ? ପନ୍ଦର ଦିନ ତଳେ ଚିଠି ଆସିଥିଲା —କରମ୍‌ସିଂ ଯୁଦ୍ଧରେ ନିହତ ହୋଇଛି ।" ମାନସିଂର ବକ୍ଷଦେଶ ବିଦୀର୍ଣ୍ଣ ହୋଇଗଲା । ତାର କଣ୍ଠ ବାଷ୍ପରୁଦ୍ଧ ହୋଇଆସିଲା ଏବଂ ତାର ସର୍ବାଙ୍ଗ ସତେ ଯେପରି ସେହି ମୁହୂର୍ତ୍ତରେ ପଥର ପାଲଟିଗଲା । ତାପରେ ଦୁଇ ଚକ୍ଷୁରୁ ଅଶ୍ରୁଧାରା ନିର୍ଗତ ହେଲା । କରମ୍‌ସିଂର ଘରଭିତରେ ତାର ବୃଦ୍ଧ ପିତା ଏବଂ ତାର କ୍ଷୁଦ୍ର ଶିଶୁ ପ୍ରଭୃତି ଯେପରି ତାର ଅଶ୍ରୁପ୍ରବାହକୁ ଦ୍ୱିଗୁଣିତ କରିଦେଇଥିଲେ । ବୃଦ୍ଧ ପିତା ଘରଭିତରୁ ପୋଷ୍ଟମ୍ୟାନ୍‌କୁ ଦେଖି ସମସ୍ତ ବୃତ୍ତାନ୍ତ ଜାଣିଗଲେ । ସେ ଅନୁଭବ କଲେ ଯେ, ସେମାନେ କରମ୍‌ସିଂର ମୃତ୍ୟୁଖବର ତାର ବନ୍ଧୁ ମାନସିଂଠାରେ ଲୁଚାଇ ରଖି-ପାରିଲେ ନାହିଁ । ବର୍ତ୍ତମାନ ସମସ୍ତ ଶୋକ ଏବଂ ଦୁଃଖ ଆତ୍ମପ୍ରକାଶ କଲା । ଦୀର୍ଘ ଚବିଶ ଘଣ୍ଟା ଧରି ଯେଉଁ ଦୁଃଖ ଶୋଚନା ସେମାନଙ୍କ ବକ୍ଷରେ ଲୁକ୍କାୟିତ ହୋଇ ରହିଥିଲା, ସେହି ଭାରହୀନ ଶୋକୋଚ୍ଛ୍ୱାସ

ଆତ୍ମପ୍ରକାଶ କଲା । ଦୀର୍ଘ ସମୟ ପର୍ଯ୍ୟନ୍ତ ସେମାନେ ସମସ୍ତେ ଅବାଧ ଅବିଚ୍ଛିନ୍ନ ଅଶ୍ରୁପ୍ରବାହରେ ପ୍ଲାବିତ ହୋଇଗଲେ । ମାନସିଂ କରୁଣ କଣ୍ଠରେ ସେମାନଙ୍କୁ ପଚାରିଲା, "ଆପଣମାନେ ମୋତେ ଏ କଥା ଆଗରୁ କହିଲେ ନାହିଁ କାହିଁକି ?"

ଉତ୍ତର ମିଳିଲା, "ଆମେ ଭାବିଲୁଁ, ବିଚରା ଛୁଟିରେ ଗାଆଁକୁ ଆସିଛି । ତାର ଆନନ୍ଦ ସମୟକୁ ବିଷାକ୍ତ ଏବଂ ବ୍ୟର୍ଥ କରିବା ଦରକାର କଣ ? ସେ ଯେତେବେଳେ ଛୁଟିପରେ ରେଜିମେଣ୍ଟକୁ ଫେରିଯିବ, ସେତେବେଳେ ସମସ୍ତ କଥା ଜାଣିପାରିବ । ମୁଁ ଭାବୁଛି କରମ୍‌ସିଂ ଯେମିତି ଛୁଟି ସମୟଟାକୁ ଭଲ ପାଉଥିଲା, ତୁମର ମଧ୍ୟ ଛୁଟିପାଇଁ ସେମିତି ଆକର୍ଷଣ ଥିବ—ହୁଏତ ତାଠାରୁ ଅଧିକ ଥାଇପାରେ । ବଡ଼ ଅଞ୍ଚଳର ଲୋକମାନେ ଖୁବ୍ ଆରାମରେ ଜୀବନ ଯାପନ କରନ୍ତି । ସେମାନଙ୍କ ଜୀବନରେ ଉପଭୋଗର ମାତ୍ରା ଅଧିକ । ସେ ଯାହା ହେଉ ଆମେ ଘଟଣାଟା ଲୁଚାଇ ରଖିପାରିଲୁଁ ନାହିଁ—ଆମର ସେଇଟା ଭୁଲ୍ । ଆମେ ସମସ୍ତେ ସେଥିପାଇଁ ବଡ଼ ଦୁଃଖିତ ।"

ଗାଆଁକୁ ଫେରିବା ବାଟରେ ମାନସିଂର ଚକ୍ଷୁ ସେ ଗ୍ରାମମାନଙ୍କ ଉପରେ ପଡ଼ିଁରଯାଇଥିଲା । ଯେଉଁ ଗ୍ରାମର ବେଷ୍ଟନୀରେ କରମ୍‌ସିଂର ବୃଦ୍ଧ ପିତାଙ୍କର ଜନ୍ମ ଓ ବିକାଶ, ସେହି ଗ୍ରାମର ଚତୁର୍ଦ୍ଦିଗରେ ବହୁ ସମାଧି ଓ ସ୍ମୃତିସ୍ତମ୍ଭ ଭାରତ ଆକ୍ରମଣକାରୀମାନଙ୍କ ବିରୋଧରେ ସ୍ୱଦେଶର ବୀର ସନ୍ତାନମାନଙ୍କର ବୀରତ୍ୱ ଓ ବିଜୟର ମୃତ୍ୟୁବିହୀନ ଇତିହାସ ପ୍ରଚାର କରୁଅଛି । ତାହାହିଁ ବୋଧହୁଏ ବୃଦ୍ଧ ପିତାଙ୍କର ପୁତ୍ରବିୟୋଗଜନିତ ଅସୀମ ଦୁଃଖ ଓ ଯନ୍ତ୍ରଣା ସହ୍ୟ କରିବାର ଶକ୍ତି ଓ ସାମର୍ଥ୍ୟର ମୂଳ ହେତୁ । ସେ ତାଙ୍କ ପୁତ୍ରର ଜନୈକ ବନ୍ଧୁର ମନରେ ଆଘାତ ନ ଦେଇ ନିଜେ ଅନ୍ତରିକ ଦୁଃଖ ଓ ଅନୁଶୋଚନା ସହ୍ୟ କରିପାରିଥିଲେ । ତାଙ୍କର ପ୍ରାଣ ସର୍ବଦା କାନ୍ଦୁଥିଲା । କିନ୍ତୁ ଆଉ ଜଣେ ଯୁବକକୁ କନ୍ଦେଇବାପାଇଁ ତାଙ୍କର ଆଦୌ ଇଚ୍ଛା ନ ଥିଲା, କି ଧୈର୍ଯ୍ୟ ନ ଥିଲା ।

ମାନସିଂ ଶୁଣିଥିଲା ଯେ, କୋଉଠାଏ ବୃଷଭ ଅଛି ଯେ କି ନିଜର ମସ୍ତକରେ ସମଗ୍ର ଧରଣୀର ଭାର ଧାରଣ କରିଅଛି । କରମ୍‌ସିଂର ବୃଦ୍ଧ ପିତା ଠିକ୍ ଏହିପରି କରୁଣା ଓ ଅଦମ୍ୟ ସହନଶୀଳତାର ପ୍ରତିମୂର୍ତ୍ତି । ସେ ନିଜର ଅଭିଶାପ, ଦୁଃଖ, ନିର୍ଯ୍ୟାତନାର ପାହାଡ଼ ତଳେ ବରାବର ପୀଡ଼ିତ, ସଙ୍କୁଚିତ ଓ ଦଳିତ ହେଉଥିଲେ ମଧ୍ୟ ଅନ୍ୟ ଜଣକର ଦୁଃଖଭାର ବହନ କରିବାପାଇଁ ସର୍ବଦା ଅକୁଣ୍ଠିତ ଓ ଅଗ୍ରସର । ସହିଷ୍ଣୁତାର କି ପ୍ରତ୍ୟକ୍ଷ ଅବତାର ।

---

# ମନମଉ ଘୁହାଁଳ ଗାଛ



ମହାପାତ୍ର ନୀଳମଣି ସାହୁ

କିଶୋରୀ ମୋହାନ୍ତି ଭଳି ଚିଡ଼ା ଲୋକଙ୍କୁ ଯେ ବନ୍ଧୁ ହିସାବରେ ପାଇଛନ୍ତି ତା' ଅବସ୍ଥା ବାରଣ୍ଡା ଦ'କଡ଼ା । ଲୋକଟା ମହା ଚିଙ୍ଗିଶୂଳିଆ । ଅନ୍ୟଠାରେ ନିଜ ରୁଚିର କିଞ୍ଚିତ୍ ବ୍ୟତିକ୍ରମ ଦେଖିଲେ ସେ ଚିଡ଼ିଉଠେ । ଅଥଚ ସେ ଯଦି ସ୍ଥିରଭାବେ ନିଜଭିତରକୁ ଚାହାନ୍ତା ତେବେ ଦେଖନ୍ତା ଯେ ସେ ନିଜେଇ ନିଜ ରୁଚିର ଘାଘାଡିକ ବ୍ୟତିକ୍ରମ । ହୁଏତ ସେଥିଲାଗି ସେ ତା ଅଜାଣତରେ ନିଜ ଉପରେ ଚିଡ଼ୁ ଚିଡ଼ୁ ଯାହାକୁ ଆଗରେ ପାଏ ତା' ଉପରେ ଚିଡ଼ିଉଠେ । ଚିଡ଼ିବା ଅବଶ୍ୟ କିଛି ଖରାପ କଥା ନୁହେଁ । ତଦ୍ଦ୍ୱାରା ଅନ୍ୟ ବ୍ୟକ୍ତି ସହିତ ଏକପ୍ରକାର ସମ୍ପର୍କ ରକ୍ଷା କରାଯାଇପାରେ, ମାତ୍ର କିଶୋରୀ ମୋହାନ୍ତି କଥା ଓଲଟା । ତା'ର କାହାସଙ୍ଗେ ଭିତ୍ତିକ ସମ୍ପର୍କ ନ ଥିବା ହେତୁଇ ସେ ଅନ୍ୟ ଉପରେ ଅସନ୍ତୁଷ୍ଟ ହୋଇ ଚିଡ଼ୁଥାଏ । ମୋ ଜାଣିବାରେ ସେ ବୋଧେ ଭାବେ—ତା' ଛଡ଼ା ପ୍ରତ୍ୟେକ ବ୍ୟକ୍ତି ହୁଏତ ମଙ୍ଗଳଗ୍ରହରୁ ବା ଚନ୍ଦ୍ରଗ୍ରହରୁ ଆସିଛି ଏବଂ ସମସ୍ତେ ତା'ପାଖରେ ଅପରିଚିତ—ବା ଅଜ୍ଞାତ ସ୍ଥାନ-କାଳ-ପାତ୍ର ଏବଂ ତା'ର ଆଶଙ୍କା ହୁଏ—ହୁଏତ ତା' ବିରୁଦ୍ଧରେ ଓ ତା' ପୃଥିବୀ ବିରୁଦ୍ଧରେ ସେମାନେ ସମସ୍ତେ ଷଡ଼ଯନ୍ତ୍ର-ତତ୍ପର । ଏହି ଭିତ୍ତିହୀନ ସନ୍ଦେହ ଯୋଗୁଁ କିଶୋରୀ ମୋହାନ୍ତି ସମ୍ପର୍କରେ ଯେ କେହିବି ଆସେ ସେ ତା'ଠୁ ଚୈତେ ପାଏ ଓ ତା'ଠାରୁ ସାବଧାନ ଦୂରତାରେ ରହିଥାଏ; କିନ୍ତୁ ତାଙ୍କୁ ଛାଡ଼ିବା ସହଜ ନୁହେଁ । ଠିକ୍ ଭଳି ସେ ଭୁମ ଦେହରେ ଲାଗିଥିବ ଓ କାମୁଡ଼ୁଥିବ । ଯାହାକୁ ତା' କାମୁଡ଼ା ଭଲଲାଗେ ସେ ତାଙ୍କୁ ଛାଡ଼ିବ କିପରି ? ମୋ କଥା ଜାଣ ସେଇଆ ।

କିଶୋରୀ ମାହାନ୍ତି ବିଷୟରେ କିନ୍ତୁ ମୁଁ ଏ କଥାଟା କହୁ ନାହିଁ । ସିଏ ଏ ଗଳ୍ପର ନାୟକ ନୁହଁ; କିନ୍ତୁ କିଶୋରୀ ମାହାନ୍ତି ନ ଥିଲେ ଏ ଗପଟିର ଭାବ ମୋ ମୁଣ୍ଡରେ ପଶି ନ ଥାନ୍ତା ବା ମୁଁ ଆପଣମାନଙ୍କ ଦୃଷ୍ଟିଗୋଚର କରାଇପାରି ନ ଥାନ୍ତି ସେହି ବିନ୍ଧେଶ୍ୱର ମହାଦେବଙ୍କ କାଳେସୀ ବାବାଜୀଙ୍କୁ । ଅସଲରେ, କିଶୋରୀ ବା ମୁଁ କେହି ଏ ଗଳ୍ପର ନାୟକ ନୋହୁଁ—ଏପରିକି ବିନ୍ଧେଶ୍ୱରଙ୍କ କାଳେସୀ ବି ନୁହଁ । ଆରେ ବାବୁ ଯେମିତି ବୁଝିଲେ ନାୟକ କେହି ନୁହନ୍ତି । ମାହାନ୍ତିଏ ନୁହନ୍ତି କି ମାହାପାତ୍ରେ ନୁହଁନ୍ତି । ଜଣେ ବସିଛି ସମସ୍ତଙ୍କ ଉପରେ ନାୟକ ହୋଇ—ପଞ୍ଚନାୟକ—ବା ମହାନାୟକ । ସେଇ ଜାଣ ନିର୍ଗୁଣ ରଜ୍ଜୁ କରେ ଧରି ମୃଗୀ ନଚଉଛି । ବୈଷ୍ଣବଚନ୍ଦ୍ରବର ଶ୍ରୀ ଶ୍ରୀ ଲଳିତା ଦାସଙ୍କ ଭାଷାରେ କହିଲେ ଆମେ ସମସ୍ତେ କୁଆଡ଼େ ନାୟିକା, ଆମେ ସମସ୍ତେ ପ୍ରକୃତି—ସେହି ଏକା ପୁରୁଷ—ପୁରୁଷୋତ୍ତମ । ତାଙ୍କୁ ଦେଖି ବଣର ଋଷିମାନେ ଥରେ ମତି-ବିହ୍ୱଳିତ ହୋଇ ନାୟିକା ହେବାକୁ ପାଗଳ ହୋଇ ଉଠିଥିଲେ—ସେମାନଙ୍କର

ବିଭ୍ରମ ଉପୁଜିଗଲା ମାନସ,
ବୋଇଲେ ସଖୀଙ୍କୁ ସଖୀ ଗୋ ଆସ ।
ବହିବା ଭୃମ୍ଭିକ ଉରରେ ରଖି
ବକ୍ଷୋରୁହ ହେଲ ଭାବରେ ସୁଖି ।
ବେଣିଏ ଭାବ ଜଟା ଲମ୍ବାଇ
ବିବିଧ କୁସୁମ ମଣ୍ଡିଲେ ନେଇ ।

କିନ୍ତୁ କିଏ ସେ ପୁରୁଷୋତ୍ତମ କିଏ କେଜାଣି । ମୋର ନାୟକ ହେବାକୁ ଏମିତି କିଛି ଲାଳସା ଅବଶ୍ୟ ନାହିଁ । ମୁଁ ତ ପିଲାଦିନୁଁ ଥିଏଟରରେ ସଖୀପିଲା—ତା'ପରେ ସହଚରୀ—ସେଇଠୁ ଜେମାଦେଈ—ଏବଂ ତା'ପରଠୁ ଯଥାକ୍ରମେ ରାଜମାତା କିମ୍ବା ଜମିଦାରଙ୍କ ବିଧବା ଭାଉଜ ହୋଇ ପାର୍ଟ କରିଆସିଛି । ମୁଁ ନାୟିକା ହେବାକୁ ରାଜି—ବରଂ ମୋର ସେଥିପାଇଁ ଭିତରିଆ ଲାଳସା ଅଛି; କିନ୍ତୁ ଶାସ୍ତ୍ରାଦିରେ ବର୍ଣ୍ଣିତ ସେହି ପୁରୁଷୋତ୍ତମଙ୍କ ଆକୃତିକୁ ବାବାଜୀ ବୈଷ୍ଣବମାନେ ଯେପରିଭାବେ ବ୍ୟାଖ୍ୟାନ କରନ୍ତି, ସେପରି ଠିକ୍ ପୁରୁଷ ମୂର୍ତ୍ତିଟିଏ ମୋତେ କିଏ ଦେଖାଇ

ହଅ—ତା'ପରେ ଦେଖ ମୁଁ ଶାଢ଼ୀ ସେମିଜ୍ ସାୟା ପିନ୍ଧୁଚି କ'ନାହିଁ ! ବେଣୀ ଗୁନ୍ଥୁଚି କି ନାହିଁ ।

ଗୁଡ଼ନୁ—ନାୟିକାଙ୍କ କଥା ପଡ଼ିବା ମାତ୍ରେ ମୋର ଭିତରିଆ ପ୍ରକୃତ ଅନୁଯାୟୀ ଓ ନାୟିକାଙ୍କ ପ୍ରକୃତ ଅନୁଯାୟୀ ମୁଁ ବେଶୀ ଗୁଡ଼ାଏ ଗପୁଚି ପ୍ରଗଲ୍ଭା ନାୟିକାଙ୍କ ପରି ।

ସେଇ ବଟେଶ୍ୱରଙ୍କ କାଳେସୀ ବାବାଜୀଙ୍କ କଥା ପଡ଼ୁଛି । ବର୍ଷକେ ସେ ଗୃହଥର କାଳେସୀ ହୁଅନ୍ତି । ଚଇତ ମାସର ବୃହ ମଙ୍ଗଳ-ବାର, ଆଉ ବର୍ଷେ ବର୍ଷେ ମହାଷ୍ଟମୀକୁ ଯହ ଠାକୁରାଣୀ ଅବତରନ୍ତି । କୁଅଟେ ବୁଡ଼ ଫୁଲ ବାହାର କରନ୍ତି, ପୋଖରୀରେ ବୁଡ଼ ସୁନାହାର ବାହାର କରନ୍ତି, ଜଳନ୍ତାବତି ଗିଳନ୍ତି, ଗୁହାରିଆ ପଡ଼ିଥିବା ବାତରୋଗୀ, ପାଳଜରୁଆ ବା ଗର୍ମୀବେମାରିଆଙ୍କୁ ହୁକୁମ ଦେଇ ଆରୋଗ୍ୟ କରନ୍ତି । ବାଞ୍ଝଙ୍କର'ବ ତାଙ୍କ ହୁକୁମରେ ପିଲା ହେବାକଥା ଢେର୍ ଢେର୍ ଲୋକଙ୍କ ମୁହଁରୁ ଶୁଣାଯାଏ । ଗୁଡ଼ନୁ—ଏ ସବୁ ଅନ୍ଧବିଶ୍ୱାସ ବୋଲି ମଧ ଢେର୍ ଢେର୍ ଲୋକଙ୍କର ବିଶ୍ୱାସ; କିନ୍ତୁ ବାବାଜୀଙ୍କୁ ଆଗତ ଭବିଷ୍ୟ ଜଣା । କୋଉ ଗାଁରେ କିଏ ରାତି ଅଧରେ କୋଠପୋଖରୀରୁ ମାଛ ମାରି ଖାଇଲେ—ବା କିଏ ଦୁର୍ବୃତ୍ତ କୋଉ ଅର୍ଜିତ ଛେଉଣ୍ଡର ଜମି ୫ ଗୁଣ୍ଠ ମାଡ଼ିବସି ଖାଉଛି—ବା କିଏ କାମୁକ ଲୋକ ତା' ଭାଇ-ବୋହୂର ଅଙ୍ଗ ସ୍ପର୍ଶ କରୁଛି - ସେ ସବୁ କାଳେସୀ ବାବାଜୀଙ୍କ ନଖ ଦର୍ପଣରେ ପ୍ରତିବିମ୍ବିତ ହୋଇଯାଏ ।······ ଏବେ କିନ୍ତୁ ସେ ଗ୍ରାମ ଗୁଡ଼ ଏ ସହରକୁ ଆସିଛନ୍ତି ଧର୍ମସଂସ୍ଥାପନାର୍ଥାୟ । ବର୍ଷକେ ଛ ଛ ମାସ ପାଳି କରି ସେ ସଦର ମଫସଲ ହେଉଥାନ୍ତି ।

ଆମର ପରିଚିତ ପାନଦୋକାନରେ ଶିଷ୍ୟ ପରିବୃତ୍ତ ହୋଇ ସେ ପାନ ଖାଉଥିଲେ । ରାତି ସେତେବେଳକୁ ଦଶଟାରୁ ପାର ହୋଇଗଲାଣି । ବାବାଜୀଙ୍କର ଅଧାପାଚିଲା ଦାଢ଼ୀ, ବାବୁରି ବାଳ, ସିନ୍ଦୂର କଳା, ଗେରୁଆ ବସ୍ତ୍ର, ବେକରେ ଗଇଁଠାଳ ପଡ଼ି ବେହରଣ ହୋଇଛି । ଗୋଟାଏ ଲମ୍ବା ଲୁହାକଡ଼ା ଲଗା ତ୍ରିଶୂଳ—ହଲାଇଲେ ଝମ୍ ଝମ୍ ବାଜେ । ଲମ୍ବା ଡ଼ାଳଟିଏ ଓ ମୁଣିଟିଏ କାନ୍ଧରେ । ମୁଣ୍ଡରେ ଚନ୍ଦନ ଭିତରେ ଲମ୍ବା ମୋଟା ସିନ୍ଦୂର କଳା । ତାଙ୍କ କଜଳଲଗା ଆଖି ଦୁଇଟାରେ କିନ୍ତୁ କଞ୍ଚିର କମିଆଁ ମୋ

ପାଇଁ ଓ ମୋ ଭଳି ନିରମା ଲୋକଙ୍କ ପାଇଁ ଖୋଲା ରହୁଥିଲା, ତାଙ୍କ ଦେହରୁ ଓ ଝୁଲିମୁଣିରୁ ଗଞ୍ଜେଇ ଧୂଆଁର ଚମତ୍କାର ଖୁସବାଇ ପ୍ରସରିତ ହେଉଥିଲା । ଗଞ୍ଜେଇ ଧୂଆଁର ମଧ୍ୟ ଗୋଟିଏ ବିଚିତ୍ର ଗୁମ୍ଫାଳିଆ କମିଆଁ ଅଛି । ବାବାଜୀ ବିଭିନ୍ନ ସମୟରେ ବିଭିନ୍ନ ଖଟି ଜାଗାରେ ନିନାଥ ମେଳା କରନ୍ତି । ଏହି ବୃକ୍ଷସ୍ଥାନ ଓ ମନ୍ଦିରସ୍ଥାନ ରାଜଧାନୀ ସହରରେ ବିଭିନ୍ନ ସତେଜ ପଲ୍ଲବିତ ଯୁବା ବୟସର ବଟ ଅଶ୍ୱତ୍ଥ ମୂଳରେ ସିମେଣ୍ଟ ଚଉତରା ବେଷ୍ଟିତ ହୋଇ ସର୍ବମୋଟ ତେରୋଟି କ୍ଷୁଦ୍ରାକାର ନିନାଥ ମନ୍ଦିର ତାଙ୍କଦ୍ୱାରା ନିର୍ମିତ ହୋଇ ରାଜଧାନୀର ଶୋଭାବର୍ଦ୍ଧନ କରୁଛି ଓ ରାତିର ନିର୍ଜନତା ଭଙ୍ଗ କରୁଛି । ପ୍ରତିଟି ରାତି ସେହିସବୁ ମନ୍ଦିରମାନଙ୍କ ପାଖେ କୋଳାହଳ ମୁଖରିତ ହୋଇଥାଏ । ଖଞ୍ଜଣୀ, ଗିନି ଓ କରତାଳ ମାଡ଼, ଶଙ୍ଖ ଶବ୍ଦର ଭେଦ ଭଜନମାନ ଉଚ୍ଚକିତ ମିଳିତ କଣ୍ଠରେ ନିନାଦିତ ହେଉଥାଏ । ଦିନବେଳାରେ ଯେଉଁ ନାଗରିକମାନେ ଅତି ମଳିନ, ଦୀନ ଓ ନୀରବ ଦେଖାଯାନ୍ତି ରାତି ବାରଟା ପରେ ଏଇସବୁ ମେଳା ଜାଗା-ମାନଙ୍କରେ ସେମାନେ ଅତି ଉଚ୍ଚକିତ, ଉଲ୍ଲସିତ ଓ ଉଚ୍ଛଳ ହୋଇ ଉଠନ୍ତି—ପାନ ସୁପାରି ଓ ବାଲଭୋଗର ପର୍ବ ପରେ ଗଞ୍ଜେଇ ଧୂଆଁରେ ପ୍ରମତ୍ତ ହୋଇ ସେମାନେ ଖଞ୍ଜଣୀ ମାଡ଼ କରନ୍ତି ଓ ଚିତ୍କାର କରି ନିଜ ଉପରେ ଓ ଅପର ଉପରେ ରାଗିଲା ଭଳି କଣ୍ଠରେ ଗାଉଥାନ୍ତି—

"ମନମୂଷାରେ ଭୁ ତ ଗଞ୍ଜେଇ ଖାଇ
ଦିନେ ବିରାଡ଼ିକି ଦିନେ ବିରାଡ଼ିକି ଦିନେ ବିରାଡ଼ିକି ଚହିଁଲୁ ନାହିଁ ।

ଏଇ ଭଜନ ଭିତରେ ସେମାନଙ୍କର ଶୋକ, ବିଷାଦ, ହର୍ଷ, କ୍ରୋଧ ଓ ଆକ୍ରୋଶ ଆଦି ମାନସିକ ଉତ୍ତେଜନାମାନ ଉଦ୍‌ବେଳ ହେଉଥାଏ ଓ ସେମାନେ ତା' ଭିତରେ ଆପଣା ଆପଣା ଜୀବନଟିମାନଙ୍କୁ ବୁଝୁଥାନ୍ତି—ଖେଳୁଥାନ୍ତି । ପ୍ରକାଶଥାଉକି ବନ୍ଦେଶ୍ୱରଙ୍କ କାଳେସୀ ବାବାଜୀ ଏସବୁ ଅନୁଷ୍ଠାନମାନଙ୍କର ସ୍ଥାପୟିତା, ପ୍ରବର୍ତ୍ତକ, ଉପଦେଷ୍ଟା ଓ ଗୁରୁ କହିଲେ ଅତ୍ୟୁକ୍ତି ହେବନାହିଁ । ମୁଁ ନିଜେ ମଧ୍ୟ ବହୁ ରାତି ଏମାନଙ୍କ ସଙ୍ଗେ ବିଭିନ୍ନ ଖଟିରେ ଯୋଗ ଦେଇ ନିଜକୁ ଧନ୍ୟ କରିଛି । ମୋର ମନେ ଅଛି—ଦିନେ ଭଜନ ମଝିରେ ମୁଁ ପଚାରି ଦେଲି—"ବାବାଜୀ ମାହାପ୍ରଭୁ ! ବିରାଡ଼ି ଏଠି କିଏ ? କାହାକୁ ଲକ୍ଷ୍ୟ କରି ବିରାଡ଼ି

ଲୁହାଯାଇଛି ?" ବାବାଜୀ କହିଲେ—"ଜୀବକୁ ଧରିଲେ ବରାଡ଼ ହେଲା ଯମ—ମୃତ୍ୟୁ ଦେବତା । ଜୀବ ମୋହମାୟାରେ ପଡ଼ି ମାନେ ଗଞ୍ଜେଇ ଖାଇ ଯମ ଅର୍ଥାତ୍ ମରଣକୁ ଭୁଲିଯାଇ ମତ୍ତଭୋଳରେ କାଳ ଯାପୁଛି । ଏ ହେଲା ବ୍ରହ୍ମଜ୍ଞାନ ଅର୍ଥ, ଆଉ ଗୋଟେ ଅର୍ଥରେ ନେଲେ ମାନେ ସାଧାରଣ ଅର୍ଥରେ—ତା' ଅର୍ଥ ହେଉଛି—ନିଜେ ଯଦି ଚତୁର ନ ରହିବ, ସତର୍କ ନ ରହିବ, ଜାଗ୍ରତଆର ନ ରହିବ ତେବେ ତୁମଠାରୁ ଚତୁର ଧୂର୍ତ୍ତ ଶିକାରୀ ବରାଡ଼ମାନେ ତୁମକୁ ମୂଷା ଭାବି ମାଡ଼ି ବସିବେ ।"

ଏ କଥା ଶୁଣୁ ଶୁଣୁ ଶିଷ୍ୟଙ୍କ ଭିତରୁ ଜଣେ ପାଟି କରି ଉଠିଲା, ବୁଝିଲ ବାବୁ ! ଏ ବଡ଼ଲୋକ ଧୋବଧାଉଳିଆମାନେ ହେଉଛନ୍ତି "ବିଲେଇ" । ଆମ ଭଳି ମୂଷାଙ୍କ ଭିତରେ ରୁଦ୍ରାକ୍ଷମାଳା ପିନ୍ଧି ଗୁଦ୍ଧ୍ୟକଥା କରି ପଣି ଆମକୁ ଭୁଲେଇ ଭାଲେଇ ଗୋଟି ଗୋଟି କରି ଜଳଖିଆ କରୁଛନ୍ତି ।

ମୁଁ କହିଲି—ଭାଇ ! ଯାହା କହିଲ ଦୁଇଆଡ଼୍ ସତ । ବରାଡ଼ ପାପୀ ହୋଇ ମାରୁଛି । ମୂଷା ଅଜ୍ଞାନପଣରୁ ମରୁଛି ।

ଏମିତି ବହୁବାର ମୁଁ ଏସବୁ ନିନାଥମେଳାମାନଙ୍କରେ ଆତଯାତ ହୋଇଛି ଓ ସେମାନଙ୍କ ଭିତରୁ ମୋର କେତେଜଣ ବେଶ୍ ପରିଚିତ । ମୋ ବିଚାରରେ ବାବାଜୀ ଓ ତା'ର କର୍ମପନ୍ଥା ମନ୍ଦ ନୁହଁ ।

ହଁ—ସେଦିନ ରାତି ଦଶଟା ପରେ କଣୋଗ୍ରା ମାହାନ୍ତି ଓ ମୁଁ ପାନ ଖାଇବାକୁ ସେ ଦୋକାନପାଖେ ଯାଇ ପହଞ୍ଚିଲୁ । ତା'ପୂର୍ବରୁ କଟୋଗ୍ରା ମାହାନ୍ତି ସବୁଦିନ ପରି ବାଟଯାକ ମୋ ଉପରେ ଚଡ଼ ଚଡ଼ ଆସୁଥିଲା । ଗତ ନିର୍ବାଚନରେ ହାରିଯାଇଥିବା ଜଣାଶୁଣା ନେତାଙ୍କର ଗୋଟିଏ ମାତ୍ର ସଦ୍‌ଗୁଣ ବିଷୟରେ ମୁଁ କହୁ କହୁ ସେ ମୋତେ "ଚୁଡ଼ିଆ" ଠାରୁ ଆରମ୍ଭ କରି ବହୁ ବିରକ୍ତିମୂଳକ ବିଶେଷଣରେ ଭୂଷିତ କରି କରି ଆସୁଥିଲା । ମୁଁ ତାକୁ ବୁଝାଉଥିଲି—"ଦେଖ୍ କଣୋଗ୍ରା ! ମୁଁ ସେ ହତଭାଗାର ରାଜନୀତିକ ଏଜେଣ୍ଟ ନୁହେଁ ବା ମୁଁ ତା'ଦ୍ୱାରା କୌଣସି ପ୍ରକାରେ ଉପକୃତ ହୋଇ ନାହିଁ । ବରଂ ସେ ହାରି ଯାଉ ବୋଲି ମୁଁ କାମନା କରୁଥିଲି—କିନ୍ତୁ ସେ ଯେ ଭଲ ବ୍ୟୋମଯାନ୍ ଉଡ଼ାଇପାରେ,

ଇଂଲଣ୍ଡ୍ ଗୃନେଲ୍ ପର୍ଯ୍ୟନ୍ତ ଯାଇପାରେ, "ପାପ ବୋଲି କିଛି ନାହିଁ— ଯା'ଖୁସି ତା'କର ଓ ଆନ୍ଯର ଖୁସି ହୁଅ" ବୋଲି ସଫାସଫି ସମସ୍ତଙ୍କୁ କହି ଦେଇପାରେ, ଏ କଥା କହିବାରୁ ତୁ ଏମିତି ଚିଡ଼ୁଛୁ ଓ ମୋତେ ଶୋଧୁଛୁ କାହିଁକି ?

କିନ୍ତୁ କଣଶୋଘ ଫେର୍ ଚିଡ଼ି ଉଠି ମୋତେ ଗୋଟାଏ ଧକ୍କା ମାରି କହିଲା—ଆରେ ଗୈର ! ଚିଲ ଶାଗୁଣା ବି ଆକାଶରେ ଭଲ ଉଡ଼ି ପାରନ୍ତି । ଶାଙ୍କୁଚ ମଗରଙ୍କ ପର୍ଯ୍ୟନ୍ତ ତୁ ଦେଖିନୁ—ମୁଁ ଦେଖିଛି—ମୋ ଶଶୁର ଘର ଖୋଦ୍ ପୁରୀ ସମୁଦ୍ର କୂଳରେ ନୋଳିଆ ସାହି ପାଖେ । ଆଉ ଶେଷ କଥା ଯାହା କହିଲୁ ଶୁଣ୍ରେ ଇଡ଼ିଅଠ୍ ! ଏ ସଂସାରରେ ଯଦି ସମସ୍ତେ ସମାନ ଭାବେ ପାପ କରି ପାରନ୍ତେ ଓ ସମସ୍ତଙ୍କର ସମାନଭାବେ ପାପ କରିବାର ସାମର୍ଥ୍ୟ ଓ ସୁବିଧା ଥା'ନ୍ତା—ତେବେ ଆଉ ଚିନ୍ତା କ'ଣ ? ମୁଁ ଆଗ ଯାଇ ତା' ବେକରେ ବରଣମାଳା ପକାଇ ତାକୁ ନେତା ବୋଲି ଡାକନ୍ତି । ସୁନ୍ଦରୀ ସ୍ତ୍ରୀର ଅପାରଗ ସ୍ୱାମୀକୁ "ମୁଁ ତୋ ସ୍ତ୍ରୀକୁ ନେଇ ଯାଉଛି ତୁ ଯଦି ପାରୁଛୁ ମୋ ସ୍ତ୍ରୀକୁ ନେଇଯା କିଛି ପାପ ନାହିଁ" ବୋଲି କହି ପରଦାରାସକ୍ତ ସମର୍ଥ ପୁରୁଷଟି ନିଜ ସୁନ୍ଦରୀ ସ୍ତ୍ରୀକୁ ନିରାପଦରେ ରଖି ପର ସ୍ତ୍ରୀକୁ ଭୋଗ କଲାଭଳି ମାତ୍ର ସେ ପ୍ରଚାର କରୁଛି । ତୁ ଆଗ ନିଜେ ସେ କଥା କରି ପାରିବୁ ? ଶଃ ପୁଅ ମାଇଚିଆ ତୁ···ମୁଁ ତୋତେ ଜାଣିନି !!

ମୁଁ କହିଲି—କଣଶୋଘ ! ମୁଁ ମାଇଚିଆ ସତ । ରାମ ରାବଣ ଉଭୟଙ୍କୁ ସ୍ୱୟମ୍ବର ସଭାରେ କନ୍ୟାପ୍ରାର୍ଥୀ ହୋଇ ବସିଥିବାର ଦେଖିଲେ ମୁଁ କାହା ଗଳାରେ ବରଣମାଳା ଲମ୍ବାନ୍ତି କେଜାଣି, କିନ୍ତୁ ଶିବଧନୁ ଭଙ୍ଗ ଭଳି ପଣଟିଏ ବାପ ରଖିଥିଲେ ରକ୍ଷା; ନ ହେଲେ ମୁଁ ଅଡୁଆରେ ପଡ଼ିଯାନ୍ତି ଭାଇ । ତୁ ମତ କହୁଛୁ । ହେଲେ—ତୁ ଖାଲି ସମାଜ ଚେତନାରେ ରହୁଛୁ ବୋଲି ବ୍ୟକ୍ତି ପ୍ରତି ତୋର ଏତେ ଘୃଣା, ଅସହିଷ୍ଣୁତା ! ଆରେ ଭାଇ, ସମାଜ ଏତେ ବିରାଟ ଯେ ବ୍ୟକ୍ତିକୁ ତା' ବିଖଣ୍ଡରେ ଘଣ୍ଟି ନ ଝୋଡ଼ାଇଲେ ସମାଜ ତାକୁ ମାଡ଼ି ବସିବ—ଟାକୁକିନା ଗିଳି ଦେବ । ସମାଜ କହେ "ମାତ" "ମାତ"—ବ୍ୟକ୍ତି କହେ "ରୁଚି" "ରୁଚି" । ମାତ କହେ ଶାସନ କରିବ । ରୁଚି କହେ ପ୍ରେମ କରିବ ।

ଏମିତି କଥା ହୋଇ ବୁଲୁଛୁ—ସେ ପାନଦୋକାନରେ ବାବାଜୀଙ୍କୁ ଦେଖିଲୁ । ପାନ ବରାଦ ଦେଇ ଆମେ ଠିଆ ହେଲୁ । ବାବାଜୀ କହୁଥାନ୍ତି କାହା ଉପରେ କ୍ରୋଧାନ୍ୱିତ ହୋଇ ।

ବୁଝିଲୁ କହ୍ନେଇ ! ଜମାଲପୁରଆଙ୍କ କଥା ମତେ କହନା । ମୁଁ ସେ ଶଳାଙ୍କ କଥା ଜାଣିଛୁ । ଶଳେ ବାଉଁଙ୍କୁ ଖାଇ ଖଣ୍ଟୁଳକ ବି ଖାଇ-ଦେବେ । ଠଙ୍କାକୁ ଠଙ୍କା ନେଲେ । ଭୋଟ ଦେଲାବେଳକୁ ଚଟାକାଟିଲେ । ଶୁଣିଲି—ବାବୁ ବିନାଥ ଖଟିକ ଶହେ ଠଙ୍କା ଦେଇଥିଲେ । ଆଉ କିଛି ମିଶାଇଥିଲେ ଚଉତରଫା ହୋଇ ଯାଇଥାନ୍ତା । ଶଳା ସିଦ୍ଧି ଦାସ ସବୁତକ ମାରନେଲା । ସିଦ୍ଧି ଦାସକୁ ମୁଁ ଚିହ୍ନିନା ? ତା' କଥା ମୁଁ କହୁ ନ ଥିଲି କହ୍ନେଇ ?

ଅନୁଗତ ଶିଷ୍ୟଟିଏ ସଙ୍ଗେ ସଙ୍ଗେ କହି ଉଠିଲା—ଆଜ୍ଞା ଆପଣଙ୍କ କିଛି ଅଗୋଚର ଅଛି ? ବାବାଜୀ କହିଲେ—ଆରେ ଆଖି ପଡ଼ିଲେ ମା' ପେଟରେ ଛୁଆ ଅଣ୍ଡିରା କି ମାଈ କହିଦେବି । କହନ ? ଅଗଣି ଦାସ ମାଇପକୁ କହିଥିଲି ନା ନାହିଁ ?

ଆଜ୍ଞା—ଆଜ୍ଞା ।
ଭୋଟ କିଏ ପାଇବ କହି ନ ଥିଲି ?
ଆଜ୍ଞା—ଆଜ୍ଞା ।

ସେ ସିଦ୍ଧି ଦାସ ଶଳା ଫେର୍ ମତେ ଚଟା କାଟିଲା । ହଉ ଠିକ୍ ଅଛି । ସିଦ୍ଧି ଦାସ ଅନାଦିକି ତା' କାଠ କେବିନ୍ ମାସିକ ପଚିଶ ଠଙ୍କା ଭଡ଼ାରେ ଦେବ ବୋଲି ମୋ ଆଗରେ କଥା ଛିଣ୍ଡାଇଲା । ମୋ ହାତରୁ ଅନାଦି ଲାଗି ତାକୁ ଆଗତୁରା ପଚିଶି ଠଙ୍କା ଦେଲି । ଶେଷରେ ସେ କେବିନ୍ ଦେଲା ନେଇ ରସୁଲ ମିଆଁକୁ । ରସୁଲ ମିଆଁ ତିରିଶି ଠଙ୍କା ଦେଇ ତା' ଭିତରେ ସବୁଦିନେ ଛେଳି କାଟିବ । ହା'ରେ ଧର୍ମ ! ସିଦ୍ଧି ଦାସର ଭଲ କ'ଣ ଅଭାବ ଅଛି ?

ଅନୁଗତ ଶିଷ୍ୟଟିଏ କହିଲା—ଆଜ୍ଞା, ଆପଣ ତାକୁ ଏଥର ପାନେ ଦିଅନ୍ତୁ । ତା ଭିତ ହାଣ୍ଡିରୁ ବିଷ୍ଠା ନ ବାହାରିଲେ ସେ ଶଳା ଚେଂଖିବ ନାହିଁ ।

ବାବାଜୀ ଟିକଏ ମୁରୁକ ହସା ଦେଇ କହିଲେ, ଆରେ ନାଇଁରେ ଦଳେଇ ! ସେ କର୍ମମାନ ମୁଁ ଆଉ କରୁନ । ମେ ତା ଫଳ ପାଇବ ଗୁଏଁ । ମାହାପୁରୁ କହି ନାହାନ୍ତି ଗୀତାରେ—

ଯତ୍‌କର୍ମ କୁରୁ ତତ୍‌ଫଳ ପ୍ରାପ୍ତଂ
ଯତ୍‌କର୍ମ ନ କୁରୁ ତତ୍‌ଫଳ ଅପ୍ରାପ୍ତଂ ।

ଯାହା କରିବ ତା' ଫଳ ପାଇବ—ଯାହା ନ କରିବ ତା' ଫଳ ନ ପାଇବ । ସିଦ୍ଧି ଦାସ ଭୋଗିବ ଯେ ! ସେଲ୍‌ଟିକସ ଯୋଗୀମାନେ ତା' ଗୁମର ଜାଣି ଗଲେଣି । ଏଠି ଗୃଳଘରେ ଗୃଉଳ ବକ ସେଠି ଗାଁରେ କୋଠା ପିଟିଲଣି । ତାଙ୍କ ଆଖିରୁ ଦେଖ ବର୍ତ୍ତିବ କି ?

ଆଜ୍ଞା ! ଆପଣ ତା' ଗୁରୁ ! ସେ ଫେର୍ ଆପଣଙ୍କୁ ଚଟା କାଟିଲା !!

ବାବାଜୀ ଟିକେ ଉଦାର ଢଙ୍ଗରେ ଲଘୁ ଉପହାସ ରସରେ ଧାଡ଼ିଏ ପ୍ରାକୃତ ଗ୍ରାମ୍ୟଶ୍ଳୋକ ଅଶ୍ଳୀଳ ଶବ୍ଦ ସମ୍ବଳିତ କରି ଝାଡ଼ି କହିଲେ —ଆରେ ବାପା ! ଏ ଯୁଗ ହେଲା ଗୁରୁ ଚଟାକଟା ଯୁଗ । ଖୋଜ ଖୋଜ ଗୁରୁଙ୍କୁ......

ଏହି ସମୟରେ ପାଖ ମଠର ସାଇକେଲ ଦୋକାନ ଭିତରୁ ଜଣେ ଭଦ୍ର ଧନାଢ଼୍ୟ ବ୍ୟକ୍ତି ଖମ୍‌କନା ବାହାରି ଆସି ଖୁବ୍ ଝାଣ କରି କହିଲେ—ହଇଓ ବାବାଜୀ ! ତୁମର କେମିତି ଅକଲ କହ ? ସର୍ବସାଧାରଣ ସ୍ଥାନରେ ବାବାଜୀ ହୋଇ ଗ୍ରୈଜ୍ୟାର କଥାଗୁଡ଼ାଏ କହୁଛ ! ନା-ନା, ଭଦ୍ର ସ୍ଥାନରେ ତୁମର ଏ କ'ଣ ଠିକ୍ ଆଚରଣ ?

ବାବାଜୀ ଟିକଏ ଥତମତ ଖାଇଗଲେ । ମାତ୍ର ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ—ଆହେ ! ଗ୍ରୈଜ୍ୟାର କଥା କ'ଣ ? ଗ୍ରୈଜ୍ୟାର କଥାରୁ ଏ ଜଗତ ଉତ୍ପନ୍ନ ହେଇଛି ? 'ଶୂନ୍ୟକୁ ଶୂନ୍ୟଟି ରମିଲା—ତା' ଡହୁଁ ବିନ୍ଦୁଟି ଷରିଲା । ବିନ୍ଦୁରୁ ପରମ ହେଲା ଜାତ—ତା' ତହୁଁ ଜୀବଟି ସମ୍ଭୂତ ।' ଆମେ ସମସ୍ତେ ଏଇ ଗ୍ରୈଜ୍ୟାର କଥାରୁ ଜାତ ହୋଇଥାଇଁ— ନା କ'ଣରେ ଅନାଦ ?

ଅନାଦି ନାମଧେୟ ଶିଷ୍ୟଟି ତା'ର ଧୂଆଁଳିଆ ଆଖି ଓ ଗଞ୍ଜୋଡ଼ି କଣ୍ଠରେ ଘଡ଼ଘଡ଼ି କରି କହିଲା—ଆଜ୍ଞା, ସେ କଥା ଆଉ ପଚାରିବାକୁ ଅଛି ? ସୋଽହଂ ଭଗବାନ ପରି ଷୋଳସହସ୍ର ଗୋପନାରୀ –ମୋତେ ବରିଲେ ତପକରି···କହି ପୃଥ୍ୱୀକି ଏଇ ଗ୍ରେଟୁକାରଭାବ ଶିଖେଇ ଦେଇ ଗଲେ । ଗ୍ରେଟୁକାରଭାବ ନ ରହିଲେ ଏ ପୃଥ୍ୱୀ ଆଜ୍ଞା ଆଉ ରହିବ ?

ମାଡବାଗୀଶ ଓ ଭଦ୍ର ରୁଚିବନ୍ତ ଅସହିଷ୍ଣୁ, ଧନାଢ୍ୟ ବ୍ୟକ୍ତିଟି ଆଡୁରି ଚାଲିଯାଇ କହିଲେ କ'ଣ ତୁମେ ବୁଝିଛ ହେ ଗଞ୍ଜାଖୋର । ଗୋପୀକୃଷ୍ଣ ତତ୍ତ୍ୱ ତୁମେ କ'ଣ ବୁଝିଛ ? ସେ ଜୀବ ପରମଙ୍କ ତତ୍ତ୍ୱ— —ପ୍ରକୃତି ପୁରୁଷଙ୍କ ଲୀଳା—ଗଞ୍ଜେଡ଼ିଆଙ୍କ ଗୁଲଖଟି ନୁହଁ ।

ବାବାଜୀ କହିଲେ—ହଇଓ ବାବୁ ! ତୁମେ ତୁମ ବାଗରେ ବୁଝିଛ । ଆମେ ବୁଝିଛୁ ଆମ ବାଗରେ । ତୁମକୁ ଯଦି ଆମ କଥା ନ ରୁଚିଲା ତେବେ କାନ ବନ୍ଦକର । ଆମ କଣ୍ଠ ରୋଧିବାକୁ ତୁମେ କିଏ ?

କଶୋରୀ ମହାନ୍ତ ଏଣେ କେତେବେଳୁଁ ସେ ବାବାଜୀଙ୍କ ଉପରେ ଚାଲିଲାଣି—ରକ୍ତଗୁଡ଼ିକ ଗରମ ହୋଇଲାଣି । ତା'ର ତ ବାବାଜୀଙ୍କ ଉପରେ ଭାରି ରାଗ । ଅଧେ କାରଣ ହେଉଛି ମୁଁ ସବୁପ୍ରକାର ବାବାଜୀଙ୍କ ପିଛୁ ଧରିଥାଏ ବୋଲି । କଶୋରୀ ମହାନ୍ତ ମତରେ ମୁଁ କୁଆଡ଼େ ଜଣେ ଭଣ୍ଡ ବୈଷ୍ଣବ । ମୁଁ କହେ—ଭାଇ ! ମତେ ଭଣ୍ଡ କହନା—ମୁଁ ଜଣେ ଭାଣ୍ଡ ବୈଷ୍ଣବ—ତା' ମାନୁଛି ।

ବାବାଜୀ କଥା ଶୁଣି ସେ ବାବାଜୀଙ୍କ ଆଡ଼କୁ ଚହିଁକି ଗଲା । ହାତ ହଲାଇ ପଚାରିଲା—ହଇଓ ! ଆମ କାନ ବନ୍ଦ କରିବାକୁ ତୁମେ କିଏ ? ହଇଓ ? ଗୀତାରୁ ଯୋଉ ଶ୍ଳୋକ ବୋଲିଲ ସେ କୋଉ ଅଧ୍ୟାୟରେ ଅଛି ?

ବାବାଜୀ ଚଟାପଟ ଓଲଟା ପ୍ରଶ୍ନ କଲେ—କୋଉ ଗୀତା କଥା ପଚାରୁଛ ? କଶୋରୀ କହିଲା—ଗୀତା କେଇଟା କିଓ ? ବାବାଜୀ ପୁଟୁକି ମାରି କହିଲେ—ଗୀତା ଅଶେଷ ପ୍ରକାର । ଯେତେ ଗୋପୀ, ସେତେ କୃଷ୍ଣ । ଯେତେ ଅର୍ଜୁନ, ସେତେ ଗୀତା । ଅଶେଷ ପ୍ରକାର ଭଗବତ, କିଏ ଜାଣେ ଗୋବିନ୍ଦର ଗତି ।

ମାଡ଼ବାଗୀଶ ଧନାଢ଼୍ୟ ଭଦ୍ରବ୍ୟକ୍ତି ଚିହାଇଲା ଭଳି କହିଲେ—ହ ! ତା ନୁହଁ ଆଉ କ'ଣ ? ତୁମଭଳି ଗଞ୍ଜାଖୋର ଅର୍ଜୁନଙ୍କ ପାଇଁ ଗ୍ରେଟକାର ଗୀତା ନ ଥିବ ଆଉ କ'ଣ ?

ବାବାଜୀ କହିଲେ—ହଇଓ ବାବୁ ! କ'ଣ ଏତେବେଳ ଯାଏ ସେଇ ଗ୍ରେଟକାର ଗ୍ରେଟକାର ହଉଛ ହେ ?

ଗ୍ରେଟକାର କଥା ନ କହିଲେ ରଥ ଚଳିବ ନାହିଁ—ବୁଝିଲ ?

କଣେଶାଗା ମାର ନ ମାର ହୋଇ ଫେର୍ ଚହିଙ୍କିଲ—ରଥ କଥା ଏଠି କାହିଁକି ପଡ଼ୁଛି ହୋ ? ଏଠି କ'ଣ ରଥ ଗୁଲୁଛି ?

ବାବାଜୀ କହିଲେ— ରଥ ମର୍ମ ବୁଝିଛ ବାବୁ ? ଏ ଦେହ ସବୁ ହେଲା ରଥ । ତା' ଭିତରେ ବସିଛି ଜଗନ୍ନାଥ—ସେ ତୁମ ଭଦ୍ରଲୋକଙ୍କ ବେଦ ଶୁଣିଶୁଣି ଦାରୁଭୂତ—ତାଙ୍କୁ ଆମ ଭଳି ଗ୍ରେଟକାରମାନେ ଟାଣି ଟାଣି ଚଳାଉଛୁ ପଥ । ଗ୍ରେଟକାର କଥା ନ ହେଲେ ବାବୁ କୋଉ ରଥ ଚଳିବନି ଜାଣିଥାଅ । ଦେଖୁନ ! ଗ୍ରେଟକାର କଥା କହିଲି ବୋଲି ତୁମେ ସବୁ ମତେ ଚଳିଲ ନା ନାହିଁ । ତୁମମାନଙ୍କ ଆତ୍ମାପୁରୁଷ ଚଳିଲେ ନା ନାହିଁ । ସେ ବାଟେ ନ ବୁଝିଲେ ଏ ବାଟେ ହେଲେ ବୁଝ । ହେଁ—ହେଁ—ହେଁ··· ।

ବାବାଜୀ ଚମତ୍କାର ହସଟାଏ ହସିଲେ । ସେ ହସର ଅର୍ଥ ସତେକି—ଏହାପରେ—ଏ କଥା ପରେ—ଅଳଂ ଅତି ବିବାଦେନ । ଏଥର ଉଠାଅ ଡେରା—ଯେଖା ବାଟରେ ଯିଏ ଯାଅରେ ବାପା !

କିନ୍ତୁ କଣେଶାଗା ମାହାନ୍ତି ମାଉଁଆ ଚିଙ୍ଗିଶୂଳିଆ ଚିଙ୍କଭଳିଆ ଲାଗିଥିବ । ସେଇ ଗୋଟାଏ ପଦ ଉପରେ ଜିଦ ଧରି ଫେର୍ କହିଲା—ସେସବୁ ଷଣ୍ଡ ଗୁଲିକ କଥା ତମ ହିନାଥ ମେଳାରେ ଶୁଣାଇବ । ପବ୍ଲିକ୍ ଜାଗାରେ ଭଦ୍ରଲୋକଙ୍କ ଆଗରେ ଗ୍ରେଟକାର କଥା ଅତି ଅଶ୍ଳୀଳ ଅଭଦ୍ର ଆଚରଣ—ବୁଝିଲ ବାବାଜୀ ? ଏଣିକି ସାବଧାନ ହୁଅ ।

ହଠାତ୍ ବାବାଜୀଙ୍କ ସେଇ କମିଆଁ କରା ଆଖି ଦୁଇଟିରେ ଚିଲମ୍ ଉପରେ ଗଞ୍ଜେଇ ନିଆଁ ଭଳି କ'ଣ ଗୋଟାଏ ଧପ୍ କିନା ଜଳି ଉଠି

ଲଭପାଇ ଖାଲ ରଡ଼ ରଡ଼ ଦଶିଲ୍‌ । ସେ ତାଙ୍କ ବିଶୂଳ ଚମୁଟାକୁ ଦୁଇ ଗୃତଥର ଝମ୍ ଝମ୍ କର କଶୋଖ ଆଡ଼କୁ ଚାହିଁ ଗଲେ । କଶୋଖ ଚମକ ପଡ଼ ମୋ ଉପରକୁ ଆଉଜ ଗଲ । ମୁଁ ତାକୁ ଧରୁ ଧରୁ ବାବାଜୀ କହିଲେ—ଘାବରେଇ ଯାଅ ନାହିଁ ବାବୁ; ଶୁଣ । ଭଦ୍ରଲୋକ ହେଇଛ ପରା ? ଗ୍ରେଚାର କଥାରେ, ଅଶ୍ଳୀଳ କଥାରେ ଧିଅକୁ ଲାଗି ଯାଉଛ । ଆସ ଆସ, ଗୁଡ଼ ଅଛୁ ଯଦ ଆସ—ଦେଖେଇ ଦେବ ଆସ—କଏ ଶ୍ଳୀଳ କଏ ଅଶ୍ଳୀଳ । ତୁମମାନଙ୍କର ଗ୍ରେଚାରପଣିଆ ଦେଖିବ ଆସ—ଏଠି ଏ ଆଲୁଅରେ ଦଶୁ ନାହିଁ । ଆସ— ।

ସେ ତାଙ୍କ ଟାଣୁଆ ପଞ୍ଜାରେ ଦହିଙ୍କୁ ଭଡ଼ ଧର ଆଗକୁ ଓଟାର ଗୃଲଲେ । ମୁଁ ଆନନ୍ଦରେ ତାଙ୍କ ହାତରେ ମୋ ହାତକୁ ସମର୍ପି ଦେଇ ତାଙ୍କ ସାଙ୍ଗେ ଗୃଲଲ, କନ୍ତୁ କପିଳକୁ଼ଛା କଶୋଖ ମାହାନ୍ତି ଟିକଏ ଓଟାର ହେଲରୁ ବାବାଜୀ ତାକୁ ଯଜୋରେ ଝିଙ୍କ ଟାଣି ନେଲେ । ତା' ପାଞ୍ଚଟା ଯାକ ଆଙ୍ଗୁଠି ଟକ ଟକ ହୋଇ ଫୁଟିଗଲ । ସେ ଉଃ ଆଃ ହୋଇ ବାବାଜୀ ସାଙ୍ଗେ ଓଟାର ହୋଇଗଲା । ଆମ ପଛେ ପଛେ ସେଇ ମତବାଗୀଶ ଧନାଢ଼୍ୟ ଭଦ୍ରବ୍ୟକ୍ତି ସମେତ ଆଉ ଦୁଇ ଗୃରଜଣ ଭଦ୍ର ଦେଖଣାହାଖ ଅଶ୍ଳୀଳ ଦୃଶ୍ୟ ଦେଖିବା ଲୋଭରେ ମଧ ଗୃଲଲେ ଏବଂ ବାବାଜୀଙ୍କର ଅନୁଗତ ବିନାଥମେଲାକାଖ ଚିଦ୍ଧ୍ୟମାନେ ମଧ ଗୃଲଲେ; କନ୍ତୁ ବେଶୀ ବାଟ ନୁହଁ । ସେହି ଝଲମଲ ଆଲୁଅ ଓ ଭଦ୍ର କୋଠାବାଡ଼ି, ଦୋକାନ ବଜାରଠାରୁ ମାତ୍ର ଶହେ ଗଜ ଯାଇଛୁ କ ନାହିଁ—ବାବାଜୀ ଆମକୁ ଆଗକୁ ପେଲ ଦେଇ କହିଲେ—ଦେଖ ବାବୁ ଦେଖ—ଜ୍ଞାନ-ଚକ୍ଷୁ ମେଲେଇ ଦେଖ—ଗ୍ରେଚାର କଥା ଦେଖ—ଦେଖ ତୁମର ଲଙ୍ଗଳା ରୂପ—ଦେଖ ।

ଆମ ଆଗରେ ଅନ୍ଧାର । ନରକର ଅନ୍ଧାର । ସେଠି ନର୍ଦ୍ଦମାର ଦୁର୍ଗନ୍ଧ ଧାସ—ମିଞ୍ଜି ମିଞ୍ଜି ଡବ ଆଲୁଅ—ସାଲୁସାଲୁ କଳା କଳା ପୋକ—ଭୂତମାନେ—ଚରୁଗୁଣୀମାନେ—ଖାଲ କଚର ମିଚର ଲଙ୍ଗଳା ରୋଗିଣା ପିଲଙ୍କ କାନ୍ଦଣା—ଅର୍ଦ୍ଧିତ ମାଈକନାମାନଙ୍କ କଣ୍ଠର ଆର୍ତ୍ତ ଚତ୍କାର—ରୋଗିଣା କୁକୁର ଛୁଆଙ୍କ କୁଁ କୁଁ—ମଦୁଆ ରୋଗିଣା ଶ୍ରମିକ ଓ କେସା-

ବାଳମାନଙ୍କର ପାଶବକ ପ୍ରଳାପ—ବାଡ଼ଆପିଠା—ଓ ତା' ଭିତରେ ପୁଣି ପଚ୍ଚ ମାଂସଲେଖା କେତେ ଭଦ୍ର ଶାଗୁଣାଙ୍କର ଡେଣା ଫଟଫଟ……

ବାବାଜୀ ଚକ୍କାର କରି କହିଲେ—ଦେଖୁଛ ବାବୁ ଦେଖୁଛ ? ଜାଳୁଥା ସେପଟେ ଭଦ୍ର ଆଳୁଅ—ଗଡ଼ୁଥା ସେପଟେ ଭଦ୍ର କୋଠାବାଡ଼— ଝାଁଡ଼ୁଥା ସେପଟେ ଭଦ୍ର ବକ୍ତୃତା ବଚନକାମାଳା । ଖୋଲୁଥା ସେପଟେ ଭଦ୍ର ଦୋକାନ ବଜାର—ବୋଲୁଥା ସେପଟେ ଯେତେ ବେଦ ବେଦାନ୍ତ; ତା'ଠୁଁ ଶହେ ଗଜ ଦୂରରେ ଏ ଅଶ୍ଳୀଳତା, ଏ ଗ୍ଲେଚ୍ଛକାରିଆ କଥା କେମିତି ତିଷ୍ଠି ରହିଛି ? ତୁମମାନଙ୍କ ଆଖି କ'ଣ ଫୁଟି ଯାଇଛି ? କାନ କ'ଣ ତାବଦା ହୋଇ ଯାଇଛି ? ତୁମର ସେଠି ସଙ୍ଗୀତ ରଖି କଜଅାକୁ ବଦା କରିଛ ଏଠିକି । ସେଠି ଗଙ୍ଗା ବୁହାଇ ନର୍ଦ୍ଦମାକୁ ଗୁଡ଼ିଛ ଏଇଆଡ଼କୁ । ତୁମ ସମାଜର ଶ୍ରେଷ୍ଠଘର ସେଠି—ଆଉ ପାଇଖାନା ଏଠି । ସେଣେ ତୁମ ସମାଜର ଅଣ୍ଟାଠାରୁ ଉପରକୁ ଭଦ୍ର ପୋଷାକରେ ଘୋଡ଼େଇ ରଖିଛ— ତୁମର ଅଣ୍ଟାତଳ ଆସି ଏଠି—ଦେଖିଲଣି ତାକୁ ? ଘା—ଘା—ପଚ୍ଚ ଘା— କଟା ଘା—ପୋଡ଼ା ଘା— । ମଲମ ଅଛି ବାବୁ ? ଜାଣିଛ କହି ଇଲମ୍ ଯା ପାଇଁ ? ଲଗାଅ ଏଠି ଜଲଦ, ଯଦ୍ଦ ସତକୁ ସତ ଭଦ୍ର ହୋଇଥାଅ— ଭଦ୍ରତା ବଞ୍ଚି ରହୁ ବୋଲି ବାଞ୍ଛା କରୁଥାଅ । ଘରେ ଘରେ ପୁଣି ସେଠି ଭଦ୍ର ମଲାଟ ଭିତରେ ଗ୍ଲେଚ୍ଛକାର କଥା ଲେଖି ବହି ଛପାଇ ବକ ପଇସା କମାଉଛ—କାନ୍ଥମାନଙ୍କରେ ପାଚେରୀମାନଙ୍କରେ ଲଙ୍ଗଳା ମାଈକନା, ଲଙ୍ଗଳା ଅଭିନେତ୍ରୀଙ୍କ ଗ୍ଲେଚ୍ଛକାର ଛବି ଭଦ୍ର ରଙ୍ଗରେ ରଙ୍ଗେଇ ରଞ୍ଜେଇ ମାରି ପଇସା କମାଉଛ— । ଏମାନଙ୍କଠାରୁ ସବୁ ଭଦ୍ରତାତକ ତୁମେମାନେ ଶୋଷି ନେଇ ନିଜେ ଭଦ୍ର ହୋଇ ବସିଛ । ହଇଓ ବାବୁମାନେ ? ତୁମେମାନେ ସମସ୍ତେ ଗ୍ଲେଚ୍ଛକାର ନ ହୋଇଥିଲେ ଏଠି ଏ ଗ୍ଲେଚ୍ଛକାର ଜାଗା ଥାନ୍ତା ? ତେମେ ସମସ୍ତେ ଧୋବଧାଉଳିଆ ଗ୍ଲେଚ୍ଛକାରଙ୍କ ପୁଅ—ଗ୍ଲେଚ୍ଛକାରଙ୍କ ବାପ । ତମ ଦୋକାନୀ, ମାଷ୍ଟର, ହାକମ, ନେତା ତହୁଁ ବଳି ତହୁଁ ବଳି ଗ୍ଲେଚ୍ଛକାର । ଯାଅ ଯାଅ ।

ମୁଁ ଏ ସବୁ ଦେଖି ଓ ଏ ସବୁ କାଳେଣୀ କଥା ଶୁଣି ଭୟରେ ଥରୁଥିଲି । କଣଶୋଗ ମାହାତ୍ମ୍ୟ ଗ୍ରନ୍ଥ କହୁ ଭଗ ଠାଣ । ସେ ସେମିତି ଚଡ଼ାଳିଆଭାବେ କହିଲି—ଆମେ କ'ଣ ଏ ସବୁ ଦେଖିନୁ ? ଏ ସବୁ

ଜାଣିନୁ ? ତେମେ ଆମକୁ ଏ ସବୁ କ'ଣ ଦେଖଉଛ ? ଏ ସବୁ କୁତ୍ସିତ ସ୍ଲମ୍ ଆମେ ସବୁଦିନେ ଦେଖୁଛୁ ।

ବାବାଜି କହିଲେ—ଦେଖିନ ବାବୁ । ଏଣିକି ଦେଖିବ । ତା' ବେଳା ପହୁଞ୍ଚିଗଲଣି । ବାରହାତ ଖଣ୍ଡା ବାହାରିବ । ବଉଳା କମ୍ଭୀର ମାଡ଼ିଆସିବ—ଲଙ୍ଗରାଜଙ୍କ ନନ୍ଦୀ ଷଣ୍ଢ ଧଡ଼ପଡ଼ ହୋଇ ଉଠି ଶିଙ୍ଘ ଆଉ ଖୁରାରେ ଖାଲ ଖୁସ୍ମ ଖାଇ ଏ ମୁଣ୍ଡ, ସେ ମୁଣ୍ଡ ଧ୍ୱଂସିବ । ଚଉଷଠି ଯୋଗିନୀ କଳକଳା ନାଦ କରି ଭଦ୍ର ଲୋକଙ୍କ ଘରେ ଘରେ ପଶିବେ । ନଜେ ଚଣ୍ଡିକା ମହାକାଳୀ ଜିଭ ଲହଲହ କରି ଅଥିର ହୋଇ ନାଚଲଣି । ଗୋଟି ଗୋଟି କରି ଆଗ ତୁମ ଭଦ୍ରଲୋକଙ୍କୁ ଖପରରେ ଛେଦି ତୁମ ଶୋଣିତ ପିଇବ ହେ ରହିଥାଅ । ସମଲା ପଡ଼ିବନ ଏ ପୃଥୀ । ଏ ମହୀ ଦୁଲୁକିବ । ଜୁମର ଡାକୁଛି "କଲକତାରେ ଯେଉଁ କାଳୀ—ସେହି ସେ ଦେବ ସିଂହରଡ଼ି । ସେ ରଡ଼ି ଚମତ୍କାର ହେବ—ଚତୁର୍ଦ୍ଦିଗକୁ ସେ ଶୁଭିବ ।"

ଅନୁଗତ ଭକ୍ତଟିଏ ହାତଯୋଡ଼ି ପଚାରିଲା—ଏଥିରୁ ଆଉ ଉଦ୍ଧାର ନାହିଁ ମାହାପ୍ରୁ ?

ଅଛି—ଅଛି । ତ୍ରିନାଥମେଳା କର—କହୁଛି—ବେଳ ଥାଉଁ ଥାଉଁ ତ୍ରିନାଥମେଳା କର । ଭୋଗ ଲଗାଅ ନଜ ପାଖରେ—ଆଉ ପର ପାଖରେ ଆଉ ଭଗବାନଙ୍କ ପାଖରେ । ସମାନଭାବେ ଭୋଗ ଲଗାଅରେ — କାହାପ୍ରତି ପାତର ଅନ୍ତର କର ନାହିଁ । କମ୍ ବେଶୀ କର ନାହିଁ । ମହାମାୟା ଆଦ୍ୟମାତା ଦୁର୍ଗା ଦୁର୍ଗତି-ନାଶିନୀ ତା' ଶକ୍ତି ଦେଇ ପଠାଇଲାଣି ଜଣକୁ—ଏ ଜମ୍ବୁ ଦ୍ୱୀପରେ ।

ମାୟା ସୁରଭି ରୂପ ହୋଇ
ସବୁଆ ଭ୍ରମଣ କରଇ ।
ସେ ଗାଈ ମୁଖେ ଦେଇ ତୃଣ
ରଖ ତା' ବସ୍ତାର ଜୀବନ ।
ତେବେ ଝରିବ ସୁଧା-କ୍ଷୀର
ଶ୍ତନହେଁ ମିଶି ପାନ କର ।

ଆରେ ତିନହେଁ କଏ ବୁଝିଲଟିରେ ? ଏକ ଅର୍ଥରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର—ଦୁଇରେ ବୁଝିଲେ ଗୁରୁ, କୃଷ୍ଣ, ବୈଷ୍ଣବ—ନ ହେଲେ ଜୀବ, ପରମ, ବ୍ରହ୍ମ—ଆଉ ତ୍ରେକାରିଆ ମୋଟା ଅର୍ଥରେ ବୁଝିଲେ ବି ସେଇ ଏକା କଥା—ମୁଁ, ତୁ ଆଉ ସେ—ଅର୍ଥାତ୍ ତୁ ଖା—ତାକୁ ଦେ । ଦୁହେଁ ମିଶି ଫେର୍ ତାକୁ ଦେ—ତାକୁ କଏ ? କର୍ତ୍ତାରେ ଅନାଦି କର୍ତ୍ତା । ତିନହେଁ ଧରାଧରି—କାହାକୁ ଗୁଡ଼ନା—ସମାନ କରି ଧରିଥା । ବୁଝିଲୁ ବାବୁ ! ଦଲେଇ ବୁଝିଲ ତ ? ଜଗିଥାଅ ସେ ଗାଈକ—ସେ ବାଛୁରୀକ, ଆମେ ଗୃହଳରେ ବାବା—ଗୃହଳୁ । ବାବାଜୀ ସେଇ ନାରକୀୟ ଅନ୍ଧାରଭିତରକୁ ପଶିଗଲେ ଅମୁହାଁମୁହାଁ—ସତେକି ଗଙ୍ଗାଭିତରକୁ ପଶି ବୁଡ଼ିଗଲେ । ଏହି ସମୟରେ ଆମ ମେଳରୁ ତାଙ୍କର ଅନୁଗତ ଶିଷ୍ୟଟିଏ ବିଭୋଳ ହୋଇ ଅତର୍କ ଆତଙ୍କରେ ଡାକ ଛାଡ଼ିଲା—

ଆରେ ! ମନମତ୍ତ ଦୁହାଁଳ ଗାଈ
ଯଦି ଗାଈ ପଳାଇବ—ଗାଈ ପଳାଇବ—
ଗାଈ ପଳାଇବ ପଘା ଛିଣ୍ଡାଇ ।
ମନମତ୍ତ ଦୁହାଁଳ ଗାଈ ।

ସେହି ନାରକୀୟ ଅନ୍ଧାରଭିତରୁ କଏ ପୁଣି ପାଟି କରି ତିନଟା କୁହାଟ ମାରି ଡାକ ଲଗିଲା—

ଆଲୋ ନେଳି ! ଆ-ଆ-ଆ !
ଆଲୋ କଇଁ ! ଆ-ଆ-ଆ !
ଆଲୋ ପାଟ ! ଆ-ଆ-ଆ !

ସେଇ କୁହାଟ ଥିଲା ଖୁବ୍ ଗମ୍ଭୀର—ଆଶାଦ୍ୟୋତକ, ଅସ୍ଥା ଓ ବିଶ୍ୱାସପୂର୍ଣ୍ଣ—ସତର୍କ ଓ ସଚେତନ—ପୁଣି ଖୁବ୍ ପବିତ୍ର—ବେଦର ଓଁକାର ଭଳି ।

———

# ଡଲିର ଫୁଲ



**ଅଖିଳମୋହନ ପଟ୍ଟନାୟକ**

ଭଦ୍ରମହିଳା ମୋତେ ପ୍ରଥମରୁ ହିଁ ଅଜଣା ବୋଲି ଧରି ନେଇ-ଥିଲେ । ମୋର ସେଥିରେ ପ୍ରତିବାଦ କରିବାକୁ ମଧ୍ୟ ସାହସ ନ ଥିଲି ।

ଘଟଣାଟା ପ୍ରଥମରୁ କୁହେ ।

ମୁଁ ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଛାତ୍ର । ପୂଜା ଛୁଟିରେ ବୁଲି ଯାଇଥିଲି ଗୌହାଟୀ । ସେଇଟା ବୋଧହୁଏ ସହରର ଏକ ଅଭିଜାତସମ୍ପନ୍ନ ପଡ଼ା ହେବ । କାରଣ ପ୍ରାୟ ଏକ ପ୍ରକାରର ସୁନ୍ଦର ସୁନ୍ଦର ଘର ସବୁ ଧାଡ଼ି ବାନ୍ଧି ରାସ୍ତା କରରେ ଠିଆ ହୋଇଛନ୍ତି । ଏଇ ନୂଆ ନୂଆ ଘରଗୁଡ଼ିକ ଯେ ଆଧୁନିକ ରୁଚିସମ୍ପନ୍ନ ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ବେଳେ ବେଳେ ଏମାନଙ୍କର ଏକ ପ୍ରକାରର ଗଠନ ପ୍ରଣାଳୀ ଦର୍ଶକ ମନରେ ଏକ କ୍ଲାନ୍ତି ଆଣିଦିଏ । ମନେହୁଏ ଏମାନେ ଯେମିତି ରାତାରାତି ବଜାରରେ ବନ୍ଦୀ ହଉଥିବା କୌଣସି ପ୍ରାସାଦ-ଶୈଳୀ ବହି ଭିତରୁ ଓହ୍ଲେଇ ଆସି ଏଇ ରାସ୍ତା କରରେ ସ୍ଥାବର ହେଇ ଯାଇଛନ୍ତି । ଘର କହିଲେ ଯେଉଁ ସ୍ୱାତନ୍ତ୍ର୍ୟ କଥାଟା ମନକୁ ଆସେ ତାହା ଯେପରି ଏଇ ଅତିକାୟ ପ୍ରାସାଦଗୁଡ଼ିକରେ ଏକାନ୍ତ ଅଭାବ । ସେ ଘରର ଅଧିବାସୀମାନଙ୍କ ସହିତ ମୋର ପରିଚୟ ନ ଥିବା କଥା । ତେବେ ଘର କଥାଟା ମୋଟେ ମୁଖ୍ୟ କଥା ନୁହେଁ । ମୁଁ ମୋର ମୂଳ କଥାକୁ ଫେରିଆସେ ।

ମୁଁ ରହୁଥାଏ ଏଇ ଅଭିଜାତ ପଡ଼ାର ଗୋଟିଏ ହୋଟେଲ୍‌ରେ । ଏକ ପ୍ରାୟ ଆସନ୍ନ ସନ୍ଧ୍ୟାରେ ମୁଁ ପାଦ ଗଣି ଗଣି ସେହି ରାସ୍ତାରେ

ହୋଟେଲ୍‌କୁ ଫେରୁଚ । ଅକସ୍ମାତ୍ ଆକାଶର ଉତ୍ତର କୋଣରୁ ମେଘ ଘୋଟି ଆସିଲା ଓ ପ୍ରବଳ ବେଗରେ ପବନ ବହିବାକୁ ଆରମ୍ଭ କଲା । ବଡ଼ ବଡ଼ ବର୍ଷା ଟୋପା ପଡ଼ିବାକୁ ଆରମ୍ଭ କରିବାରୁ ମନେହେଲା ଆଉ ଅଳ୍ପ ବାଟ ମଧ୍ୟ ଅଗ୍ରସର ହେବା ସମ୍ଭବ ନୁହେଁ ।

ଅଗତ୍ୟା ରାସ୍ତା କରର ନିକଟତମ ଘର ଆଡ଼କୁ ଆଶ୍ରୟ ପାଇଁ ପ୍ରାୟ ଦୌଡ଼ିବାକୁ ଆରମ୍ଭ କଲି । ସାଧାରଣ ସମୟ ହୋଇଥିଲେ ଫାଟକ ଖୋଲିବା ଆଗରୁ ଦରଓ୍ୱାନ୍ ବା ଆଲ୍‌ସେସିଆନ୍ କୁକୁର-ଜନିତ ଯେଉଁ ସ୍ୱାଭାବିକ୍ ସଙ୍କୋଚ ବା ଭୟ ଆସିଥାଆନ୍ତା, ଆସନ୍ନ ବର୍ଷାର ବୃହତ୍ତର ଆଶଙ୍କାରେ ସେ ସମସ୍ତ କଥା ମୁହୂର୍ତ୍ତିକ ପାଇଁ ମଧ୍ୟ ମନକୁ ଆସିଲା ନାହିଁ । ଫାଟକ ଖୋଲି, ସମ୍ପୂର୍ଣ୍ଣ ଓଦା ହୋଇଯିବା ପୂର୍ବରୁ ଘରର ବାରଣ୍ଡା ଉପରକୁ ଉଠିଯାଇ ସାମାନ୍ୟ ଆଶ୍ୱସ୍ତି ଅନୁଭବ କଲି ।

ଘରର ବାରଣ୍ଡାଟି ଏକ ଲୋଭନୀୟ ରୁଚିରେ ସଜାଯାଇଛି । ମସୃଣ ପ୍ରଶସ୍ତ ମୋଜାଇକ୍‌ର ମେଜିଆ ଉପରେ ଗୁଡ଼ିଏ ବେତବୁଣା ବାସ୍କେଟ୍ ଚଉକି । କାନ୍ଥରେ ପାଲିସ୍ କରା ସାଗୁଆନ କାଠର ନାମଫଳକ ତଳକୁ ଗ୍ଲେଟ ଗୋଟିଏ ଚିଠି ବାକ୍ସ । ଦକ୍ଷିଣ ପଟର ସିମେଣ୍ଟ୍ ଜାଲି ଉପରେ ଘଞ୍ଚ ଗାଧୋତମାଳ ଲଟେଇ ପଡ଼ିଚ । କିଛି ପୋର୍ସିଲେନ୍‌ର କୁଣ୍ଡରେ ଛୋଟ ଛୋଟ କେତୋଟି ଦୁଷ୍ପ୍ରାପ୍ୟ କାକ୍‌ଟସ୍ ।

ବାହାରେ ବର୍ଷାର ତାଣ୍ଡବ ଚାଲିଚ ଅବିରାମ ଓ ମଝିରେ ମଝିରେ ବିଜୁଳି ଆକାଶକୁ ଦୁଇ ଭାଗ କରୁଛି । କିନ୍ତୁ ଆଶ୍ଚର୍ଯ୍ୟ ! ଏତେ ବଡ଼ ଘରଟାରେ କେହି ଲୋକ ଥିଲାପରି ମନେ ହେଉନାହିଁ । ଏଇ ପରିସ୍ଥିତିରେ ରେଡ଼ିଓ ବା କାଚ ବାସନର ଶବ୍ଦ ଶୁଣାଯିବା ସଙ୍ଗତ ନ ହେଲେ ମଧ୍ୟ ଘରର କବାଟ ଓ ଝର୍କା ବନ୍ଦ କରାଯିବା ପାଇଁ ଅନ୍ତତଃ ତତ୍ପରତା ଦେଖାଯିବା ଉଚିତ । କିନ୍ତୁ କିଛିହେଲେ ଶବ୍ଦ ଶୁଣିବାକୁ ମିଳେନା । ଉଚ୍ଛଳ ପବନରେ ସଦର ଦର୍ଜାର ଝୀନ ପର୍ଦ୍ଦା କନା ଗୋଡ଼ ହାତ ଲମ୍ୱେଇ ଚିତ୍ ହୋଇ ଆନନ୍ଦରେ ଉଡ଼ୁଚ ଏବଂ ତା' ଭିତର ଦେଇ ଦେଖି

ହଉଚି ଯେ ଡ୍ରଇଂ ରୁମ୍‌ର କଞ୍ଚ ପତ୍ର-ପତ୍ରିକା ମଧ୍ୟ ଘର ଭିତରେ ଉଡ଼ି ବୁଲୁଛନ୍ତି । ସେ କେଉଁ ଲୋକ କେବଳ ଶବ୍ଦ ଶୁଣି ମନେ କରନ୍ତା ସେ ଘର ଭିତରେ ଯେପରି ଅନେକ ଗୁଡ଼ିଏ ପାଗ ବାହାରକୁ ବାହାରିବାର ନିଷ୍ଫଳ ଚେଷ୍ଟାରେ ଡେଣା ପିଟୁଛନ୍ତି ।

ନାଚଖାନାର ଆଡ଼ୁ ଆଡ଼ୁରୁ ଶୁଣାଯାଉଥିବା ବିଭିନ୍ନ ଯନ୍ତ୍ରସଙ୍ଗୀତର ଉଚ୍ଛୃଙ୍ଖଳ ଐକ୍ୟତାନ ପରି ବର୍ଷା ଝରିଚାଲିଚି । ଦୂରର ଲାଇଟ୍‌ପୋଷ୍ଟ ପାଖରେ ସ୍ପଷ୍ଟ ଦେଖି ହଉଚି କେମିତି ଗୋଟିଏ ଗୋଟିଏ ଜଳବିନ୍ଦୁ ତଳର ପାଣି ଉପରେ ବର୍ଚ୍ଛାର ଉଜ୍ଜ୍ୱଳ ଫଳକ ପରି ବିଦ୍ଧ ହୋଇ ପର ମୁହୂର୍ତ୍ତରେ ରୂପାର ଗୁଣ୍ଡ ପରି ବିଚ୍ଛୁରିତ ହୋଇ ପଡ଼ୁଛନ୍ତି ।

ଖୁବ୍ ଦ୍ରୁତ ଗତିରେ ଗୋଟାଏ ଅତି ଦୀର୍ଘ କୃଷ୍ଣକାୟ ଗାଡ଼ି ପୋର୍ଟିକୋ ତଳକୁ ପଶିଆସି ବ୍ରେକ୍ ଦେଲା । ଗାଡ଼ି ପୋର୍ଟିକୋ ତଳେ ନିଷ୍ଫଳ ହୋଇଯିବା ପରେ ମଧ୍ୟ ତା'ର ସାମ୍‌ନାର ଉଜ୍ଜ୍ୱଳ ଆଲୁଅ ଦୁଇଟା ତଥାପି ଜଳୁଥିଲା ଓ ସେଇ ଆଲୁଅ ମୋ' ଉପରେ ପଡ଼ି ମୋର ସମସ୍ତ ବ୍ୟକ୍ତିତ୍ୱକୁ ଲାଞ୍ଛିତ କରୁଥିଲା ପ୍ରତି ମୁହୂର୍ତ୍ତରେ । ମୋର ମନେହେଲା, ମୁଁ ଯେପରି ଜଙ୍ଗଲରେ ପଥଭ୍ରଷ୍ଟ ହୋଇଥିବା ସେଇ କାଠୁଆଳ ପୁଅ ଯିଏ ଏକ ନିଶ୍ଚିତ ଆଶ୍ରୟର ସନ୍ଧାନରେ ପ୍ରତାରିତ ହୋଇ ଦୈତ୍ୟର ଗୁମ୍ଫାରେ ଆଶ୍ରୟ ନେଇଛି ।

ଆଲୁଅ ଲିଭିଗଲା ଓ ଅନ୍ଧକାର ମୁଖ ବ୍ୟାଦାନ କରି ସମଗ୍ର ପରିବେଶଟିକୁ ମୁହୂର୍ତ୍ତକ ମଧ୍ୟରେ ଗିଳିନେଲା । ଗାଡ଼ି ଭିତରୁ ଗୋଟିଏ ଉତ୍କଣ୍ଠିତା ନାରୀ କଣ୍ଠ ବେଶ୍ ଜୋର୍‌ରେ କହି ଉଠିଲା, "ଆରେ ! ତମେ ଏଠି ଏକଜାତିଆ...ଇ" ଏବଂ ତା'ପରେ ଯେଉଁ ନାରୀ ଗାଡ଼ିରୁ ଓହ୍ଲାଇ ଆସି ଏକ ମଧୁର ଉଷ୍ମ ଆକର୍ଷଣରେ ମତେ ଘର ଭିତରକୁ ନେଇଗଲେ ତାଙ୍କୁ ମୁଁ ଆଲୁଅରେ ପ୍ରଥମ ଥର ପାଇଁ ଦେଖିଲି ।

ଭଦ୍ରମହିଳାଙ୍କର ବୟସ ପ୍ରାୟ ଚାଳିଶ୍ ପାଖାପାଖି, କିନ୍ତୁ ତାଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଅତୁଟ ରଖିବାକୁ ଯେ ସେ ଖୁବ୍ ଯତ୍ନବାନ୍ ଏଥିରେ ସନ୍ଦେହର ଅବକାଶ ନାହିଁ । ଆଲୋକରେ ଆମେ ଦୁହେଁ ପରସ୍ପରକୁ

ଗୃହିଁ ରହିଚୁ ଅଥଚ କାହା ମୁହିଁରେ କଥା ନାହିଁ । କିନ୍ତୁ ସେ ଯେ ମତେ ସଂଜୟ ବୋଲି ଭୁଲ୍ କରୁଛନ୍ତି ଏଇ କଥାଟା ମୁଁ କେମିତି କହିବ ? ସେଇ କଥା ହିଁ ମୁଁ ଚିନ୍ତା କରୁଚି ମନେ ମନେ, ଏବଂ ଠିକ୍ ଏଇ ସମୟରେ ମୋ’ କଥାକୁ ଅପେକ୍ଷା ନ ରଖି ଆରମ୍ଭ କଲେ ଭଦ୍ରମହିଳା––“ତମେ ଏତେ ଟିକିଏ ବି ବଦଳି ନାହିଁ ସଂଜୟ ।—ସେବେ ତମକୁ ଯେମିତି ଦେଖିଥିଲି ତମେ ଠିକ୍ ସେମିତି ଅଛ ।”···ତା’ପରେ ପୂଝାରୀକୁ ଡାକି କଫିପାଇଁ ବରାଦ୍ ଦିଆଗଲା ।—ମୁଁ ଠିକ୍ ମନେ ରଖିଚ ନା ତମେ ଚା’ ଖାଅ ନାହିଁ । ବାପା, ମା’ ମାନେ ପିଲାମାନଙ୍କ କଥା ସବୁ ଠିକ୍ ଠିକ୍ ମନେ ରଖନ୍ତି । କିନ୍ତୁ ତମେ କହିଲ ଦେଖି ସଂଜୟ ମୁଁ ଚା’ରେ କେତେ ଚାମୁଚ୍ ଚିନି ଖାଏ ?

ଏକ ନିଶ୍ଚିତ ଭୁଲ ଉତ୍ତର ଦେବା ଅପେକ୍ଷା ନୀରବ ରହିବା ଉଚିତ ମନେକଲି । କିନ୍ତୁ ଏଇ ଅଳ୍ପ ସମୟ ଭିତରେ ଭଦ୍ରମହିଳାଙ୍କର ଆଖି ଦୁଇଟାକୁ ଏକ ସୁଦୂରପ୍ରସାରୀ ଉଦାସୀନତା ଗ୍ରାସ କରି ବସିଚି । ସେ କାଉଚ୍ ଉପରେ ସାମାନ୍ୟ ଆଉଜି ପଡ଼ି କହିଲେ—“ମୁଁ ଜାଣେ ସଂଜୟ, ତମର ବୟସରେ ଆମମାନଙ୍କ କଥା ମନେ ରଖିବା ଖୁବ୍ ସ୍ୱାଭାବିକ୍ ନୁହିଁ; କିନ୍ତୁ ଏହି ମଞ୍ଜୁକଥା ଦେଖ, ସେ ଏମିତି କଣ ବା ରିସର୍ଚ୍ଚ କରୁଛି । ଏଇ ଗୃରି ପାଞ୍ଚ ବର୍ଷ ଭିତରେ ଥରେ ଆସି ଆମମାନଙ୍କୁ ଦେଖିଯିବାକୁ ତା’ର କଣ ସମୟ ହଉନାହିଁ ? ଏଇ ତମେ ତ ଆସିଲ ! ତା’ର ବାପା ମତେ କହୁଥିଲେ, ସେ ତା’ ପାଇଁ ପ୍ଲେନ୍ ଟିକଟ୍ ପଠେଇ ଦେଇଛନ୍ତି···କିନ୍ତୁ କାହିଁ ଛୁଟି ତ ଆରମ୍ଭ ହୋଇ ସରିବାକୁ ବସିଲା—ଆସିଲା ନାହିଁ ତ ?”

ମୁଁ ମୂକ ହୋଇ ବସି ରହିଛି କେବଳ । ଗୋଲକଧନ୍ଦା ଜଟିଳରୁ ଜଟିଳତର ହୋଇ ଗୃଲିଚି । ବାହାରର ବର୍ଷା ନ କମିଲେ ମୋର ଏ ପରିସ୍ଥିତିରୁ ମୁକ୍ତି ପାଇବା ଯେ ଅସମ୍ଭବ ସେ କଥା ମୁଁ ଅନୁମାନ କରି ସାରିଲିଣି ।

ଭଦ୍ରମହିଳା କହି ଗୃଲିଛନ୍ତି । “ମଞ୍ଜୁ ତ ଜାଣେ ଯେ ସେ ଏଇ ଆସନ୍ତା ଡିସେମ୍ବରରେ ବିଲାତ ଗୃଲିଯିବ । ତା’ର ବାପା ପ୍ରାୟ ସବୁ ଠିକ୍ କରି ସାରିଲେଣି । ତା’ପରେ ପୁଣି ଯେ କେବେ ଦେଖାହେବ

ସେ କଥା କିଏ ଜାଣେ ? ପିଲାଦିନେ ପାଖରେ ମଞ୍ଜୁ ଥିଲା, ତମେ ଥିଲ, ଘର ଭଲ ଲାଗୁଥିଲା । କିନ୍ତୁ ପାଠ ପଢ଼ିବାକୁ ଯାଇ ଏତେଟି ନିଜର ଲୋକମାନଙ୍କଠାରୁ ଦୂରେଇ ଯିବା ଠିକ୍ ନୁହଁ ।'' ଭଦ୍ରମହିଳାଙ୍କ କଣ୍ଠସ୍ୱର ଓ ଦୃଷ୍ଟି କଠିନ ହୋଇ ଉଠିଲା—''ମୁଁ ମଞ୍ଜୁର ଟଙ୍କା ବନ୍ଦ କରିଦେଇ ତାକୁ ଯେ କୌଣସି ମୁହୂର୍ତ୍ତରେ ଆସିବାକୁ ବାଧ୍ୟ କରି ପାରନ୍ତି—କିନ୍ତୁ ସଞ୍ଜୟ, ମା' ହୋଇ ତା' ତ କରିଯାଏ ନାହିଁ ।''

ବର୍ଷାର ବେଗ ସାମାନ୍ୟ କମିଚି । କୋର୍ଣ୍ଣିସ୍‌ରେ ଲାଗି ରହିଥିବା ଟୋପା ଟୋପା ପାଣି ଟପ୍ ଟପ୍ ହୋଇ ତଳକୁ ପଡ଼ିବାର ଶବ୍ଦ ସ୍ପଷ୍ଟ ଶୁଣିହେଉଛି । ମୁଁ ଘଣ୍ଟାକୁ ବାରମ୍ବାର ଦେଖି ଉଠିବାର ସୂଚନା ଦେଲି ଓ କହିଲି ଯେ ମୋର ଜଣେ ବନ୍ଧୁଙ୍କ ସହିତ ଆପଏଣ୍ଟମେଣ୍ଟ ଥିବାରୁ ମୁଁ ଶୀଘ୍ର ଚାଲିଯିବାକୁ ବାଧ୍ୟ ହେଉଛି । ଆସିଲା ବେଳେ ଭଦ୍ରମହିଳା ମୋର ଠିକଣା ପ୍ରଶ୍ନ କଲେ ଓ ମୁଁ କହିଲି ମୁଁ ଏଇ ମୋଡ଼ ଉପରେ ଟି ଭ୍ୟୁ ହୋଟେଲ୍‌ର ୨୪ ନମ୍ବର ରୁମ୍‌ରେ ଆସି ଓହ୍ଲାଇଚି । ଭଦ୍ରମହିଳା ବୋଧହୁଏ ଆଉ କଣ କହିବାକୁ ଯାଉଥିଲେ, କିନ୍ତୁ ମୁଁ ସେତେବେଳକୁ ପାହାଚ ତଳକୁ ଓହ୍ଲାଇ ସାରିଥିଲି ।

ଭଦ୍ରମହିଳା ପୁଣି ଥରେ ବାଧାଦେଲେ । ନାହିଁ ତମେ ଏଇ ବର୍ଷା ପାଣିରେ ଚାଲିକରି ଯିବ ନାହିଁ ସଞ୍ଜୟ । ତାଙ୍କର କଣ୍ଠରେ ଆଦେଶର ସ୍ୱର ବ୍ୟଞ୍ଜନା ।—ଗାଡ଼ିରେ ବସ । ସୋଫର୍ ତମକୁ ନେଇ ଛାଡ଼ିଦେଇ ଆସିବ ଆଉ ତା' ଛଡ଼ା ସେ ତମ ହୋଟେଲଟା ମଧ୍ୟ ଦେଖି ଆସିବ ।

ଅଗତ୍ୟା ଗାଡ଼ିରେ ବସିଲି ଏବଂ ଗାଡ଼ିରେ ଯେତେ ସମୟ ବସିଥିଲି ଭଦ୍ରମହିଳା କିମ୍ବା ତାଙ୍କର ପରିବାର ବିଷୟରେ ମୋର ସମସ୍ତ କୌତୂହଳ ଅତି କଷ୍ଟରେ ଦମନ କରିଥିଲି ।

ତା'ଆରଦିନ ହୋଟେଲ୍‌ର ବେହେରା ସକାଳୁ ଆସି ଚା'ର ସରଞ୍ଜାମ ମୋର ଖଟ ପାଖରେ ରଖିଦେଇ ଯାଇଚି ଏବଂ ଠିକ୍ ଏତିକି-ବେଳେ ଶୁଣିଲି ଜଣେ ଭଦ୍ରଲୋକ କବାଟରେ ଠକ୍ ଠକ୍ କରି ସୂଚନା ଦେଉଛନ୍ତି, ''ମୁଁ ଭିତରକୁ ଆସିପାରେ ।'' ନିଜର ପରିଧେୟ ସାମାନ୍ୟ ସଜ୍ଜିତ କରିନେଇ କହିଲି, ''ଆସନ୍ତୁ ।''

ଘର ଭିତରକୁ ପଶି ଆସିଲେ ଜଣେ ପ୍ରୌଢ଼ ଭଦ୍ରଲୋକ । ଦେଖିଲେଇ ମନେହେବ ଯେପରି କୌଣସି ଦାରୁଣ ଦୁଃଖର ଆଘାତରେ ତାଙ୍କର ବୟସ ଅଯଥା ଆଗେଇ ଯାଇଛି ଅନେକ ବର୍ଷ । ଦେହର ଧୋତି-ପଞ୍ଜାବୀ ଓ ହାତର ବାଡ଼ି ଏକ ସୁସ୍ପଷ୍ଟ ଆଭିଜାତ୍ୟର ସୂଚନା ଦିଏ । ଭଦ୍ରଲୋକ ମୋଟା ଲେନ୍‌ସର ଚଷମାଟାକୁ କାଢ଼ି ଆଣି ରୁମାଲ୍‌ରେ ଥରେ ଦୁଇଥର ପୋଛି ନେଇ ପୁଣି ଥରେ ଆଖିରେ ଦେଲେ ଓ ଚଉକି ଉପରେ ବାଡ଼ିଟିକୁ ଆଉଜେଇ ଦେଇ ଆଉ ଥରେ ଭଲ ଭାବରେ ଦେଖିନେଲେ ମତେ ।

ମୁଁ ତାଙ୍କୁ ଚଉକିରେ ବସିବା ଲାଗି ଇଙ୍ଗିତ ଦେଲି । ଚଉକିରେ ବସୁ ବସୁ ଭଦ୍ରଲୋକ କହିଲେ—"ମୁଁ ଠିକ୍ ଜାଣିଥିଲି ଯେ, ମୋର ସ୍ତ୍ରୀ ଏକ ମସ୍ତ ଭୁଲ୍ କରୁଛନ୍ତି—ହଁ ତମେ କାଲି ସନ୍ଧ୍ୟାରେ ଯେଉଁ ବଙ୍ଗଳାରେ ବର୍ଷାବେଳେ ଆଶ୍ରୟ ନେଇଥିଲ ସେଟା ମୋର ଘର ଓ ସେ ମୋ ସ୍ତ୍ରୀ । ଆଜି ସକାଳେ ସେ ମୋତେ ପ୍ରାୟ ଜୋର୍ କରି ପଠେଇଲେ । ସେ ସ୍ଥିର ନିଶ୍ଚିତ ଯେ, ତମେ ହେଉଛ ସଞ୍ଜୟ ।"

ମୁଁ କ୍ଷମା ମାଗିବାର ଭଙ୍ଗୀରେ କହିଲି…"ଦେଖନ୍ତୁ, ମୋ ନାଁ ଅଶୋକ । ମୁଁ କାଲି ସନ୍ଧ୍ୟାର ପରିସ୍ଥିତି ପାଇଁ ସତରେ ଲଜ୍ଜିତ । କିନ୍ତୁ କେଜାଣି କାହିଁକି ଆପଣଙ୍କ ସ୍ତ୍ରୀଙ୍କର ସ୍ନେହର ଆତିଶଯ୍ୟରେ ମୁଁ ମୁହଁ ଖୋଲି କହି ପାରିଲି ନାହିଁ ଯେ, ମୁଁ ସଞ୍ଜୟ ନୁହେଁ ।"

ଭଦ୍ରଲୋକ କହିଲେ—"ମୁଁ ମାନୁଛି, ସଞ୍ଜୟର ଗଠନ ସହିତ ତମର ଅନେକ ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ଅଛି । ଖୁବ୍ ନିରୀକ୍ଷଣ କରି ଦେଖିଲେ ହୁଏତ ଜାଣି ହବ ତମେ ସଞ୍ଜୟ ନୁହଁ । ତେବେ ଏଥିରେ ତମର କ୍ଷମା ମାଗିବା ବା ଲଜ୍ଜିତ ହେବାର କୌଣସି କାରଣ ନାହିଁ ଅଶୋକ—ଏଟା ନିୟତିର ଏକ ନିଷ୍ଠୁର ପରିହାସ । ଦିନେ ମୋର ଝିଅ ମଞ୍ଜୁଶ୍ରୀ ସହିତ ସଞ୍ଜୟର ବିବାହ ପ୍ରାୟ ସ୍ଥିର ହୋଇ ଯାଇଥିଲା; କିନ୍ତୁ ତା'ତ ଆଉ ସମ୍ଭବ ହେଲା ନାହିଁ…

ଭଦ୍ରଲୋକଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଯାଇଥିଲା ଓ ସେ ସ୍ଥିର-ଚକ୍ଷୁରେ ଝରକା ପାଖର ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁକୁ ଚାହିଁ ବସି ରହିଲେ । ମୁଁ

ସ୍ନା’ ଭିତରେ କପେ ଚା ତିଆରି କରି ଭଦ୍ରଲୋକଙ୍କ ଆଡ଼କୁ ଆଗେଇ ଦେଲି । ଠିକ୍ ପୂର୍ବପରି ଅନ୍ୟମନସ୍କ ଭାବରେ ଚା’ କପକୁ ଓଠ ପାଖକୁ ନେଇ ନେଇ ସେ କହିଲେ—“ସେ କଥା ତମକୁ କହି ଲାଭ ନାହିଁ ! ତେବେ ଅନେକ ଦିନ ପରେ ମୁଁ ମୋର ସ୍ତ୍ରୀଙ୍କୁ କାଲି ରାତିରେ ପ୍ରକୃତରେ ଖୁସି ହବାର ଦେଖିଲି । ସେ ତମକୁ ଦେଖି ଭାବୁଛନ୍ତି ଯେ, ତାଙ୍କର ଏକମାତ୍ର ସ୍ୱପ୍ନ ସାର୍ଥକ ହେବାକୁ ଯାଉଚି । ମୁଁ ତାଙ୍କର ଭୁଲ୍ ଭାଙ୍ଗି-ଦେବାକୁ ଚାହେଁନା—ଏକ ନିରପରାଧ ଭ୍ରମର ବିନିମୟରେ ଯଦି ସେ ତାଙ୍କର ଅବଶିଷ୍ଟ ଜୀବନ ଆନନ୍ଦରେ କଟାଇ ପାରନ୍ତି ତାହାହେଲେ ତା ଠାରୁ ଆଉ ଅଧିକା କ’ଣ ହୋଇପାରେ !”

ଏତିକ କହି ଭଦ୍ରବ୍ୟକ୍ତି ପୁଣି ଥରେ ନୀରବ ହେଲେ—ସେ ଯେପରି ସମସ୍ତ କଥା କେବଳ ମନେ ମନେ ନିଜକୁ ହିଁ କହୁଥିଲେ । ଆଖିରୁ ମୋଟା ଲେନ୍‌ସର ଚଷମାଟା କାଢ଼ିନେଇ ରୁମାଲରେ ଆଖି ପୋଛୁ ପୋଛୁ ସେ ପୁଣି ଆରମ୍ଭ କଲେ—“ତମେ ବୟସରେ ମୋ ପୁଅ ପରି, ତମକୁ ମୁଁ ଅଶୋକ ବୋଲି, ନାଁ ଭୁଲ କହିଲି, ତମକୁ ମୁଁ ସଂଜୟ ବୋଲି ହିଁ ଡାକିବି । କୌଣସି ଅସତର୍କ ମୁହୂର୍ତ୍ତରେ ଧରା ପଡ଼ିଯାଇ ମୁଁ ମୋ ସ୍ତ୍ରୀଙ୍କର ମଧୁର ଭ୍ରମ ଭାଙ୍ଗିବାକୁ ଚାହେଁନା ।

—ଶୁଣ ସଂଜୟ, ଆଜିଠାରୁ ଏ ପରିବାରରେ ତମର ଏକମାତ୍ର ପରିଚୟ ସଂଜୟ । ଆଉ ତମ ପାଖରେ ମୋର ଗୋଟିଏ ମାତ୍ର ଭିକ୍ଷା—ଭିକ୍ଷା ନୁହେଁ ଦାବୀ—ତମକୁ ମଝିରେ ମଝିରେ ଆସିବାକୁ ପଡ଼ିବ ଏଠିକି । ମୋର ଅର୍ଥର ଅଭାବ କେବେ ନ ଥିଲି, ଏବେ ବି ନାହିଁ—ତେବେ ଯାହା ଅଭାବ ରହିଯାଇଛି ତାକୁ କେବଳ ତମେ ହିଁ ପୂରଣ କରିପାରିବ ।”

ଭଦ୍ରବ୍ୟକ୍ତିଙ୍କ ସ୍ୱରର କାତରତା ବର୍ଣ୍ଣନାର ଅତୀତ ।

—“ତମେ କଥା ଦିଅ ସଂଜୟ, ତମର ସମସ୍ତ ଅସୁବିଧା ସତ୍ତ୍ୱେ ବି ତମେ ମଝିରେ ମଝିରେ ଆସି ସଂଜୟର ଅଭିନୟ କରିଯିବ ।”

ମୁଁ ସତରେ ବିଚଳିତ ହୋଇ ପଡ଼ିଥିଲି—କହିଲି, "ମୁଁ କଥା ଦଉଚି ଆସିବି । ଆପଣ ନିଶ୍ଚିନ୍ତ ରହିପାରନ୍ତି ।"

ଭଦ୍ରଲୋକଙ୍କ ଛାତି ଉପରୁ ମସ୍ତ ଓଜନଦାର ପଥର ଓହ୍ଲାଇଗଲା ଯେମିତି । —"ହଁ ମୁଁ ଶୁଣିଲି, ତମେ ଆଜି ସନ୍ଧ୍ୟା ପ୍ଲେନରେ ଦିଲ୍ଲୀ ଯାଉଚ । ମୋର ସ୍ତ୍ରୀ, ମଞ୍ଜୁଶ୍ରୀ ପାଇଁ କିଛି ଜିନିଷ ପଠେଇବେ । ଆମେ ଦୁଇଜଣଯାକ ଏୟାର ପୋର୍ଟରେ ତମକୁ ଦେଖାକରିବୁ—ଆଉ ତମର ସମୟ ନଷ୍ଟ କରିବା ନାହିଁ, ମୁଁ ଚାଲିଲି ।"

ଭଦ୍ରଲୋକଙ୍କୁ କିଛି ବାଟ ବଳେଇଦେଇ ମୁଁ ମୋ ରୁମ୍‌କୁ ଫେରିଲି ।

ଏୟାର ପୋର୍ଟ ଲାଉଞ୍ଜରେ ଇତସ୍ତତଃ ହୋଇ ମନେ ମନେ ଏଇ ରହସ୍ୟମୟ ଦମ୍ପତ୍ତିଙ୍କୁ ଖୋଜୁଥିଲି । ହଠାତ୍ ଦେଖିଲି—ଭଦ୍ରଲୋକ ମୋ କାନ୍ଧ ଉପରେ ମୃଦୁ ଚାପ ଦେଇ କହୁଛନ୍ତି—"ହେଲୋ, ସଞ୍ଜୟ ।" ଚମକି ପଡ଼ିଲି । ଦେଖିଲି ତାଙ୍କର ବାହୁଲଗ୍ନା ହୋଇ ଠିଆହୋଇଛନ୍ତି ବଗିଚା ରାତିର ସେଇ ନାରୀମୂର୍ତ୍ତି । ଭଦ୍ରମହିଳା ଗୋଟିଏ ସୁନ୍ଦର ପ୍ୟାକେଟ ମୋ ହାତକୁ ବଢ଼େଇ ଦେଇ ସୁନ୍ଦର ଇଂରାଜୀରେ କହିଲେ "ଦିସ୍ ଇଜ୍ ଫର୍ ମଞ୍ଜୁ—ମାଇଣ୍ଡ୍ ଦ ଟ୍ରବଲ୍ ।"

ମୁଁ ସଙ୍କୋଚ ହୋଇ ତାଙ୍କ ହାତରୁ ତାକୁ ଗ୍ରହଣ କଲି । ପ୍ୟାକେଟ ଉପରେ ଫେଲ୍ଟ ପେନ୍‌ସିଲ୍‌ରେ ବଡ଼ ବଡ଼ ଆଙ୍କୁଡ଼ା ଅକ୍ଷରରେ କେବଳ ଦୁଇଟା ଅକ୍ଷର ଲେଖାଯାଇଚି—ମଞ୍ଜୁ ।

ଧାତବ କଣ୍ଠରେ ମାଇକ୍ ପାସେଞ୍ଜର୍‌ମାନଙ୍କୁ ପ୍ଲେନ୍‌କୁ ଯିବାକୁ ଅନୁରୋଧ କଲା । ଭଦ୍ରମହିଳା ମୋ'ର ବାଁ ହାତ ଉପରେ ତାଙ୍କର ପାପୁଲିର ମୃଦୁ ଚାପ ହାଲୁକା କରିନେଲେ । ମୁଁ ଭଦ୍ରଲୋକଙ୍କୁ ସାମାନ୍ୟ ଦୂରକୁ ଡାକିନେଇ ଆସ୍ତେ ପଚାରିଲି—"ଦେଖନ୍ତୁ, ମୁଁ ତ ମଞ୍ଜୁ ଦେବୀଙ୍କ ଠିକଣା ଜାଣେନା, ପ୍ୟାକେଟ୍ ଉପରେ ଲେଖିଦେଲେ ସୁବିଧା ହୁଅନ୍ତା ।"

ମନୁଷ୍ୟର ଆଖି ଏପରି ସ୍ଥିର-ନିର୍ଜୀବ ହୋଇଯିବାର କେବେ ଦେଖିନ—ଠିକ୍ କାଚର ଆଖି ପରି । ତା'ପରେ ଗୋଟାଏ ପ୍ରଚଣ୍ଡ

ଅଟ୍ଟହାସ୍ୟର ନୀରବ ଇଙ୍ଗିତରେ ତାଙ୍କର ପ୍ରୌଢ଼ ଶରୀରଟି ଦୋହଲିଗଲା ଦୁଇ ଥର ।

ସେ ମୋର କାନର ଆହୁରି ପାଖକୁ ମୁହଁ ଆଣି ଦାନ୍ତ ଚିପି ଚିପି କହିଲେ—"ମଞ୍ଜୁର ଠିକଣା ମୁଁ ମଧ୍ୟ ଜାଣେ ନାଁ । ମୋର ସ୍ତ୍ରୀଙ୍କର ମସ୍ତିଷ୍କ ବିକୃତି ପରେ ପରେ ସେ ଆଜକୁ ବହୁ ବର୍ଷ ତଳେ ଟ୍ରେନ୍ ଆକ୍ସିଡେ଼ଣ୍ଟରେ ମରିଯାଏ । ସେ ସମ୍ବାଦ ମୋର ସ୍ତ୍ରୀଙ୍କୁ ଆଜଯାଏ ଦିଆଯାଇ ନାହିଁ । ସେତେବେଳେ ମଞ୍ଜୁ ପଢ଼ୁଥିଲା ଥାର୍ଡ଼ ଇୟରରେ—ତେଣୁ ଆଜ ତିନି ବର୍ଷ ପରେ ସେ ଶିସର୍ଚ୍ଚ କରିବାକୁ ବାଧ୍ୟ ଓ ତା'ପରେ ତାକୁ ବିଲାତ ଯିବାକୁ ପଡ଼ିବ ଆହୁରି ଗବେଷଣା କରିବାକୁ···"

ପ୍ଲେନ୍‌ର ପ୍ରପେଲର ପ୍ରଚଣ୍ଡ ଶବ୍ଦ କରି ଘୂରିବାକୁ ଆରମ୍ଭ କଲାଣି । ମାଇକ୍‌ର ସେଇ ଧାତବ କଣ୍ଠ ଭୁହାକୁ ଭୁହା ମୋ ନାଁ ଧରି ଡାକୁଛି । ମୁଁ ତରତରରେ ପ୍ଲେନର ସିଢ଼ି ଉପରକୁ ଉଠିଗଲି । ସିଢ଼ିର ମଝିରେ ଆଉଥରେ ମୁହଁ ଫେରେଇ ଚାହିଁଲି । ସେମାନେ ମତେ ହାତ ହଲେଇ ବିଦାୟ ଦେଉଥିଲେ—

—ମୋର ମନେ ହେଲା ଭଗବାନଙ୍କର ନିଷ୍ଠୁର ସୃଷ୍ଟିର ଦୁଇଟି ନିଃସଙ୍ଗ, ଅଭିଶପ୍ତ ମନୁଷ୍ୟ-ପିତୁଳା ଆକାଶକୁ ହାତ ଟେକି ନାଚୁଛନ୍ତି ।

———

# ନାୟାଗ୍ରା ଓ ଦେବଯାନୀ



କୃଷ୍ଣପ୍ରସାଦ ମିଶ୍ର

ସମ୍ମୁଖରେ ଶ୍ୟାମକାନ୍ତ ନାୟାଗ୍ରା ପ୍ରପାତ ।
ସ୍ୱୟଂଭୂ ଶଙ୍କରଙ୍କ ମୌଳି ଉପରେ ଚତୁର୍ଥୀର ଚନ୍ଦ୍ର ।
ଚତୁର୍ଥୀ ଚନ୍ଦ୍ରର ଆକାର ନାୟାଗ୍ରା ପ୍ରପାତର ।
"ପବନଃ ପବତାମସ୍ମି ରାମଃ ଶସ୍ତ୍ରଭୃତାମହମ୍
ଝଷାଣାଂ ମକରଶ୍ଚାସ୍ମି ସ୍ରୋତସାମସ୍ମି ଜାହ୍ନବୀ ।"
ଜାହ୍ନବୀ କିଏ ? ନାୟାଗ୍ରା କିଏ ?
ଗୋଟିଏ ସୌନ୍ଦର୍ଯ୍ୟର କୋଟିଏ ପ୍ରକାଶ ।

ନଚିକେତା ଓ ମୁଁ ଗଦ୍‌ଗଦ୍ ଚିତ୍ତରେ ନମସ୍କାର କଲୁ । ଗାଢ଼ ନୀଳ ରଙ୍ଗର ନାୟାଗ୍ରା ପ୍ରସ୍ତରଚଟାଣ ଉପରୁ ପରମ ଉଲ୍ଲାସରେ ଡେଉଁଛି । କେତେ ତଳକୁ ? କାହିଁକି ? ଅଯଥା ପ୍ରଶ୍ନ । ନଟରାଜର ନୃତ୍ୟରେ ଅର୍ଥ ନାହିଁ ସୌନ୍ଦର୍ଯ୍ୟ ଅଛି । ପ୍ରତ୍ୟେକ ପଦପାତରେ ଶତ ଲକ୍ଷ ବ୍ରହ୍ମାଣ୍ଡର ସୃଷ୍ଟି । ଡମ୍ବ ଡମ୍ବ ନାଦର ପରମ ସଙ୍ଗୀତ । ହା ହା, ହୋ ହୋ, ହି ହି,— ନାୟାଗ୍ରାର ହସ, ଧାବମାନ ନଦୀର ଉଚ୍ଛୃଙ୍ଖଳ ହସ । କୋଟି କୋଟି ଜଳକଣା ମଲ୍ଲୀକଢ଼ ପରି ଶୁଭ୍ର । ଫୁଲର ବାସ୍ନା, ଜଳକଣାର ସ୍ପର୍ଶ, ଅଧରାମୃତର ସ୍ୱାଦୁ । ମହାକାଳ ଶ୍ୱାସରୁଦ୍ଧ ହୋଇ ଠିଆହୋଇ ଯାଇଛି । ଅତ୍ୟଧିକ ଆନନ୍ଦରେ ପ୍ରମତ୍ତ ଦେବଦେବୀ—ଆକାଶ ବକ୍ଷରେ ଶ୍ୱେତ-ରଙ୍ଗର ଗୁଣ୍ଡାଏ ମେଘ ! ଗଙ୍ଗା ନାୟାଗ୍ରା ନୀଳଶାଢ଼ୀ ପିନ୍ଧି ଶିବ ଦର୍ଶନରେ ସିନା ଆସିଥିଲା ! ସୃଷ୍ଟିବେଳେ, ଲୀଳାମୟର ଲୀଳାବେଳେ, ଆନନ୍ଦମୟ ଚେତନାର ବଜ୍ରାଲିଙ୍ଗନ ସମୟରେ—

ନୀଳଶାଢ଼ୀ ଅଙ୍ଗ ଛାଡ଼ି ଆକାଶରେ ବ୍ୟାପିଯାଇଛି,
ଉଲଗ୍ନା ନାୟାଗ୍ରାର ଶଙ୍ଖମର୍ମର ପରି ଅବୟବ ।

ଅସଂଖ୍ୟ ଜନ୍ମର ଅବରୁଦ୍ଧ ଇଚ୍ଛା, ଆକାଙ୍କ୍ଷା, କଳ୍ପନା, ଆବର୍ତ୍ତିତ ଜଳରାଶି—ନାୟାଗ୍ରାର ବକ୍ଷ—ଲକ୍ଷ ପ୍ରଦାନ ପୂର୍ବରୁ ସ୍ଫୀତ ହୋଇଉଠିଛି; କୋଣାର୍କର ମୃଦଙ୍ଗବାଦିକାର ସ୍ଫୀତ ବକ୍ଷ ପରି ।

ସୃଷ୍ଟି, ସୃଷ୍ଟି !! ହର ପାର୍ବତୀଙ୍କର ମିଳନ ସ୍ଥାନ ।
ଓଁ ନମଃ ଶିବାୟ !!!

ନଚିକେତା ଓ ମୁଁ ନମସ୍କାର କଲୁ । ପାଖରେ ଠିଆ ହୋଇଥିବା ଟୁରିଷ୍ଟ କେତେଜଣ ଆମ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥାଆନ୍ତି । ପଚାରିବାକୁ ଅନେକ ପ୍ରଶ୍ନ ମନରେ, ହୃଦୟରେ ସଙ୍କୋଚ, ଲଜ୍ଜା । କିଛି ସମୟ ଚାହିଁ ସେମାନେ ପୁଣି ନାୟାଗ୍ରାର ଫଟୋ ଉଠାଇବେ । ଯୋଷୀକା, କାନନ୍, ଫୁଜିକା, ଆଗ୍‌ଫା...ଆଗରୁ ନିର୍ଦ୍ଧାରିତ ସମୟ ଭିତରେ ଫିଲ୍ମ ସାରିବାକୁ ହେବ । ପତ୍ନୀକୁ ଚାଟିଦା, ରେଲିଂ ଉପରକୁ ଅଳ୍ପ ଆଉଜ, ଟିକେ ନୁହଁ—ଠିକ୍ ଅଛି । ବର୍ତ୍ତମାନ ହସ । ତା'ପରେ ହସ—କ୍ଲିକ୍ । ନେକ୍‌ସଟ୍ ପିଲାଏ ମା ପାଖକୁ ଦଉଡ଼, ଜଲଦି ଦଉଡ଼ । ଡେରି ହୋଇ-ଯାଉଛି, ବଙ୍ଗ୍ଲୋ ଫେରିବାକୁ ହେବ । ପିଲାଏ ଦଉଡ଼ୁଛନ୍ତି, ହାଓ୍ୱାନ ଉପରେ ଟୁରିଷ୍ଟ ନୃତ୍ୟର ଛବି—ପିଲାଏ ଠିଆ ହେଲେ । କ୍ଲିକ୍ । ସବୁ ଧରାବନ୍ଧା, ଭାଗମାପ, ପୂର୍ବରୁ ନିର୍ଦ୍ଧାରିତ । ନାୟାଗ୍ରାରେ ଦୁଇଘଣ୍ଟା, ଗୋଟିଏ ଫିଲ୍ମ । ହୋଟେଲରେ ଷାଠିଏ ମିନିଟ୍ ଡ୍ରାଇଭିଂ କରି ଘରେ ପହଞ୍ଚିବାକୁ ଦୁଇଘଣ୍ଟା । ସ୍ତ୍ରୀକୁ ହନି ବା ଡାର୍ଲିଂ ସମ୍ବୋଧନ କରାଯିବ, ପ୍ରେମିକାକୁ ବେବି ବା ସେହିପରି କିଛି । ସେହିପରି ଗୀର୍ଜା ଭିତରେଇ ପ୍ରଭୁ, ବାହାରେ ସଂସାର । ଈଶ୍ୱର ନୁହେଁ । ପ୍ରେମିକ, ପ୍ରେମିକା, ସ୍ତ୍ରୀ, ସ୍ତ୍ରୀ ନାୟାଗ୍ରା, ନାୟାଗ୍ରା ପ୍ରଭୁଯୀଶୁ, ଯୀଶୁ—ସବୁ ଅଲଗା, ଅଲଗା, ସବୁରିର ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଧାରିତ ।

ନଚିକେତା ଓ ମୁଁ ରାସ୍ତାଠୁ କିଛି ଦୂରରେ ଯାଇ ବସିଥିଲୁ ଘାସଗୁଡ଼ାକ ଉପରେ । ନଚିକେତା ପଛଆଡ଼େ ଫ୍ଲୋରିଡ଼ା ଟାଇପ୍ ଓ୍ୱାଗେଲିଆ ଫୁଲ ଗଛର ଧାଡ଼ି, ତାକୁ ଲାଗି ପିଙ୍କ୍ ସ୍ପିରିଆର ବେଢା । ସବୁ ଗଛରେ ଫୁଲ ।

ନଚିକେତା ! ପଛରେ ଫୁଲଗଛଗୁଡ଼ାକ, ଟିକିଏ ଆଗକୁ ଚାଲିଆ । ନଚିକେତା ଆଗକୁ ଘୁଞ୍ଚି ଆସିଲା । କିଛି ପଛରେ ମଟରକାର୍ ପାର୍କିଂ

ପାଇଁ ଜାଗା । ମଟରକାର୍ ଗୁଡ଼ାକ—ଅସଂଖ୍ୟ—ଧାଡ଼ି ଧାଡ଼ି ହୋଇ ପାର୍କିଂ ହୋଇଛି । ସାରା ବାତାମଣ୍ଡଳରେ ଯାନା, ଉପଭୋଗର ଚେତନା । ନାୟାଗ୍ରାକୁ କ୍ୟାମେରା ଭିତରକୁ ଆଣି ସାରିବା ପରେ ପରସ୍ପରର ମୁଖ, ଅବୟବ, ବକ୍ଷ, ବେଶଭୂଷାକୁ ଗୁହାଁବା ବା ରେସ୍ତୋରାଁ ଭିତରକୁ ପଶି କଫି ପିଇବା ନଚେତ୍ କିଛି ଖାଇବାପାଇଁ ସମସ୍ତଙ୍କର ଉଦ୍‌ଯୋଗ ।

ଦୁଇଜଣ ଆମେ ବ୍ୟତିକ୍ରମ ଥିଲୁ ; ମୁଁ ଓ ମୋର ଏକମାତ୍ର ସନ୍ତାନ ନଚିକେତା । ନଚିକେତାକୁ ମୁଁ ବୁଝାଉଥିଲି ଜଣେ ଶିକ୍ଷିତ ଭାରତୀୟର ଜୀବନଦର୍ଶନ । ଆମମାନଙ୍କର ନମସ୍କାର ଏହି ପ୍ରପାତ—ଦୈର୍ଘ୍ୟ, ପ୍ରସ୍ଥ, ଉଚ୍ଚତାବିଶିଷ୍ଟ ଗୋଟିଏ ପ୍ରପାତ ପ୍ରତି ଉଦ୍ଦିଷ୍ଟ ନୁହେଁ । ପ୍ରପାତରେ ପ୍ରକାଶିତ ଚିରନ୍ତନ ଯେଉଁ ସୌନ୍ଦର୍ଯ୍ୟ ତା'ରି ପ୍ରତି ଆମେ ସମ୍ମାନ, ଶ୍ରଦ୍ଧା ଓ ଭକ୍ତି ଜଣାଉଛୁ । ଏକଳ ସୌନ୍ଦର୍ଯ୍ୟର ଆଧାର ଈଶ୍ୱର ବହୁ ରୂପରେ—ଊଷାରେ, ସନ୍ଧ୍ୟାରେ, ଅସୀମ ଆକାଶର ନୀଳିମାରେ, ଜ୍ୟୋତିର୍ମୟ ତାରକାପୁଞ୍ଜରେ ପ୍ରକାଶିତ । ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ସିନାଗଗ୍—ଏଗୁଡ଼ାକର ସୃଷ୍ଟିରେ ଈଶ୍ୱର ନାହାନ୍ତି । ଏଗୁଡ଼ାକର ସୃଷ୍ଟି ଯେବଠୁଁ ଅସୀମକୁ ସସୀମ, ସୁନ୍ଦରକୁ ଅସୁନ୍ଦର କରିବାର ଚେଷ୍ଟା ସେବଠୁଁ । ଋଷିପାଇଁ ମନ୍ଦିର ନ ଥିଲା, ଯୀଶୁପାଇଁ ଗୀର୍ଜା ନ ଥିଲା କି ମହମ୍ମଦ ପାଇଁ ନ ଥିଲା ମସ୍‌ଜିଦ୍ ।

ନଚିକେତା—ତ୍ରୟୋଦଶ ବର୍ଷର ମୋର ସନ୍ତାନ, ମୋ କଥାକୁ ବୁଝିବାକୁ ଚେଷ୍ଟା କରୁଥିଲା । ତା ମୁଖମଣ୍ଡଳରେ ମୁଁ ଦେବଯାନୀର ଆକୃତି ଦେଖୁଥିଲି । ଦେବଯାନୀର ନାକ ପରି ଅବିକଳ, ଦାନ୍ତଗୁଡ଼ାକ ବି ତା'ରି ପରି । ଦେବଯାନୀ ମରିଯାଇଛି; କିନ୍ତୁ ସେ ଥିଲାବେଳେ ବି ଠିକ୍ ଏହିପରି ବସି ଜୀବନଦର୍ଶନ ମୋର ଶୁଣୁଥିଲା, ମୁଁ କ୍ଳାନ୍ତ ହୋଇ ବନ୍ଦ କରିଦେଲେ କହୁଥିଲା—ଆଜି ଯେଉଁଠି ବନ୍ଦ କରୁଛ, କାଲି ସେଇଠାରୁ ଆରମ୍ଭ କରିବ । ଆଜି ତୁମେ ଯାହା ସବୁ କହିଲ ସେ ସବୁ ଉପରେ ମୁଁ ଚିନ୍ତା ବି କରିଥିବି; କାଲି ପଚାରିବି । ତୁମର କଥା ଶୁଣିବାକୁ ମୋତେ ଭାରି ଭଲ ଲାଗୁଛି ।

ଦେବଯାନୀ ବୁଦ୍ଧିମତୀ ଥିଲା । ତା ପ୍ରଶ୍ନର ଉତ୍ତର ଦେବାପାଇଁ ମୋତେ ବହୁ ସମୟରେ ଭାବିବାକୁ ପଡ଼ୁଥିଲା । ଥରେ ସେ ପଚାରିଥିଲା

—ମହୋଦଧିର ସୌନ୍ଦର୍ଯ୍ୟ ଓ ନରନାରୀର ଶରୀର-ସୁଷମା କ'ଣ ଏକ-ଜାତୀୟ ? ସେ ତର୍କ କରିଥିଲି ସେ ଦୁଇଟିର ସୌନ୍ଦର୍ଯ୍ୟ ଏକଜାତୀୟ ନୁହଁ ବୋଲି ।

ଦେବଯାନୀ ମୋର କଥା ଶୁଣୁଥିଲା, ସବୁ ବୁଝୁଥିଲା; କିନ୍ତୁ କଥାଗୁଡ଼ାକୁ ପାଉଥିଲା ଖୁବ୍ କମ୍; ଦର୍ଶନକୁ ବ୍ୟବହାର କ୍ଷେତ୍ରକୁ ଆଣିବାକୁ ସେ ଆଦୌ ସେପରି ଇଚ୍ଛୁକ ନ ଥିଲା । ବୋଧହୁଏ ସେ ମୋଠୁ ବେଶୀ ଧାର୍ମିକ ଥିଲା ଓ ପ୍ରାକ୍ଟିକାଲ୍, ମୁଁ ତା' ତୁଳନାରେ ସମ୍ଭବତଃ ପାପୀ, ଥିଓରେଟିକାଲ୍ ତ ନିଶ୍ଚୟ; ମୁଁ ତାକୁ ବାରମ୍ବାର କହୁଥିଲି—ଯାନୀ ! ପର୍ବପର୍ବାଣିରେ ତୁମେ ମନ୍ଦିରକୁ କାହିଁକି ଯାଉଛ ? ସେ ଭୟଙ୍କର ଭିଡ଼ରେ, ଯେତେବେଳେ ତୁମ ପାଦଭୂମି ସ୍ପର୍ଶ କରିବାର ସମ୍ଭାବନା ରହେନାହିଁ, ସେ ଭିଡ଼ରେ ପଶି ତୁମେ କେଉଁ ଦେବସତ୍ତା ଉପଲବ୍ଧି କରି ପାରୁଛ । ମଣିଷ ମନ୍ଦିରକୁ ନ ଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟ ଥିବା ଯାଗାକୁ ଯିବା ଉଚିତ—ସମୁଦ୍ରକୂଳ, ଗିରିପ୍ରପାତ, ଘୋର ଅରଣ୍ୟ, ନଦୀସଙ୍ଗମ ବା ଉତ୍ତୁଙ୍ଗ ଶିଖର । ଦେବତା ସେହିସବୁ ସ୍ଥାନରେ ଥାଆନ୍ତି ଯାନୀ, ତୁମର ଶିଳା ସିମେଣ୍ଟ୍‌ର ମନ୍ଦିର କି ମସ୍‌ଜିଦ୍‌ରେ ନୁହଁ । ମହୋଦଧି ପାଖରେ ଥାଉ ଥାଉ···

ଦେବଯାନୀ ସବୁ ଶୁଣେ, ସମ୍ମତ ହୁଏ, ହସେ; କିନ୍ତୁ ଠିକ୍‌ବେଳକୁ ମୋତେ ନ କହି ସେ ମନ୍ଦିରକୁ ଚାଲି ଯାଇଥାଏ—ସବୁ ପର୍ବରେ ପ୍ରାୟ ଓ ସବୁ ଗୁରୁବାର ଦିନ । ଶ୍ରୀ-ମନ୍ଦିର ପ୍ରତି ତା'ର ମୋହ ଦେଖି ମୁଁ ଆଶ୍ଚର୍ଯ୍ୟ ହୁଏ, କିଛି ବୁଝି ପାରେ ନାହିଁ । ଦିନେ ତାକୁ ପଚାରିଲି—ଦେବଯାନୀ, ତୁମେ ମୋତେ କ'ଣ ବୋଲି ଭାବୁଛ ।

ଦେବଯାନୀ କହିଲା—ତୁମେ ମୋର ଦେବତା ।

ମୁଁ ଦେବଭକ୍ତ ନା ନୁହେଁ ? ମୁଁ ଆସ୍ତିକ ନା ନାସ୍ତିକ, ତୁମ ମତରେ ?

ଦେବଯାନୀ କିଛି ନ କହି ଚୁପ୍ ହୋଇଗଲା । ମୁଁ ଉତ୍ତେଜିତ ହୋଇଗଲି । ମୁଁ କହିଲି—ଦେବଯାନୀ, ମୁଁ ମନ୍ଦିରକୁ ନ ଗଲେ ମଧ୍ୟ ମୁଁ ଆସ୍ତିକ । ମୁଁ ଶିବଭକ୍ତ, କୈଳାସଶିଖର ମୋର ଶିବଲିଙ୍ଗ । ମୁଁ ପରମ ବୈଷ୍ଣବ, ଅନନ୍ତ ସାଗର ମୋର ନାରାୟଣ । ମୁଁ ଗାଣପତ୍ୟ, ମୁଁ

ବାଲ୍ମୀକ, ବ୍ୟାସ, କାଳିଦାସ, ଭବଭୂତି, ସେକ୍ସପିୟରର ଲେଖା ପଢ଼ିଛି । ହିଗନ୍ତର ବିସ୍ତାରରେ ମୁଁ ଜଗନ୍ନାଥଙ୍କର ଭ୍ରୂଭଙ୍ଗୀ ଦେଖେ, ମୁଁ...

ଦେବଯାନୀର ଚୁମ୍ବନରେ ମୁଁ ଆଉ କିଛି କହି ପାରିଲି ନାହିଁ । ସେ ବ୍ୟାକୁଳ ହୋଇ ମୋତେ ଆଲିଙ୍ଗନ କରି ପକାଇ କହୁଥିଲା—ଆଉ କିଛି କହିବା ଦରକାର ନାହିଁ । ତୁମର ଆସ୍ତିକ କି ନାସ୍ତିକ କିଛି ହେବା ଦରକାର ନାହିଁ । ତୁମେ ନିଜେ ତ ଦେବତା, ଦେବତାପାଇଁ ପୁଣି ଆଉ ଦେବତା କ'ଣ ?

ଦିନେ ଥଟ୍ଟା କରି ତାକୁ ମୁଁ କହିଲି—ତୁମେ ବୋଧେ ମନ୍ଦିର-ଗାନ୍ଧର କୌଣସି ପିଚ୍ଛୁଳା—ମଣିଷ ହୋଇଯାଇଛ କିପରି । ମନ୍ଦିରଭକ୍ତ ତୁମର ଯେପରି ପରଜନ୍ମରେ ଦେବ-ସାନ୍ନିଧ୍ୟ ପାଇବ ସେହିପରି ପିଚ୍ଛୁଳା ହୋଇଯାଇ । ମୋ କଥାରେ ତୀବ୍ର ବ୍ୟଙ୍ଗ ପ୍ରଚ୍ଛନ୍ନ ଥିଲା; କିନ୍ତୁ ମୋଠୁ ବ୍ୟଙ୍ଗ ଶୁଣିବା ଦେବଯାନୀର ଅଭ୍ୟାସ । ସେ ହସିଦେଇ କହିଲା—ଈଶ୍ୱର ଅଣୁ ଅଣୁରେ ବିଦ୍ୟମାନ । ଜନ୍ତୁ, ଅଶିବ, ଅସୁନ୍ଦର କ'ଣ ତାଙ୍କଠୁ ଅଲଗା ?

ବାସ୍ ସେତିକି । ମୋତେ ସେ ସ୍ଥାଣୁ କରିଦେଇ ଗୃହର ନିତ୍ୟକର୍ମ ସାରିବାକୁ ଚାଲିଗଲା । ତାକୁ ମୁଁଇତ କିଛିଦିନ ତଳେ କହିଥିଲି ଓ ଯାହାକୁ ଶୁଣି ଖୁସିରେ କାନ୍ଦି ପକାଇଥିଲା । "ଯୋ ମାଂ ପଶ୍ୟତି ସର୍ବତ୍ର, ସର୍ବଞ୍ଚ ମୟି ପଶ୍ୟତି" ମୋତେ ସିଏ ସବୁଠି ଦେଖେ ଏବଂ ସବୁକୁ ମୋ ଭିତରେ ଦେଖେ !

ନଚିକେତାର ଜନ୍ମ ପରେ ଦେବଯାନୀ ସହିତ ମୋର କଳହ ବଢ଼ିଲା 'ମନ୍ଦିର ନା ମହୋଦଧିକୂଳ'ର ଅଚ୍ଛିଣ୍ଡା ତର୍କ ନେଇ । ନଚିକେତାର ପ୍ରତି ଜନ୍ମଦିନେ ନିଶ୍ଚୟ, ଆଉ ବାକି ଦିନମାନଙ୍କରେ ସୁବିଧା ଦେଖି, ସେ ଜିଦ୍ କରି ତାକୁ ମନ୍ଦିରକୁ ନେଇଯାଏ । ବଡ଼ ହେଲେ ସେ ଧାର୍ମିକ, ସଚ୍ଚରିତ୍ର ଓ ନ୍ୟାୟପରାୟଣ ହେବ ବୋଲି ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବାକୁ । ମୁଁ ଯୁକ୍ତି କରେ—ଗ୍ଲେଟ ପିଲାକୁ ମନ୍ଦିରକୁ କାହିଁକି ନେଉଛ, ଚାଲ ତାକୁ ସମୁଦ୍ରକୂଳକୁ ନେବା । ପୂର୍ଣ୍ଣମୀ ତିଥିରେ ଜନ୍ମ ହୋଇଛି, ପୌର୍ଣ୍ଣମାସୀ ସମୁଦ୍ରର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ । ସେଇଠି ସେ ସୌନ୍ଦର୍ଯ୍ୟମୟ ଭଗବାନଙ୍କୁ ଦେଖିବ ।

ଦେବଯାନୀ ହଁ କରେ । କହେ, ସେ'ତ ଭଲ କଥା । ବହୁତ ଡେରି ଅଛି ଭଲ ହେବାକୁ । ବନ୍ଦାପନା ସାରି ମୁଁ ତାକୁ ଆଗ ମନ୍ଦିରରୁ ବୁଲାଇ ଆଣେ । ଦେବତା ଆଶୀର୍ବାଦ, ବ୍ରାହ୍ମଣ ଆଶୀର୍ବାଦ ତାକୁ ଦୀର୍ଘାୟୁଷ କରିବ । ମୋର ବାରଣ ସତ୍ତ୍ୱେ ସେ ତାକୁ ମନ୍ଦିରକୁ ନିଏ । ମନ୍ଦିରରେ କ'ଣ କ'ଣ କରେ କେଜାଣି, ଫେରୁ ଫେରୁ ଦ୍ୱିପ୍ରହର ହୋଇ ଯାଇଥାଏ । ଲୋକଗହଳି—ରୁଗ୍ଣ, ଦୁଃଖୀ, ଦରିଦ୍ର, ଅଶୀତିନ ଗୁଡ଼ାଏ ଲୋକଙ୍କ ସମାବେଶ । ମୋତେ କେଶ୍‌ରେ ଜିତାଅ, ମୋତେ ସ୍ୱାସ୍ଥ୍ୟବାନ୍ କର, ମୋର ପ୍ରେମିକାର ସାନ୍ନିଧ ମୁଁ ପାଏ, ପରୀକ୍ଷାରେ ମୁଁ ପାସ୍ କରେ, ହେ ପ୍ରଭୁ, ମୋ ସ୍ୱାମୀ ମୋତେ ଯେପରି ଭଲ ପାଆନ୍ତୁ—ଗୁଡ଼ାଏ କମ୍ପିତ-କମ୍ପିତ ପ୍ରାର୍ଥନା ଓ ଭକ୍ତଙ୍କ ଜମାଟ, ଅନ୍ଧକାର ହାଉଜାଉ, ସନ୍ତସନ୍ତିଆ ଭୂମିତଳ, ରୁଗ୍ଣ ଅସୁନ୍ଦର ଅଶିକ୍ଷିତ ପଣ୍ଡା ପଡ଼ିହାରୀ—ମୋର ମନ ବିଦ୍ରୋହ କରି ଉଠେ ଦେବଯାନୀର କାର୍ଯ୍ୟରେ । ଶ୍ରେଷ୍ଠ ପିଲାଟାର ମନରେ କି ପ୍ରକାର ସଂସ୍କାର ପଡ଼ୁଥିବ କେଜାଣି । ଦେବଯାନୀ ସହିତ କଜିଆ ହୁଏ ସେ ଫେରିବା ପରେ । କଳହ ବେଶୀ ବଢ଼ିଲେ ସେ ପୁନର୍ବାର ମନ୍ଦିର ଚାଲିଯାଏ ନଚିକେତାକୁ ଶୁଆଇଦେଇ । ନଚିକେତାକୁ ନିଦରୁ ମୁଁ ଉଠାଏ ନାହିଁ, ସମୁଦ୍ରକୂଳ ଯିବା କିପରି ବା ସମ୍ଭବ ହୁଅନ୍ତା ?

ନଚିକେତାର ଷଷ୍ଠ ଜନ୍ମୋତ୍ସବ ଦିନ କିନ୍ତୁ ଦେବଯାନୀ ସହିତ ମୋର କଳହ ହୋଇ ନ ଥିଲା । ସକାଳର ବନ୍ଦାପନା ଓ ହୋମ ପରେ ସେ ନଚିକେତାକୁ ଧରି ମନ୍ଦିର ଗଲା ନାହିଁ । ମୁଁ ବିସ୍ମିତ ହେଲି, ପଚାରିଲି—ଦେବଯାନୀ ! ଆଜି ତୁମର କ'ଣ ହୋଇଛି ? ମନ୍ଦିର ଯିବ ନାହିଁ ?

ନାଁ, ମୁଁ ଆଜି ମନ୍ଦିର ଯାଉ ନାହିଁ । ସ୍ତ୍ରୀ ହୋଇ କ'ଣ ସାରା ଜୀବନଟାଯାକ ସ୍ୱାମୀର ଅବାଧ ହେଉଥିବି । ଆଜି ସମସ୍ତେ ମହୋଦଧି ନିକଟକୁ ଯିବା । ମୁଁ ଜଲ୍‌ଦି ଖିଆପିଆର ବନ୍ଦୋବସ୍ତ କରି ଦେଉଛି ।

ଦେବଯାନୀର କଥାରେ ମୁଁ ଖୁସିରେ ପାଗଳ ପରି ହୋଇଗଲି । ଦେବଯାନୀକୁ ଆଲିଙ୍ଗନ କରି ବାରମ୍ବାର ଚୁମା ଦେଇ କହିଲି—ଦେଖିବ ଦେବଯାନୀ, ଆଜି ଚନ୍ଦ୍ର, ଆକାଶ, ସାଗର, ଊର୍ମି ସମସ୍ତେ କିପରି ତୁମକୁ ସ୍ୱାଗତ କରିବେ ! ସାଗରରେ ଜୁଆର କିଛି ବଢ଼ିଯିବ, ଚନ୍ଦ୍ରରେ

ଉଚ୍ଛ୍ୱଳତା, ତରଙ୍ଗରେ ବଶୀଳତା । ଦେବଯାନୀ ହସି କହିଲା—ତୁମେ ଏତେ ଅଧୀର ହୁଅ ନାହିଁ । ମୁଁ କେବଳ ମଣିଷ ଯେ ସାରା ପ୍ରକୃତି ମୋ ଉପସ୍ଥିତିରେ ଖୁସି ହେବ ।

ପ୍ରକୃତି ନୁହେଁ ଯାନୀ, ପ୍ରକୃତି ତ ଜଡ଼ । ଚେତନାମୟ ଈଶ୍ୱର ଖୁସି ହେବେ; ପ୍ରକୃତିରେ ପ୍ରକାଶିତ ଈଶ୍ୱର ତାଙ୍କର ଭକ୍ତକୁ ଦେଖି ଖୁସି ହେବେ ।

ନଚିକେତା ବି ସମୁଦ୍ରକୂଳକୁ ଯିବ ବୋଲି ଶୁଣି ଖୁସି ହୋଇ-ଗଲା । ବାଲିରେ ଦଉଡ଼ାଦଉଡ଼ି କରି ଶାମୁକା ସଂଗ୍ରହ କରିବାରେ କ'ଣ କମ୍ ଆନନ୍ଦ ଅଛି ! ସେ ଦିନର ଆନନ୍ଦ, ଆମ ତିନି ପ୍ରାଣୀଙ୍କର ଆହ୍ଲାଦ ବର୍ଣ୍ଣନାତୀତ । ନଚିକେତା ତ ଦଉଡ଼ାଦଉଡ଼ି ପରେ କ୍ଲାନ୍ତ ହୋଇ ଶୋଇଗଲା; କିନ୍ତୁ ଆମେ ଦୁହେଁ କଥା ହେଲୁ, ଖୁସିରେ ଦଉଡ଼ିଲୁ, ନାଚିଲୁ, ଶେଷରେ ଅର୍ଦ୍ଧମୂର୍ଚ୍ଛିତ ପ୍ରାୟ ପଡ଼ିଯାଇ ଚନ୍ଦ୍ର, ସମୁଦ୍ରର ଘୋ ଘୋ ଶବ୍ଦ ଓ ସୁ ସୁ ହୋଇ ବହୁଥିବା ପବନ ସହିତ ନିଜକୁ ମିଶାଇ-ଦେବାକୁ ଚେଷ୍ଟା କଲୁ ।

ଦେବଯାନୀ ସେହି ବର୍ଷଠୁ ଆଉ କେବେ ମୋର ଅବାଧ ହୋଇ-ନାହିଁ । କାରଣ ସେହି ବର୍ଷ ସେହି ଜନ୍ମଦିନ ପରେ ସେ ମୋତେ ଓ ନଚିକେତାକୁ ଛାଡ଼ି ଚାଲିଯାଇଛି । ବାଧ ଅବାଧର ସେ ଅତୀତ ହୋଇ-ଯାଇଛି । ମୁଁ ଯଦି ଜାଣିଥାନ୍ତି ଆମର କଳହ ଶେଷରେ ଏପରିଭାବେ ଶେଷ ହେବ, ତାହାହେଲେ ମୁଁ ଆଗରୁ ସାବଧାନ ହୋଇଥାଆନ୍ତି ନିଶ୍ଚୟ । ହେଲା ନାହିଁ, ଉତ୍ସାହ ଆବେଗରେ ମୁଁ ଭୁଲିଗଲି ଯେ ଦୁଇ ତିନି ଦିନ ହେଲା ଦେବଯାନୀକୁ ଥଣ୍ଡା ହୋଇଛି, କାଶ ବି ହେଉଛି । ତା ସତ୍ତ୍ୱେ ସେ ନଚିକେତାର ଜନ୍ମଦିନ ବୋଲି ସକାଳୁ ସକାଳୁ କେଶ ଧୋଇ ଖୁବ୍ ଗୁଡ଼ାଏ ଗାଧୋଇଛି ।

ଦେବଯାନୀ ମୋତେ ଛାଡ଼ି ଚାଲିଗଲା; ତେଣୁ ମୁଁ ତା'ର ଦେଶ ଛାଡ଼ି ଦେଇଛି । ତା'ର ମୃତ୍ୟୁ ହିଁ ମୋର ଯାଯାବର ଜୀବନର କାରଣ । ଇମିଗ୍ରାଣ୍ଟର ଜୀବନ ମୋର ସେହିଦିନୁ । ମୋ ସହିତ ନଚିକେତା । ଦେବଯାନୀକୁ ପୁଣି ଛାଡ଼ନ୍ତି କିପରି ।

ଦେବଯାନୀ ଯିବାପରେ ନଚିକେତାପାଇଁ ଆଉ କେହି ମନ୍ଦିର ଖୋଜି ନାହାନ୍ତି, ତେଣୁ ନଚିକେତାର ଜନ୍ମଦିନ ପାଳିବାରେ କେବେ ଅସୁବିଧା ହୋଇନାହିଁ । ସ୍ୱିଜରଲାଣ୍ଡର ଆଲ୍‌ପସ୍ ପର୍ବତମାଳା, ଫ୍ରାନ୍‌ସର ରାଇନ୍ ନଦୀ, ବିକ୍ଷୁବ୍ଧ ପ୍ରଶାନ୍ତ ମହାସାଗର; ସମସ୍ତ ସମୟରେ ମହାଶୂନ୍ୟ ଆକାଶ, ସବୁଠି ଆମେ ଈଶ୍ୱରଙ୍କୁ ଦେଖିଛୁ, ନଚିକେତାର ଜନ୍ମଦିନ ଉପଲକ୍ଷେ ଦେବତାର ଆଶିଷ ମାଗିଛୁ । ତାଙ୍କର ବନ୍ଦନା ଗାଇଛୁ ।

ଆଜି ପୁଣି ନଚିକେତାର ଜନ୍ମଦିନ ଆସିଛି ।

ଟରେଣ୍ଟୋଠୁ ନାୟାଗ୍ରା ଖୁବ୍ ପାଖ । ନିଜର କାର୍ ଥିଲେ ଜମାରୁ ଘଣ୍ଟାଏ ଦେଢ଼ଘଣ୍ଟାର ଯାତ୍ରା ।

ପବନ ତା'ର ଦିଗ ପରିବର୍ତ୍ତନ କରିଛି । ମୁଁ ଜଳକଣାର ସ୍ପର୍ଶ ପାଇ ଶୀତ ଅନୁଭବ କଲି । କେତେବେଳେ ସନ୍ଧ୍ୟା ଆସିଯାଇଛି । ନାୟାଗ୍ରା ବନାରସୀ ଶାଢ଼ୀ ପିନ୍ଧିଥିଲା ଯେପରି । ନଚିକେତାକୁ ସମ୍ବୋଧନ କରି ସେ ବସିଥିବା ସ୍ଥାନକୁ ଚାହିଁଲି, ସ୍ଥାନ ତା'ର ଶୂନ୍ୟ ପଡ଼ିଥିଲା । କୁଆଡ଼େ ଗଲା ସେ ? ମୋତେ ଭାବନାମଗ୍ନ ଦେଖି କେତେବେଳେ ସେ ଉଠି ଚାଲିଯାଇଛି । ଚକିତ ହୋଇ ଏଣେତେଣେ ଚାହିଁଲି । ଟୁରିଷ୍ଟମାନଙ୍କ ସଂଖ୍ୟା ବଢ଼ି ଯାଇଥିବା ପରି ଲାଗିଲା । ନଚିକେତା କାହିଁ ? ଦେଖିଲି, ଦୁଇଜଣ ପାଖ ରେସ୍ତୋରାଁରୁ ମୋ ପାଖକୁ ଦଉଡ଼ି ଆସୁଥିଲେ । ଦଉଡ଼ୁଥିବା ଅବସ୍ଥାରେ ବି ଦୁହିଁଙ୍କ ହାତ ଛନ୍ଦାଛନ୍ଦି ହୋଇଥିଲା । ଆଲୋକରେ ଦେଖିଲି, ନଚିକେତା ଜଣେ ପିଙ୍ଗଳକେଶୀ ସୁନ୍ଦରୀ ବାଳିକା ସହିତ ମୋ ଆଡ଼କୁ ଦଉଡ଼ି ଆସୁଛି । ଦୁହିଁଙ୍କ ପଦପାତରେ ଜାଗ୍ରତ ହୋଇ ଆସୁଥିବା ଯୌବନର ଶକ୍ତି, ମୁଖମଣ୍ଡଳରେ ଆହ୍ଲାଦ ଓ ପରମ ଲାବଣ୍ୟ, ନଚିକେତା ଉପରେ ବିରକ୍ତ ହେବାକୁ ପ୍ରଥମେ ଇଚ୍ଛା ହୋଇ-ଥିଲା; କିନ୍ତୁ ଦେବଯାନୀର ସ୍ମୃତି ମୋତେ ସଂଯତ କଲା । ବୋଧେ ଅସୀମ ସହିତ ମାନବ ମନର ତୃପ୍ତିପାଇଁ ସସୀମର ଉପସ୍ଥିତି ମଧ୍ୟ ଆବଶ୍ୟକ ପଡ଼େ । ବୋଧେ କେତେକଙ୍କପାଇଁ ଈଶ୍ୱର ମନ୍ଦିର ଭିତରେଇ ପ୍ରକାଶିତ ହୁଅନ୍ତି ।

ମୋ ପାଖରେ ପହଞ୍ଚିବା ପରେ ନଚିକେତା କହିଲା—ସେ ମୋର ଗାର୍ଲଫ୍ରେଣ୍ଡ ଜୁଡ଼ି । ଯାହା କଥା କହୁଥିଲି । ସେମାନେ ଇଂଲଣ୍ଡରୁ ଆସିଛନ୍ତି ।

ବାଳିକାଟି ମୋତେ ଚାହିଁ ମୋର ମନକଥା କଣ ଜାଣିବାକୁ ଯେପରି ଚେଷ୍ଟା କରୁଥିଲା । ମୋର ପ୍ରଲମ୍ବିତ ଶ୍ମଶ୍ରୁ ଉପରେ ତା'ର ଦୃଷ୍ଟି ନିବଦ୍ଧ ରହିଗଲା । ମୁଁ ହସି ବାଳକାଟି ସହିତ କରମର୍ଦ୍ଦନ କଲି । କହିଲି—ସୁଜେନ୍ ମେନାଡ଼୍ । ଠିକ୍ ମନେ ରଖିଛ ନା ?

ମୋ ଆଡ଼କୁ ପ୍ରଶଂସମାନ ଦୃଷ୍ଟିରେ ଚାହିଁ ସୁଜେନ କହିଲା—ଆପଣଙ୍କ ପେଣ୍ଟିଂସ୍‌ଗୁଡ଼ାକ କାଲିଠୁ ଟରଣ୍ଟୋ ଆର୍ଟ ଗ୍ୟାଲେରୀରେ ମାସକପାଇଁ ପ୍ରଦର୍ଶନ କରାଯାଉଛି ।

ମୁଁ ହସି କହିଲି—ହିଁ ।

ମୋର ଡାଡ଼୍, ମମି ଓ ମୁଁ ଆପଣଙ୍କ ପେଣ୍ଟିଂସ୍‌ରେ ଭାରି ଆଗ୍ରହାନ୍ୱିତ । ଆମେ କାଲିପାଇଁ ଟିକଟ ବି କିଣି ସାରିଛୁ । ଡାଡ଼୍ କହୁଥିଲେ ଆପଣ ଭାରତବର୍ଷର ପୌରାଣିକ ଚରିତ୍ରମାନଙ୍କୁ ପ୍ରାକୃତିକ ଦୃଶ୍ୟ ସହିତ ଅଭିନ୍ନାତ୍ମକ କରି ସେମାନଙ୍କୁ ନୂତନ ରୂପ ଦେଇଛନ୍ତି ।

ମୋର ଦୃଷ୍ଟି ନାୟ୍ଗ୍ରା ଆଡ଼କୁ ଚାଲିଗଲା । ବନାରସୀ ଶାଢ଼ୀ ଛାଡ଼ି ସେ ଗାଢ଼ ନୀଳରଙ୍ଗର କାଶ୍ମୀରୀ ସିଲ୍କ ଶାଢ଼ୀ ପିନ୍ଧିଥିଲା । ମୁଁ ସୁଜେନ୍ ପ୍ରଶ୍ନର କ'ଣ ଉତ୍ତର ଦେବି ଠିକ୍ କରି ନ ପାରି ଚୁପ ରହିଗଲି ।



# ଅନେକ ସ୍ମିତ ହସ

ମନୋଜ ଦାସ

ତାଙ୍କୁ ଅନବରତ ହରକତ କରିବା ଯେ ଏ ଚରାଚର ଦୁନିଆର ଅନ୍ୟତମ ଗୂଢ଼ ଉଦ୍ଦେଶ୍ୟ, ଆଉ ବହୁଦିନରୁ ଏ ସନ୍ଦେହ ମନ ଭିତରେ ପୋଷଣ କରୁଥିଲେ; କିନ୍ତୁ ଗତ ରବିବାର ସକାଳେ କିଛି ସମୟ ନିମନ୍ତେ ତାଙ୍କର ସେ ସନ୍ଦେହ ଦୃଢ଼ ପ୍ରତୀତିରେ ପରିଣତ ହୋଇଥିଲା । ପ୍ରଥମତଃ ତାଙ୍କ ତଳମହଲାର ନବାଗତ ବାସିନ୍ଦା ପୂରାଦମ୍‌ରେ ପାଣିଟେପ୍ ଖୋଲି ଯଥେଚ୍ଛା କାରବାର କରିବା ଫଳରେ ଗାଧୁଆଘରେ ଆଉ ତାଙ୍କ ପ୍ରଶସ୍ତ ଚନ୍ଦାର ମାତ୍ର ଅର୍ଦ୍ଧେକ ଅଞ୍ଚଳକୁ ଶୀତଳ କରି ପାରିଥିଲେ । ଦ୍ୱିତୀୟତଃ, ଚାହା କପ୍‌ଟି ଓଠ ସ୍ପର୍ଶ କରିବା ମୁହୂର୍ତ୍ତରେ ଝରକା ସେପଟରୁ ହକର୍ ବାଳକ ରକେଟ୍ ବେଗରେ 'ରବିବାସରୀୟ ସଚିତ୍ର ପତ୍ରିକା' ଖଣ୍ଡିକ ନିକ୍ଷେପ କରନ୍ତେ ଚାହା ପରିବର୍ତ୍ତେ ତାଙ୍କ ଓଠ ପତ୍ରିକାଟିର ପୃଷ୍ଠଦେଶରେ ବିଜ୍ଞାପିତ ଏକ ସୁଧାର ଗଣ୍ଡାର(କୌଣସି ସ୍ନୋ ମାଖିଲେ ଯାହାର ଚମଡ଼ା ମଖମଲ ବନିଯାଏ ବୋଲି କୋମ୍ପାନୀର ବକ୍ତବ୍ୟ)ଟିକୁ ଚୁମ୍ବନ କଲେ । ଉତ୍ତପ୍ତ ଚାହାର ଜ୍ୱାଳା ତାଙ୍କର ସମଗ୍ର ପେଟକୁ ପ୍ଲାବିତ କରି ବହିଗଲା ମନ ଭିତରକୁ । ଘଣ୍ଟାଏ ପରେ ମଧ୍ୟ ସେ ଯେତେବେଳେ ରାଜପଥରେ ସାଇକଲ କରି ଚାଲିଥିଲେ, ସେ ଜ୍ୱାଳା ଥିଲା ଅତୁଟ । ଅତଏବ, ବିପରୀତ ଦିଗରୁ ତାଙ୍କ ହାକିମଙ୍କୁ କାର୍ ଚଳାଇ ଆସିବାର ଦେଖି ନମସ୍କାରଟିଏ କରିବାର ଆବଶ୍ୟକତା କଥା ଚିନ୍ତା କରି ତାଙ୍କର ସେ ଜ୍ୱାଳା ଦ୍ୱିଗୁଣିତ ହୋଇଗଲା ।

ତଥାପି ସେ ନମସ୍କାର କଲେ—ସେଇ ଚଳମାନ ଅବସ୍ଥାରେ ମୁହଁରେ ଏକାଗ୍ର ଭକ୍ତି ଫୁଟାଇ, ଗୋଟାଏ ହାତ ଟେକି, ମସ୍ତକ

ଯଥାସମ୍ଭବ ଅବନତ କରି; କିନ୍ତୁ ହାକିମ ସେପ୍ରତି ଭ୍ରୂକ୍ଷେପ ନ କରି, ଉପରକୁ ପେଁକାଳି ଚପି, ଆଗକୁ ମାଡ଼ି ଗ୍ଭଲିଗଲେ । ଗିଓ ଗୋଟାଏ ଜନପ୍ରିୟ ବିରକ୍ତିବ୍ୟଞ୍ଜକ ଉଚ୍ଚାରଣୀ କରିବାକୁ ଯାଉଥିଲେ; କିନ୍ତୁ ସେତେବେଳକୁ ତାଙ୍କ ନମସ୍କାରର ପ୍ରତିକ୍ରିୟା ଏକ ଚିତ୍ତାକର୍ଷକ ଦୃଶ୍ୟ ସୃଷ୍ଟି କରି ସାରିଥାଏ । ହାକିମଙ୍କ କାର୍‌ର ଠିକ୍ ପଛକୁ ସାଇକଲ୍ କରି ଗ୍ଭଲିଥିଲେ ତିନିଜଣ ଭଦ୍ରଲୋକ । ଗିଓଙ୍କ ଅଯାଚିତ ନମସ୍ୟ କିଏ, ସେ ସମ୍ପର୍କରେ ଅଜ୍ଞ ସେ ତିନିହେଁ ଏକ ସମୟରେ ପ୍ରତିନମସ୍କାରର ଆଚାର ପାଳନ କରିସାରି ତତ୍‌କ୍ଷଣାତ୍ ତାର ଔଚିତ୍ୟ ସମ୍ପର୍କରେ ସନ୍ଦିହାନ ହୋଇ ପରସ୍ପରପ୍ରତି ଦୃକ୍‌ପାତ କରିବାକୁ ଲାଗିଲେ । ଫଳରେ ତିନିହେଁ ହେଲେ ଭାରସାମ୍ୟଚ୍ୟୁତ । ରବିବାସରୀୟ ଅଳସ ରାଜପଥରେ ସଂଘଟିତ ହେଲା ଏକ ମନ୍ଥର ମଧୁର ସମବେତ ପତନ ।

ପଛକୁ ଅନାଇ ଗିଓ ହସିଲେ । ଗ୍ରୀଷ୍ମାପାନ· ଜନିତ ଦେହ ଓ ମନର ଜ୍ୱାଳା ଏକ ପୁଲକପ୍ରଦ ଶିହରଣ ଭିତରେ ପ୍ରଶମିତ ହୋଇଗଲା । ଭୂପତିତ ସୁଧୀଜନ ତିନିଙ୍କ ଉଦ୍ଦେଶ୍ୟରେ ସେ କୃତଜ୍ଞ ଅନୁଭବ କଲେ । ସେମାନେ ଭଲ ବୋଲି ସିନା ତାଙ୍କୁ ପ୍ରତିନମସ୍କାର ଜଣାଇବାକୁ ତତ୍ପର ହୋଇଉଠିଥିଲେ — ଯଦିଓ ଭୁଲ୍‌ବଶତଃ ! ବାସ୍ତବିକ, ଏଇ ଖରାପ ଦୁନିଆରେ କେହି କେହି ଭଲଲୋକ ଅଛନ୍ତି । ଅଥବା, ଖରାପ ଲୋକଙ୍କ ଭିତରେ ବି ଥରେ ଥରେ ଭଲଭିର ଉନ୍ମୀଳନ ହୋଇଥାଏ । ବାସ୍ତବିକ୍, ମଣିଷଠାରୁ ଅଧିକ ବିଚିତ୍ର ବ୍ୟାପାର ଏ ଜଗତରେ ଆଉ କିଛି ନାହିଁ । ସେଇ ଯେଉଁ ଭଦ୍ରଲୋକ(ଭଦ୍ରଲୋକ ?)ଟି ଗ୍ଭଲିଯାଉଛନ୍ତି, ତାଙ୍କ ମୁଣ୍ଡରେ ହୁଏତ କାହା ଉଦ୍ଦେଶ୍ୟରେ ରାଗର ନିଆଁ ହୁତୁ ହୁତୁ ହୋଇ ଜଳୁଥିବ, ଅଥଚ ମୁଣ୍ଡରେ ଟୋପିଟିଏ ମଡ଼ାଇ ସେ ଦେଖାଉଛନ୍ତି ଯେ ସେ ଏକାନ୍ତ ନିରୀହ—ଶୋଲ ଆଉ କନାରେ ତିଆରି ଟୋପିଟିଏ ଚାପି ଧରିଛି ଯେଉଁ ମଗଜକୁ, ସେ ମଗଜ ଆଉ ଏମିତି କ'ଣ ଗରମ ହୋଇପାରେ ? ଏପଟେ ଆଉ ଜଣେ ବ୍ୟକ୍ତି ପ୍ରଶସ୍ତ ଚିତା ଚୈତନ୍‌ର ମୁଦ ଦେଇଛନ୍ତି ନିଜ ଶିରରେ । ଅର୍ଥାତ୍, ସେ ମୁଦ ଭାଙ୍ଗି ଆଉ କିଛି ପଶିବାର ପ୍ରଶ୍ନ ଯିମିତି ନାହିଁ ! ଅଦୂରରେ ସେ ଫିଟ୍‌ଫାଟ୍ ଯୁବକଟି ଅଦ୍ୟ ରବିବାର ଦ୍ୱିପ୍ରହରେ ହୁଏତ ଗୋଟାଏ କୁକୁଡ଼ା ବେକ ମୋଡ଼ିବାର ଯୋଜନା କରୁଥିବେ;

ଅଥଚ ନିଜ ବେକଟାକୁ ଟେରିଲିନ୍ ଟାଇରେ ବାନ୍ଧି ପକାଇ ସେ ନିଶ୍ଚିନ୍ତ ବୋଲାଇ ବାଟ ଚାଲୁଛନ୍ତି । ଆଉ ଏଇ ଭଦ୍ରଲୋକଟି ପଞ୍ଜାବୀ ପିନ୍ଧିଛନ୍ତି କାହିଁକି ? କଲର ନ ଥିବା ଜାମା ପିନ୍ଧିବାର ମତଲବ କ'ଣ ? ମାନେ— ହେଉଛି ମୋର ପୂରା ବେକ ଏକାନ୍ତ ଆପଣଙ୍କ ସେବାରେ—ମୋତେ ହାଣିକୁ ନେଇ ପାରନ୍ତି । ଆହା ! କେଡ଼େ ନିଶ୍ଚିନ୍ତ ।

ହୃଦୟରେ ଅଟ୍ଟହାସ୍ୟ ହସି ରାଓ କହିଲେ, ଦୁନିଆର ପିଲେ ! ତୁମକୁ ମୁଁ ଚିହ୍ନେ ! ତେବେ ହଁ—ଗୋଟାଏ ଦୃଷ୍ଟିରୁ ଦେଖିଲେ ବର୍ବରମାନେ ଭଲ ନୁହନ୍ତି ତ ଆଉ କ'ଣ ? ନିଶ୍ଚିନ୍ତ ଦେଖାଯିବା ପ୍ରୟୋଜନ, ଏତକ ତ ସେମାନେ ଅନୁଭବ କରୁଛନ୍ତି ! ନିଶ୍ଚିନ୍ତ ହେବାର ପ୍ରୟୋଜନବୋଧରୁ ଯିନା ନିଶ୍ଚିନ୍ତ ଦେଖାଯିବାର ପ୍ରୟୋଜନବୋଧର ଜନ୍ମ ।

ରାଓ ସ୍ନେହାସକ୍ତ ଚିତ୍ତରେ ଦୁନିଆର ପିଲାଙ୍କ ବଦନମଣ୍ଡଳମାନ ଅବଲୋକନ କରିବାକୁ ଲାଗିଲେ । ତାଙ୍କ ବାମପାଖ ଦେଇ ଗୋଟାଏ ରିକ୍ସାରେ ବସି—ସମୁଦାୟ ରିକ୍ସାଟାରେ ବସି—ଜଣେ ପ୍ରକାଣ୍ଡ ମଣିଷ ଯାଉଥିଲେ । ତାଙ୍କ ନାକଟା ନାକମାନଙ୍କ ଭିତରେ ହାତୀ । ସର୍ପାକୃତି ନିଶ ଦୁଇଟି ଅକ୍ଟୋପାସର ବାହୁ ଭଳି କାହାକୁ କାବୁ କରିବା ପାଇଁ ଯିମିତି ଛଟପଟ ହେଉଛି; କିନ୍ତୁ ଆଶ୍ଚର୍ଯ୍ୟ ! ଲୋକଟା ରାଓଙ୍କ ଆଡ଼କୁ ଅନାଇ ଈଷତ୍ ହସି ମୁଣ୍ଡ ଟୁଙ୍ଗାଇଲେ —କେଡ଼େ ବାଧ୍ୟ ଭାବରେ ସେ ନାକ ଓ ହିଂସ୍ର ନିଶ ବି ଟୁଙ୍ଗାର ହୋଇ-ଗଲେ ! ରାଓ ବିସ୍ମିତ ହେଲେ ଓ ଖୁସି ହେଲେ । ଗୋଟାଏ ଇଂରାଜୀ ଅଭିବ୍ୟକ୍ତି ଜିଭକୁ ଆସୁଛି—କ'ଣ ଟି ?—ହଁ **Milk of human kindness** ! ହଁ, ସେଇ ହିଂସ୍ର, ନିଶ-ସଙ୍କୁଳ ଲୋକଟିର ଦାନ୍ତଗୁଡ଼ିକ ଦୁଧ ଭଳି ଧଳା, ଆଉ ସମଗ୍ର ଲୋକଟି ଦୟାଳୁ ।

ପ୍ରକାଣ୍ଡ ଲୋକଟି ସମ୍ପର୍କରେ ଚିନ୍ତା ଶେଷ ନ ହେଉଣୁ ରାଓଙ୍କ ଆଖି ହୁଏତ ନିରୋଳା ବୈପରୀତ୍ୟର ରସ ଆସ୍ୱାଦନ କରିବା ସକାଶେ ଜଣେ କ୍ଷୀଣ, ଖର୍ବ ବ୍ୟକ୍ତିଙ୍କ ଉପରେ ନିବଦ୍ଧ ହୋଇ ସାରିଥିଲା । ତାଙ୍କର ସଦର୍ପ ପଦକ୍ଷେପରୁ ମନେ ହେଉଥିଲା, ଯେମିତି ପ୍ରତି ପାଦକ୍ଷେପରେ ସେ ତାଙ୍କ ଅସ୍ତିତ୍ୱ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବା ଅଦୃଶ୍ୟ ଶତ୍ରୁମାନଙ୍କୁ ଦମନ କରି

କରି ବାଟ ଚାଲିଛନ୍ତି । ରାଓ ଏ ବ୍ୟକ୍ତିଟିକୁ ପୂର୍ବରୁ ବହୁବାର ଦେଖିଛନ୍ତି; ସର୍ବଦା ଗୋଟାଏ ବଡ଼ ଧରଣର ବହି ସେ କାଖତଳେ ଯାକି ଥା'ନ୍ତି—ଯିମିତି ନିଜ ବପୁର କମ୍ତିକୁ ପୂରଣ କରିବା ପାଇଁ । ଆଶ୍ଚର୍ଯ୍ୟ ! ରାଓଙ୍କ ଉପରେ ଆଖି ପଡ଼ିଯିବାରୁ ସେ ବି ଆଜି ଟିକିଏ ହସିଦେଲେ ।

ଅତି ଶୀଘ୍ର ରାଓ ଏଇଆ ଆବିଷ୍କାର କରି ଚମତ୍କୃତ ହେଲେ ଯେ ଆହୁରି ଦୁଇ ଚାରିଜଣ ପଥଚାରୀ—କିଏ ରିକ୍ସାରୂଢ଼, କିଏ ସାଇକ୍ଲାରୋହୀ, କିଏ ପଦଯାତ୍ରୀ—ତାଙ୍କୁ ଅନାଇ ସ୍ମିତ ହସଟି ମ୍ଲାନ ଫୁଟାଇ ଯେ ଯା ପଥରେ ଚାଲିଗଲେଣି । ରାଓ ସେମାନଙ୍କ ଉପରକୁ ଗୋଟାଏ ସେକେଣ୍ଡରୁ ଅଧିକକାଳ ଦୃଷ୍ଟିପାତ କରି ନାହାନ୍ତି । ଏପରିକି ନାନାବିଧ ପ୍ରସାଧନାବୃତା ଜନୈକା ମହିଳା (ଯାହାଙ୍କୁ ରାଓ କୌଣସି ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ତଥା ଜଣେ ମନ୍ତ୍ରୀଙ୍କ ଶାଳୀ ବୋଲି ଜାଣନ୍ତି, ଏବଂ ଶିକ୍ଷୟିତ୍ରୀ ଓ ମନ୍ତ୍ରୀ ଇତ୍ୟାଦି ଅନୁଷ୍ଠାନ ପ୍ରତି ତାଙ୍କର ଚିରାଚରିତ ଅସ୍ୱସ୍ତିଭାବ ଯୋଗୁ ମହିଳାଙ୍କୁ ଜାଣନ୍ତି ମାତ୍ର, ତତୋଧିକ କିଛି ନୁହେଁ ) ମଧ୍ୟ ତାଙ୍କ ଆଡ଼କୁ ଅନାଇ ଈଷତ୍ ହସି ମୁହଁ ଫେରାଇ ନେଲେ । ଦୁଇବର୍ଷ ଧରି ମହିଳାଙ୍କ ସମ୍ପର୍କରେ ରାଓଙ୍କ ମନରେ ଥିବା ଅସଂଲଗ୍ନ ଗୁଡ଼ାଏ ଧାରଣା । ସେ ଅହଙ୍କାରିଣୀ (ମନ୍ତ୍ରୀଙ୍କ ଶାଳୀ), ସେ ଅତ୍ୟାଚାରିଣୀ (ହେଡ଼୍ ମିଷ୍ଟ୍ରେସ୍), ସେ ଉଦ୍ଧତା (ମିସ୍) ଓ ସେ ଫୁଲଣିଆ ( ବହଳେ ପାଉଡ଼ର )—ସବୁ ସେଇ ନିମେଷକର ହସ ତୁଳା ଭଳି ଉଡ଼ାଇ ନେଇଗଲା ।

ତା' ହେଲେ—ଶୋଭାଯାତ୍ରାର ମଣିଷ ଆଜି ତାଙ୍କୁ ଅନାଇଁ ହସିଲେଣି । ମଜାର ବିଷୟ ! ଅବଶେଷରେ ରାଜପଥର କର୍ଣ୍ଣନିତାର ପ୍ରାନ୍ତରେ ଥିବା ସୁନ୍ଦର ବଂଗଳେଟି ଆଗରେ ଏକାକିନୀ ଦଣ୍ଡାୟମାନା ସୁକୁମାରୀ ଟିକି ଝିଅଟି ମଧ୍ୟ ତାଙ୍କ ଆଡ଼କୁ ଅନାଇ ହସିଦେଲା ।

ରାଓ ଟିକିଏ ଇତଃସ୍ତତ ହେଲେ । ତା'ପରେ ସେ ସାଇକଲରୁ ଓହ୍ଲାଇ ପଡ଼ି ଚାରିଆଡ଼କୁ ଅନାଇଲେ । କେହି ନାହାଁନ୍ତି । ସନ୍ତ୍ରମରେ ସେ ଝିଅଟି ଆଡ଼କୁ ଆଗେଇ ଗଲେ । ଝିଅଟି ଆହୁରି ହସିଲା । ରାଓ କହିଲେ, "ସୁନାଝିଅ, ଗୋଟାଏ କଥା ପଚାରିବି ।" ଝିଅ ଜିଜ୍ଞାସୁ ନୟନରେ ଅନାଇଲା । "କହ ତ ମା'—ମାନେ ଇଏ—ମାନେ—ତୁ କାହିଁକି ମୋତେ

ଅନାଇ ହସିଲୁ ?'' ଝିଅଟି କହିଲା, ''କାହିଁକି ! ତମେ ତ ସେଇ ସେତେ ଦୂରରୁ ମୋତେ ଅନାଇ ହସି ହସି ଆସୁଥିଲ । ସେଇଥିପାଇଁ ।''

ରାଓ ସ୍ନେହଭରେ ଝିଅଟିର ପିଠି ଆପୁଡାଇ ଦେଇ ସାଇକେଲରେ ଉଠି ବସିଲେ । ସେତେବେଳକୁ ତାଙ୍କ ଗୁଡ ଭିତରେ ହସର ଭୂମିକମ୍ପ । ତା'ହେଲେ, ରହସ୍ୟଟିର ସୂତ୍ର ଥିଲା ତାଙ୍କର ମୁହଁରେ । ବେଶ୍ କିଛିକ୍ଷଣ ପୂର୍ବରୁ ଭୂପତିତ ଭଲ ମଣିଷ ବସୁଙ୍କୁ ଅନାଇ ସେ ଯେଉଁ ହସି ପକାଇ-ଥିଲେ, ସେ ହସ ସମ୍ପୂର୍ଣ୍ଣ ସମ୍ବରଣ କରିବାକୁ ସେ ଭୁଲି ଯାଇଥିଲେ । ରାଜପଥର ସେଇ ନିର୍ଜ୍ଜନ ଅଂଶର ଶେଷ ପର୍ଯ୍ୟନ୍ତ ସେ ଆଗେଇ ଗଲେ । ସେତକ ସମୟ ସେ ସଚେତନ ଭାବରେ ହସୁଥିଲେ— କେତୋଟି ଗଛ, କେତୋଟି ଚଢ଼େଇ ଓ ଅଦୂରର ନଈ ପଠାକୁ ଅନାଇ । ମନେ ହେଉଥିଲା ସେମାନେ ବି ମିଟିମିଟି ହସୁଛନ୍ତି ।

ଏଥର ରାଓ ଘରକୁ ଫେରିଯିବେ । 'ରବିବାସରୀୟ ସରସ ପତ୍ରିକା'ର ଗଣ୍ଡାର ଦେହରୁ ଗୁହା ଶୁଖି ଯିବଣି । କାଗଜଟି ପଢ଼ିବେ । କିନ୍ତୁ କାହିଁକି ସେ ପଦାକୁ ବାହାରି ଆସିଥିଲେ ? ମନେ ପଡ଼ିଲା । ପତ୍ରିକାଟିର ସ୍ଥାନୀୟ ଏଜେଣ୍ଟ ପାଖକୁ ଯାଇ ସେଇ କ୍ଷେପଣାସ୍ତ୍ରଧର୍ମୀ ହକର ପିଲା ବିରୁଦ୍ଧରେ ଅଭିଯୋଗ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଗୁଡ଼, ଦରକାର ନାହିଁ । ଘଟଣା ତ ଆହୁରି ଲଜ୍ଜାକର ହୋଇ ପାରିଥାନ୍ତା । ଯାହାକୁ ଗୁଡ଼ ସେ ଗଣ୍ଡାରକୁ ଚୁମା ଖାଇ ପକାଇଲେ, ସେଇଟି ଗୁହା କାଦୁଅ ଛଡ଼ା ଅଧିକ ମୂଲ୍ୟବାନ୍ ତ କିଛି ନୁହେଁ ।

———

# ହୃଦ କୋଲପ



ଶାନ୍ତନୁ କୁମାର ଆଚାର୍ଯ୍ୟ

ଚମ୍ପା, ତିଳ, ଘୃତ, ଅନଳ, ଶ୍ରୁବଶ୍ରୁଚ ପ୍ରଭୃତି ସେଇ ସବୁ ସାମଗ୍ରୀ ମୋ ପାଇଁ ନିରର୍ଥକ ଥିଲି ସେହିପରି, ଯେଉଁପରି ମୋ ବଂଶର ବେଦ—ଯାହାର ନାମ ମଧ୍ୟ ଏବେ ମୋର ଅଜଣା । ଗୁଡ଼ିଏ ପୁ ରୁଣା, କଳଙ୍କିଧରା କୁଞ୍ଚିଲେନ୍ଥାରେ ଗୁନ୍ଥା ହୋଇଥିବା କୁଞ୍ଚିର ଦନ୍ତୁଡ଼ା ଦାନ୍ତକୁ ବେଳେ ବେଳେ ଅନାଇଲେ ସେଥିରୁ କେତେଗୁଡ଼ିଏ ଶଙ୍କା ମିଶିଷଙ୍କ ମୁହଁ ହୁଏତ ମୋର ସ୍ମୃତିକୁ କୁଞ୍ଚିକାଠିଗୁଡ଼ିକଠୁଁ ବି ଆହୁରି ଅମୁହାଁ ଥିଲି, —ଆମମାନଙ୍କର ନିବୃଜ ହୃଦ କୋଲପ ଆଗରେ । ସୁତରାଂ ଦକ୍ଷିଣପୂର୍ବ ରେଳପଥର ତିନି ନମ୍ବର ଅପ୍ ମାନ୍ଦ୍ରାଜ ମେଲ୍‌ର ପ୍ରଥମ ଶ୍ରେଣୀ କମ୍ପାର୍ଟମେଣ୍ଟର କବାଟ ପାଖରେ ସେଇ ଚିତାଚୈତନକଟା ନାମାବଳୀ ପରିହିତ ଓ ହାତରେ ଆଦି-ଶଙ୍କରାଚାର୍ଯ୍ୟଙ୍କ ଦଣ୍ଡପରି ଖଣ୍ଡେ ବାଡ଼ି ବା ଅନ୍ୟ କିଛି ଧରି ଆଖି ମିଟିମିଟି କରୁଥିବା ମୁହଁଟିକୁ ଦେଖିଲି ମାତ୍ରେ ମୁଁ ଚଟାପଟ୍ ଆଖି ବୁଲେଇ ଆଣିଲି—ମୋ କୋଳ ଉପରେ ପଡ଼ିଥିବା ଖବର କାଗଜ ଉପରକୁ ଓ ଦେଶର ରାଜଧାନୀ ଦିଲ୍ଲୀଠାରେ ଯେଉଁ ଅଭୂତପୂର୍ବ ଘଟଣା ହିଂଭାରତୀୟ ମନକୁ ସେତେବେଳେ ଆଚ୍ଛନ୍ନ କରି ରଖିଥିଲି ଓ ଯାହାକୁ ଲୋକେ ଇନ୍ଦିରା-ନିଜଲିଙ୍ଗାପ୍ପା ମହାଯୁଦ୍ଧ ବୋଲି ନାମିତ କରିଥିଲେ, ସେଇ ମହାଯୁଦ୍ଧର ସାମ୍ବାଦିକ ବର୍ଣ୍ଣନାପୂର୍ଣ୍ଣ କାଗଜଟି ହିଁ ମୋ ମୁହଁକୁ ପୁଣି ଘୋଡ଼ାଇ ଦେଲା ।

ଜଣେ ଉତ୍ତର ଭାରତୀୟ ଭାବେ ମୋର ଦାକ୍ଷିଣାତ୍ୟ ଯାତ୍ରା ସେଥର ପ୍ରଥମ ବା ଦ୍ୱିତୀୟ ନ ଥିଲା । ପୂର୍ବରୁ କେତେଥର ମୁଁ ସେ ଦିଗକୁ ଯାତ୍ରା କରିଛି । କିନ୍ତୁ କୌଣସିଥର ଦକ୍ଷିଣ ପ୍ରତି ଉତ୍ତର ଭାରତୀୟର

ଏତେ ଗୁଡ଼ାଏ ବିତୃଷ୍ଣା ମୋ ମନକୁ ଆକ୍ରାନ୍ତ କରି ନ ଥିଲା, ଯେମିତି ଏଥର । ଏଥିପାଇଁ ଅବଶ୍ୟ ଇନ୍ଦିରା-ନିଜଲିଙ୍ଗାପ୍ପା ବାଦ-ବିସମ୍ବାଦକୁ ମୁଁ ପୂରା ଦୋଷ ଦେଉ ନ ଥିଲି । କାରଣ ଏହି ସମ୍ବାଦପତ୍ରଟି ମୁଁ ହାତରେ ପାଇବା ପୂର୍ବରୁ ମୋର ଦାକ୍ଷିଣାତ୍ୟ ରେଲଯାତ୍ରାର ଅଧିକ ବିରକ୍ତିକର ଅନୁଭୂତିକୁ ମୋ ମନ ଗ୍ରହଣ କରି ସାରିଥିଲା । ତେଣୁ ଇନ୍ଦିରା-ନିଜଲିଙ୍ଗାପ୍ପାଙ୍କ ଅପେକ୍ଷା ମୁଁ ମୋ କମ୍ପାର୍ଟମେଣ୍ଟର ଅନ୍ୟ ଜଣେ ସହଯାତ୍ରୀଙ୍କୁ ନିର୍ଦ୍ଦିଷ୍ଟ ଭାବେ ଦାୟୀ କରିସାରିଥିଲି—ଯାହାଙ୍କ ଉପସ୍ଥିତି ମତେ ପ୍ରତ୍ୟକ୍ଷ ଭାବେ ଉତ୍ତେଜିତ କରି ରଖିଥିଲା ।

ମୋ ଆଖିଆଗ ବର୍ଥଟିକୁ ସେଇ ଭଦ୍ରଲୋକ ପୂରାପୂରି ଅଧିକାର କରି ବସିଥାନ୍ତି । ତାଙ୍କର ପୃଥୁଳ ଆକାରର ସ୍ଥୂଳତା ଅପେକ୍ଷା ମୁଁ ତାଙ୍କର ସୂକ୍ଷ୍ମ ଶରୀରର ତୀକ୍ଷ୍ଣତା ଦ୍ୱାରା ସେତେବେଳକୁ ପୂରାପୂରି ସିଇଁ ହୋଇ-ସାରିଥାଏ । ଭଦ୍ରଲୋକଙ୍କ ସହିତ ମୋର ପ୍ରଥମ ବଳ ପରଖାପରଖି ହୋଇଗଲା ଆମ ମଧ୍ୟାହ୍ନ ଭୋଜନର "ମେନୁ" ଉପରେ । ଖାନା ଅର୍ଡ଼ର ନେବାକୁ ଆସିଥିବା ରେଲୱେ କର୍ମଚାରୀ ଆମ ବଗିର ଯାତ୍ରୀଙ୍କର ମଧ୍ୟାହ୍ନ ଭୋଜନ ସମ୍ପର୍କରେ ଗୋଟିଏ ତାଲିକା ପ୍ରସ୍ତୁତ କରିବା ପାଇଁ ଯେତେ-ବେଳେ ମୋ ପାଖରେ ପହଞ୍ଚିଥିଲେ, ସେତେବେଳେ ସ୍ୱତଃ ମୋ ପାଟିରୁ ବାହାରିଥିଲା "ନନଭେଜିଟେରିଆନ୍ ମଟନ୍ ବା ଚିକେନ୍ ଆଉ ପ୍ରଚୁର କଞ୍ଚା ପିଆଜ ସାଲାଡ଼୍......।" କିନ୍ତୁ ମୋ ପାଟିରୁ କଥା ନ ସରୁଣୁ ମୋ ସାମନା ସିଟ୍‌ରୁ ଶୁଣିବାକୁ ମିଳିଲା—

"ପୂରାପୂରି ଭେଜିଟେରିଆନ୍—ଖବରଦାର ! ପିଆଜ ଦୁର୍ଗନ୍ଧ ମୋ ଦେହରେ ଯାଏ ନାହିଁ ।" ସେତିକିବେଳେ ମୁଁ ସେଇ ଭଦ୍ରଲୋକଙ୍କୁ ଯାହାଥରେ ନିକଟରୁ ଦେଖିଥିଲି । ତା' ପରଠୁ ମୁଁ ଓ ସେ ପରସ୍ପରର ବହୁଦୂରକୁ ଚାଲିଗଲୁଁ ଓ ସେଇଠୁ ଜଣେ ଅପରକୁ ଖଟେଇ ହେବା ଆରମ୍ଭ କରି ଦେଇଥିଲୁ । ଏହିପରି ବହୁ ଦୂର ଓ ନିରାପଦ ସ୍ଥାନରେ ଥାଇ ମୁଁ ତାଙ୍କୁ ନିରୀକ୍ଷଣ କରି ଯାହା ତାଙ୍କ ସମ୍ପର୍କରେ ବୁଝିଥିଲି, ତାହା ହେଉଛି ସେ ନିଶ୍ଚୟ ଜଣେ ଖାଣ୍ଟି ଦକ୍ଷିଣୀ ଲୋକ । କିନ୍ତୁ ତାଙ୍କ ବେଶ-ପୋଷାକରୁ ସେମିତି କିଛି ଖାଣ୍ଟି କଥା ଦେଖାଯାଉ ନ ଥିଲା । ମୋର ପୋଷାକ ଓ ତାଙ୍କର ପୋଷାକ ପ୍ରାୟ ସମାନ ଥିଲା । ମୋ ପରି ସେ ବି ସାହେବୀ ପେଣ୍ଟ-କୋଟ-ଟାଇ ପିନ୍ଧିଥିଲେ ଏବଂ ତାଙ୍କ ହାବଭାବରୁ ମୁଁ

ଯାହା ଠଉଟରେଇଥିଲେ, ମୋ ପରି ସେ ବି ଜଣେ ସରକାରୀ କର୍ମଚାରୀ, ହୁଏତ ଅଧିକ ଶକ୍ତିଶାଳୀ କୌଣସି ସବ୍‌ଭାରତୀୟ କର୍ମଚାରୀ ବି ହୋଇଥାଇ ପାରନ୍ତି । କିନ୍ତୁ ସାମଗ୍ରିକ ଭାବେ ବାହ୍ୟ ସାମଞ୍ଜସ୍ୟ ସତ୍ତ୍ୱେ ଆମ ଭିତରେ ଏତେ ଅସାମଞ୍ଜସ୍ୟ ରହିଥିଲା ଯେ, ଆମର ଦୀର୍ଘକାଳର ରେଳଯାତ୍ରା ସତ୍ତ୍ୱେ କେବଳ ଥରଟିଏ ଛଡ଼ା ଦ୍ୱିତୀୟ ଥର ପାଇଁ ଏକାଠି ମିଶିବାକୁ ଆମେ ଆମ ଆଖିର ପୁଅମାନଙ୍କୁ ଏକାଠି ଛାଡ଼ ଦେଇ ନ ଥିଲୁ ।

ଏହାରି ଭିତରେ ଆମ କମ୍ପାର୍ଟମେଣ୍ଟର କବାଟ ସନ୍ଧିରୁ ସେଇ ଆଦି-ଶଙ୍କରାଚାର୍ଯ୍ୟ ରୂପୀ ମୁହଁଟି ଦିଶିଲା । ମୁଁ ଖବରକାଗଜରେ ମୁହଁ ଘୋଡ଼େଇ ହେଇ ବସିଥାଏ । କିନ୍ତୁ ଲୋକଟିର ଚେହେରାରୁ ଶଙ୍କରାଚାର୍ଯ୍ୟ ଭାବ ମତେ ଛୁଇଁଥିଲେ ସୁଦ୍ଧା ମୁଁ ତା' ସମ୍ପର୍କରେ ଆହୁରି କଥାଏ ବୁଝିଥିଲି । ଦକ୍ଷିଣର ଏହି ଶଙ୍କରରୂପୀ ଲୋକଗୁଡ଼ିକ ପ୍ରକୃତିରେ ଜଣେ ଜଣେ ବୁଲା ଜ୍ୟୋତିଷ । ଦକ୍ଷିଣର ଶଙ୍କର ବା ବୁଲା ଜ୍ୟୋତିଷ କେହି ମୋ ଧାତୁକୁ ସ୍ପର୍ଶ କରିପାରନ୍ତି ନାହିଁ । ସ୍ୱଭାବତଃ ମୁଁ ମାୟାକୁ ପସନ୍ଦ କରେ – ବ୍ରହ୍ମକୁ-ନୁହେଁ, ମ୍ୟାଜିକବାଲାକୁ ପସନ୍ଦ କରେ—ଜ୍ୟୋତିଷକୁ ନୁହେଁ । ତେଣୁ ଦରଖୋଲା ଫାଙ୍କଟିକୁ ଆଗନ୍ତୁକର ପୂରା ଶରୀର ପ୍ରବେଶ ପାଇଁ ନିଜ ହାତରେ ଖୋଲିଦେବା ପୂର୍ବରୁ ମୋ ସାମନା ସିଟ୍‌ର ଭଦ୍ର-ଲୋକଙ୍କ ଆନନ୍ଦସୂଚକ କୁହାଟରେ ମୋ ନିଜ ଦେହ ବିଷରିପିଗଲା । ସେମିତି ବିଷରିପି ଥିବା ଦେହ ଭିତରେ ମୁଁ ଆହୁରି କେତେବେଳ ବୁଡ଼ି ରହିଲି ଖବରକାଗଜ ଭିତରେ । କିନ୍ତୁ ହଠାତ୍ ମୋ ହାତ ପାପୁଲିର ପଛପଟ ଚମ ଉପରେ ଆଉ ଗୋଟିଏ ହାତର ପ୍ରତ୍ୟକ୍ଷ ସ୍ପର୍ଶ ପାଇବା ମାତ୍ରେ ମୋ ଦେହର ବାକିତକ ଚମ ସଙ୍କୁଚି ଗଲା ।

"ଆପ୍ ଉତ୍ତର ସେ ଆୟେ ହେଁ—ନା ?"

ମୁଁ ତାର ଚେହେରା ଓ ବୃତ୍ତି ବ୍ୟତୀତ ତା'ର ଚର୍ମର ସ୍ପର୍ଶକୁ ହଠାତ୍ ଏତେ ଘୃଣା କଲି ଯେ, ତା'ଠାରୁ ସମ୍ପୂର୍ଣ୍ଣ ଦୂରକୁ ଚାଲିଯିବା ପରିବର୍ତ୍ତେ ତା ଗାଲରେ ଗୋଟିଏ ଚାପୁଡ଼ା ମାରିବାକୁ ଇଚ୍ଛା କଲି । କିନ୍ତୁ ମୋର ଧର୍ମଚେତନା ଅପେକ୍ଷା ମୋର ରାଜନୀତିଚେତନା ମତେ ତଥାପି ଘାରିଥିଲା ଓ ମୁଁ ସ୍ପଷ୍ଟ ମନେ ରଖିଥିଲି ଯେ, ଆମ ଗାଡ଼ି ସେତେବେଳକୁ ମୋର ପରିଚିତ ସହରଠାରୁ ବହୁଦୂର ପଥ ଅତିକ୍ରମ କରି ସାରିଥିଲା ।

ରେଲୱେ ଟାଇମ୍ ଟେବ୍‌ଲରୁ ଓ ମୋର ସ୍ଥାନ-କାଳ-ପାତ୍ର ଜ୍ଞାନରୁ ମୁଁ ମୋର ଅବସ୍ଥିତିକୁ ମଧ୍ୟ ନିର୍ଣ୍ଣୟ କରି ସାରିଥିଲି । ଆମ ଗାଡ଼ି ସେତେବେଳକୁ ଆନ୍ଧ୍ର ପ୍ରଦେଶର ଗୋଦାବରୀ ପାଖାପାଖି ଧରି ସାଇଥିଲା । ଜ୍ୟୋତିଷଟି ନିଷ୍ଟୟ ସ୍ଥାନୀୟ ହୋଇଥିବ । ଏଣୁ ମୁଁ ମୋର ଉଦ୍ୟତ ହାତକୁ ସଯତ କରିନେଇ ସ୍ଥିରହୋଇ ପୂର୍ବଭଳି ବସିରହିଲି ।

ମତେ ନିରୁତ୍ତର ରହିବା ଦେଖି ଲୋକଟି ଟିକିଏ ସନ୍ଦେହରେ ପଡ଼ିଲା । କିନ୍ତୁ ତୁରନ୍ତ ଭାଷାକୁ ଚଟାପଟ୍ ବଦଳେଇ ଦେଲା ସେ । ହିନ୍ଦୁସ୍ତାନୀ ପରିବର୍ତ୍ତେ ସେ ଇଂରେଜୀ ଭାଷା ବ୍ୟବହାର କରିବା ଶୁଣିପାରି ମୁଁ ଯଥାରୀତି ଆଶ୍ଚର୍ଯ୍ୟ ହେଲି । ଲୋକଟି ଶିକ୍ଷିତ ବୋଲି ସ୍ୱାଭାବିକ୍ ଭାବେ ଭାବିନେବା ପରେ ମୁଁ ଟିକିଏ ଥଣ୍ଡା ହେଲି ଓ ଖବରକାଗଜ ଆଢୁଆଳରେ ତା ମୁହଁକୁ ଅନେଇଲି ।

ଏତିକବେଳେ ଆମ ଗାଡ଼ିର ଗଡ଼ନ୍ତ ଚକମାନଙ୍କର ଶବ୍ଦରେ ଗୋଟିଏ ପରିବର୍ତ୍ତନ ହେଲା । ନଈ ପୋଲ ଉପରେ ରେଲଗାଡ଼ି ଚକ ଗଡ଼ିଲାବେଳେ ଯୋଉ ପ୍ରକାର ଧ୍ୱନି ଶୁଣାଯାଏ, ସେହି ଧ୍ୱନି ଆରମ୍ଭ ହୋଇଗଲା । ଆମ ଗାଡ଼ି ଗଡ଼ିଲା ଗୋଦାବରୀ ପୋଲ ଉପରେ ।

ଲୋକଟାର ମୁହଁ ଉପରୁ ଚଟ୍‌କରି ଆଖି ବୁଲେଇ ନେଇ ମୁଁ ବାହାରକୁ ଅନେଇଲି ।

ଭାରତର ମଣିଷମାନଙ୍କ ମୁହଁ ଅପେକ୍ଷା ଭାରତର ନଦୀମାନଙ୍କ ମୁହଁ ମୋର ବେଶୀ ରୁଚିଲା । ମୋ ମନର ବଳକା ଉତ୍ତାପକୁ ଶୀତଳ କରିଦେବା ଉଦ୍ଦେଶ୍ୟରେ ମୁଁ ଆତୁର ଝୁଙ୍କିପଡ଼ିଲି ଗୋଦାବରୀ ନଈ ଆଡ଼କୁ । ଝରକା ବାହାରକୁ ମୋ ବେକ ଝୁଙ୍କିଗଲା । ଏତେବେଳେ ବେକର ମାଂସପେଶୀ ଟାଣି ହୋଇଯିବା ସ୍ୱାଭାବିକ । ହଠାତ୍ ମୋର ଟାଣକି ରହିଥିବା ବେକ ମାଂସପେଶୀ ଉପରେ ତା ଆଙ୍ଗୁଳିର ଚିମ ହିଞ୍ଚିଯିବାର ପାଇଁ ବିଜୁଳି ସକ୍ ଦେଲା ମତେ ।

ଝରକା ବାହାରୁ ସାପପରି ଶିହରି ଆସିଲା ମୋ ବେକ ।

"ଖବରଦାର"—ମୁଁ ତା ଆଡ଼କୁ କଟ୍‌ମଟ୍ କରି ଗର୍ଜିଲି ।

"ଜୟ ଗୋଦାବରୀ ହେ", ସେ ମୋ ଦୃଷ୍ଟିକୁ ବେଖାତିର କରି ହସି ହସିକା କହିଲା ।

"ମତେ ବେଶ୍ ଜଣା"—ମୁଁ ଆହୁରି ରୁଢ଼ ସ୍ୱରରେ ଜବାବ ଦେଲି ଓ ସେ ମୋତେ ଦକ୍ଷିଣ ଭାରତର ଭୂଗୋଳ ବିଷୟରେ ଅଜ୍ଞ ଭାବୁଥାଇପାରେ ଏଇଆ ଆଶଙ୍କା କଲାପରେ ପୁଣି କହିଲି "ସ୍ମାପରେ ଆସିବ କୃଷ୍ଣା, କାବେରୀ—"

ମୋର ଭୂଗୋଳଜ୍ଞାନ ତାକୁ ହୁଏତ ପ୍ରଭାବିତ କଲା । ତାର ହସ ଟିକିଏ ପଡ଼ିଗଲା ଓ ସେ ଗମ୍ଭୀର ହୋଇଗଲା । କିନ୍ତୁ ଟିକିଏ ପରେ ପୁଣି ସେମିତି ହସିଲା, ଆଉ ସତେକି ମୋର କୌଣସି ଭୁଲ ସେ ତଥାପି ଲକ୍ଷ୍ୟ କରିଥିଲା । ସେମିତି ମୁଣ୍ଡ ହଲେଇ ହଲେଇ କହିଲା "ନର୍ମଦେ-ସିନ୍ଧୁ-କାବେରୀ ।"

ଭାରତର ନଦୀମାନଙ୍କ ନାମକୁ ଏକାଠି କରି ସଂସ୍କୃତରେ ଗୋଟିଏ ଶ୍ଳୋକ ଥିବା କଥା ଓ ବିବାହ ଶ୍ରାଦ୍ଧ ପ୍ରଭୃତି ଶୁଭାନୁଷ୍ଠାନମାନଙ୍କରେ ଏହି ନଦୀନାମାବଳୀ ଆବୃତ୍ତି ହେବା ମୁଁ ଶୁଣିଥିଲି । ତାହା ବୋଧେ ଏହିପରି —ଗଙ୍ଗାଷ୍ଟ, ଗୋଦାବରୀଷ୍ଟ,...ନର୍ମଦେ-ସିନ୍ଧୁ-କାବେରୀ ।

ମୁଁ ତା କଣ୍ଠସ୍ୱରରୁ ମୋ ଭିତରେ ବୁଡ଼ି ରହିଥିବା ସଂସ୍କୃତ ଶ୍ଳୋକର ଛନ୍ଦଟିକୁ ପାଇପାରିଲି । ସେହି ଛନ୍ଦରେ ମୋତେ ତା ସହିତ ଛନ୍ଦିଦେବ ବୋଲି ସେ ହୁଏତ ଭାବିଚିନ୍ତି ତାହାକୁ ପ୍ରୟୋଗ କରିଥିଲା । ତାହା ପ୍ରତି ମୋର ଏହି ମୌଳିକ ସନ୍ଦେହ ହେତୁ ମୁଁ ତାଠୁଁ ପୁଣି ଥରେ ନଈ ଆଡ଼କୁ ମୁହଁ ବୁଲେଇ ନେଲି ଓ ବରଂ ସେଇ ଉଧାର କଲା ଛନ୍ଦରେ ମୁଁ ଗୋଦାବରୀ ନଈ ସାଙ୍ଗରେ ନିଜକୁ ଶାନ୍ତ ଭାବେ ଛନ୍ଦି ଦେବି ବୋଲି ଭାବିଲି ।

ତଳେ ଗୋଦାବରୀ ନଦୀର ଜଳଧାର ଗୋଟାଏ ସାମୁଦ୍ରିକ ସବୁଜ ରଙ୍ଗ ଧରିଥାଏ । ଶରତ ଋତୁର ଉପରଓଳା ଖରାର ସୁନାପରି ହଳଦିଆ ରଙ୍ଗ ଓ ଗଭୀର ନଦୀଜଳର କୃଷ୍ଣ ରଙ୍ଗ ଏକାଠି ଗୋଳିଆ-ଘୋଳିଆ ହୋଇ ଏହିପରି ସାମୁଦ୍ରିକ ସବୁଜ ବା ନେଳି ଦିଶୁଥାଏ ।

ସେଇ ନେଳି ରଙ୍ଗ ଉପରେ ମୋର ଦୃଷ୍ଟି ଦ୍ୱିଧାଯୁଥରେ ପଡ଼ିବା-ମାତ୍ରେ ଓ ସେଥିରେ ସଂସ୍କୃତ ରଙ୍ଗଟି ମିଶିଥିବା ଦୃଷ୍ଟିରୁ ବୋଧହୁଏ ମୁଁ ନଦୀର ମାୟାରେ ଛନ୍ଦି ହୋଇ ପଡ଼ିଲି । ସେ ମୋର ଏଇ ମାୟାଚ୍ଛନ୍ନ ଦୃଷ୍ଟିକୁ ଲକ୍ଷ୍ୟ କରିଥିଲା । ତାର ଶଙ୍କରଗୃହିଣୀ ପଣିଆ ହୁଏତ ମୋର ଏଇ

ମାପ୍ପା ବରୁଣରେ କାମ କରିବାକୁ ଲାଗିଲା । ସ୍ୱରକୁ ଖୁବ୍ ଗମ୍ଭୀର କରିପାରି ସେ ମୋ ମୁଣ୍ଡ ପଛପଟୁ ପୁଣି ମନ୍ତେ ଆକର୍ଷଣ କଲା—

"ଆପ ଗଙ୍ଗାଜୀ ସେ ଆୟେ ହେଁ ନା ?"

ମୁଁ ଉତ୍ତର ଦେଲିନାହିଁ ।

"କବସେ ଘର୍ ଛୋଡ଼ା—କାଲି ଟସ ନା ?"

ମୁଁ ନଈ ସହିତ ମାପ୍ପାବନ୍ଧ ହୋଇ ପୂର୍ବପରି ବସି ରହିଥାଏ ।

"ତୋ ଦେଖିୟେ—ଗଙ୍ଗାଜୀ କୋ ଛୋଡ଼କର୍ ଆୟେଥେ ତୋ ଫିର ମିଲ୍ ଗୟେ ଓହିଁ ପର । ଅଚ୍ଛାତ ସେ ଆପ ଆୟେ ଥେ ନା ? ଫିର ପହୁଁଚ ଗୟେ ୟହାଁ—ଯାହାଁସେ ଆପ୍ୟେଥେ··· । ଆପ ଗୋଦାବରୀ ମେ ଗଙ୍ଗାଜୀ କୋ ଦେଖ୍ତେ ହେଁ ନା ?"

ମୁଁ ବାସ୍ତବିକ ତାହାହିଁ କରୁଥିଲି । କିନ୍ତୁ ସେ ଯେତେବେଳେ ତାର ଅଦ୍ୱୈତରେ ଆହୁରି ପାଦେ ଆଗକୁ ଗ୍ଲଲିଯାଇ କହିଲା—

"ଆପ୍ ଗୃହେଙ୍ଗେ ତୋ ମୈ ଆପକେ ଲିୟେ ଫିର ଏକ ସମିଲ୍ଲିନ୍‌କା କୋଶିସ୍ କରୁଙ୍ଗା—ଆପ ପିତୃପୁରୁଷ କୋ ତୋ ଶ୍ରାଦ୍ଧ ଦେତେ ହେଁ—ନା ? ଏକ ତମ୍ବିକା ପୈସା ହୋଗା ।

ତାର ସେଇ ଶେଷ ବାକ୍ୟଟି ମୋର ନଦୀ ପ୍ରତି ଲାଗିଥିବା ଆକର୍ଷଣକୁ ଝିଙ୍କି ଓଟାରି ଦେଲା । ତାରଠୁଁ ଉଧାର କରି ଛନ୍ଦଟିକୁ ନିଜ ହାତରେ ନିଜେ କାଟି ସାରିବା ପରେ ମୁଁ ଏଥର ପୂର୍ଣ୍ଣ ମାତ୍ରାରେ ତା ଆଡ଼କୁ ମୁହଁ ବୁଲାଇ ଦେଖିଲି । ତା ପ୍ରତି ମୋର ମତାମତ ନିର୍ଦ୍ଦିଷ୍ଟ ହୋଇ ଉଠିଲା । ମୁଁ ତାକୁ ଶୁଣାଇବା ପାଇଁ ପ୍ରସ୍ତୁତ ହୋଇଯାଇ ମନେ ମନେ କହିଲି—ଓ ! ସେଇ ପଇସା ମାଗିବା କଥାଟା ଏତେବେଳଯାଏ ଲୁଚିଥିଲା କାହିଁକି ?···ପଇସା ମଗା ଭିକାରି ! ମୋର ତ ବିଶ୍ୱାସ ଆସି ଯାଇଥିଲା ସତେ ଆସିଗଲେ କି ଆଉ ଶଙ୍କର ! ତା ପରେ ପ୍ରକାଶ୍ୟରେ ମୁଁ କହିଲି "ମୋର ବିଶ୍ୱାସ ନାହିଁ—ନା···ବିଶ୍ୱାସ ନାହିଁ—ଏ ଦେଶର ମାଟି, ପାଣି, ପବନ, ମଣିଷ—ନା କାହାରିକୁ ନୁହେଁ—" ।

ତାର ବୃତ୍ତି ଅନୁଯାୟୀ ସେ ହସିଦେଲା । ମୋର ଏ ଅପ୍ରତ୍ୟାଶିତ କ୍ରୋଧକୁ ପୂର୍ବରୁ ସେ ଯେ ଦେଖି ନ ଥିଲା ତା ନୁହେଁ; କିନ୍ତୁ ମତେ

ଏକୁଟିଆ ହୋଇ ଛାଡ଼ିବାକୁ ଗୁଡ଼ିଦେବାକୁ ସେ ବୋଧହୁଏ ତା ବୃତ୍ତିର ଆଜ ଗୋଟିଏ ଦାୟିତ୍ୱ ଜାଣିଥିଲା ।

"ତୋ, ଠିକ୍ ହାୟ ? ମୈ ଫିର୍ ମିଲୁଁଗା—ଯବ୍ ବିଶ୍ୱାସ ଓ୍ୱାପସ୍ ଆୟେଗା—ଆପକା ହୃଦ ସଂସାରମେ ।" ସେ ମୌନ ହୋଇଗଲା ।

ଏତିକବେଳେ କୌଣସି କାରଣରୁ ଆମର ଦାକ୍ଷିଣାତ୍ୟଗାମୀ ମେଲ୍ ଗାଡ଼ିର ବେଗ ହଠାତ କମି ଆସିବା ଭଳି ଅନୁଭବ କରି ମୁଁ ପୁଣି ନଇଆଡ଼େ ଚାହିଁଲି । ଗାଡ଼ି ସତକୁ ସତ ଅଟକିବା ପାଇଁ ବ୍ରେକ୍ ଦେଲା । ନଈପୋଲ ତଥାପି ପାର ହୋଇ ନ ଥାଏ - ଆମ ଡବାର ଚକ ଗୁଡ଼ିକ । ଗାଡ଼ି ଚକର ଧ୍ୱନିଯୁକ୍ତ ଘର୍ଷର ଶବ୍ଦ ହଠାତ୍ ନିର୍ଦ୍ଦିଷ୍ଟ ଛନ୍ଦ ହଜି ବିକଳ ଶବ୍ଦ କଲା ପରି କେଁ କେଁ ହେବାକୁ ଲାଗିଲା । କିଛି ସମୟ ପରେ ଗାଡ଼ି ଅଟକି ଗଲା । ଗାଡ଼ି ଅଟକିବା ମାତ୍ରେ ସେ ଓହ୍ଲାଇଗଲା ଆମ କମ୍ପାର୍ଟମେଣ୍ଟରୁ । ଅଳ୍ପ କବାଟ ଖୋଲି ଆସ୍ତେ ସେ ଝୁଲି ପଡ଼ିଲା ବାହାରକୁ । ତାପରେ ସେ ଚାଲିଗଲା—ବୋଧହୁଏ ଆମ ଡବା ପଛକୁ ଲାଗିଥିବା ଗୋଟିଏ ତୃତୀୟଶ୍ରେଣୀ ଡବା ଆଡ଼କୁ ।

ମୁଁ ତା'ର ଚାପରୁ ରକ୍ଷା ପାଇଗଲି ଭାବି ଗୋଟିଏ ଦୀର୍ଘ ନିଶ୍ୱାସ ନେଲି ଓ ପୁଣି ଥରେ ଫେରି ପଡ଼ିଲି ମୋ ହାତର ଖବରକାଗଜ ଆଡ଼କୁ । କିନ୍ତୁ ହଠାତ୍ ସେଇ ଖବରକାଗଜର ପୃଷ୍ଠାର ଇନ୍ଦିରା-ନିଜଲିଙ୍ଗାପ୍ପାଙ୍କ ସମ୍ପର୍କରେ ଥିବା ହେଡ୍‌ଲାଇନ୍ ଉପରେ ହିଁ ମୋ ହୃଦୟ ଭିତରୁ ଜାତ ସେଇ ଲୋକଟିର ମୁହଁର ବାକ୍ୟଟି ସଚେତନ ଲେଖି ହୋଇଗଲା -- "ମୈ ଫିର୍ ମିଲୁଁଗା, ଯବ ବିଶ୍ୱାସ ଓ୍ୱାପସ ଆୟେଗା···।" ସେଇ ବାକ୍ୟଟିକୁ ମୁଁ ଅନୁବାଦ କରି ଆଉ ଥରେ ଉଚ୍ଚାରଣ କରନ୍ତେ ତାହା ମୋ ମାତୃ-ଭାଷାରେ ଆହୁରି ଅଦ୍ଭୂତ ଶୁଭିଲା—ମୁଁ ଫେରି ମିଳିବି ତୁମମାନଙ୍କ ସହିତ, ଯେତେବେଳେ ବିଶ୍ୱାସ ତୁମମାନଙ୍କ ହୃଦୟକୁ ଫେରି ଆସିବ ।

ମୁଁ ମୋ ନିଜ ବାକ୍ୟରେ ରୋମାଞ୍ଚିତ ହୋଇଗଲି । ଗୋଦାବରୀ ନଦୀ ପୋଲ ଉପରେ ଆମର ଅଟକି ରହିଥିବା ଗାଡ଼ିରୁ ମୁଁ ଝୁଙ୍କିପଡ଼ିଲି । ଏଥର ଗୋଦାବରୀ ନଦୀର ପୃଷ୍ଠଭୂମିରେ ଆମର ସମୁଦାୟ ଗାଡ଼ିର ଦୈର୍ଘ୍ୟ ଉପରେ ମୋର ଆଖି ପଡ଼ିଲା । ତଳେ ନଈ ପାଣିରେ ତଥାପି

ସେଇ ଆକର୍ଷଣୀୟ ଅଦ୍‌ଭୁତ ସବୁଜରଙ୍ଗ ବ୍ୟାପି ରହୁଥାଏ । ମୁଁ ତାଙ୍କୁ ଚାହୁଁଲି ଓ ହଠାତ୍ ମୋର ଭିତରେ ସେଇ ମାରାତ୍ମକ ଚିନ୍ତାଟି ଉଦୟ ହେଲା । ମୁଁ ନିଶ୍ଚୟ ପରୀକ୍ଷା କରିବ ସେଇ ବାକ୍ୟଟିକୁ—ମୋ ଭିତରେ ଗୋଟିଏ ଉଗ୍ର ବାସନା ମୁଣ୍ଡଟେକି ଉଠିଲା । ମୋର ସେ ବାସନାକୁ ସାହାଯ୍ୟ କରିବାକୁ ଘଣ୍ଟେ ସମୟ ଧରି ଗାଡ଼ି ଅଟକି ରହିଲା ସେଇଠି ବୋଧହୁଏ ।

ସେମିତି ବାସନାସକ୍ତ ହୋଇ ମୁଁ ହଠାତ୍ ମୋ ବିଶ୍ୱାସକୁ ପ୍ରଚାର କରିଦେବା ଉଦ୍ଦେଶ୍ୟରେ ସତେକି କମ୍ପାର୍ଟମେଣ୍ଟ ଭିତରକୁ ନିଆ କଲି । ମୋର ଏକମାତ୍ର ସହଯାତ୍ରୀ ସେଇ ନୈଷ୍ଠିକ ଦକ୍ଷିଣୀ ସଦାଶିରଣୀୟ ଅଫିସରଟି ବର୍ତ୍ତମାନ ଯେଉଁଠି ଥାଆନ୍ତୁ ପଛକେ, ଅଣାତର ଆମର ସେଇ ବିସ୍ମୟକର କଥୋପକଥନକୁ ନିଶ୍ଚୟ ମନେ ରଖିଥିବେ । ତାଙ୍କର ନିଶ୍ଚୟ ମନେଥିବ, ଯେଉଁପରି ନାଟକୀୟ ଭାବେ ସେଦିନ ମୁଁ ତାଙ୍କୁ ହଠାତ୍ ଏମିତି ଗୋଟିଏ ପ୍ରଶ୍ନ ପଚାରିଥିଲି ଯେଉଁଥିରେ ସେ ଭୟ ପାଇବା ଭଳି ଚମକି ପଡ଼ିଥିଲେ—

"ଅଚ୍ଛା ! ଅଳ୍ପ ସମୟ ତଳେ ଏଠିକି ଜଣେ କେହି ଆସିଥିବା କଥା ଆପଣଙ୍କର ମନେ ପଡ଼ୁଛି କି ?" ମୁଁ ତାଙ୍କ ହାତକୁ ଅଜାଣତରେ ଛୁଇଁ ଦେଲି ବୋଧହୁଏ ।

"କିଏ ?" ଚମକି ପଡ଼ି ସେ ବଡ଼ ବଡ଼ ଆଖିରେ ମୋତେ ଚାହୁଁଲେ । "ଆସି ନ ଥିଲେ ଜଣେ ଏଠିକି ?" ମୁଁ ନିଜେ ଶୀତେଇ ଗଲି ମୋ ନିଜ ବାକ୍ୟରେ ଥିବା ବିଶ୍ୱାସରେ !

"କାହା କଥା କହୁଛନ୍ତି ଯେ ! ଜ୍ୟୋତିଷ ?" ସେ ଅନୁଭବ କରିପାରିଲେ ମୋ ଶୀତେଇବାକୁ ।

"ନାଃ", ମୁଁ ତାଙ୍କ ଆଖିର ପୁଅକୁ ସିଧାସଳଖ ଚାହୁଁଲି ମୋ ଆଖିର ପୁଅଦ୍ୱାରା ଓ ସେତିକବେଳେ ମୋ ଉପରେ ମୋ ନିଜ ବିଶ୍ୱାସ ଆହୁରି ଦୃଢ଼ ହୋଇଗଲା । ମୁଁ ଖୋଲିଦେଲି ନିଜକୁ ଓ କହିଲି "ସେ ଲୋକଟିର ଦେହର ରଙ୍ଗକୁ ଆପଣ ଲକ୍ଷ୍ୟ କରିଛନ୍ତି ? ବଡ଼ ଅଦ୍‌ଭୁତ ଭାବେ ଶ୍ୟାମଳ—ଏକ ପ୍ରକାର ସବୁଜ, ବରଂ ହଳଦିଆ କୁହନ୍ତୁ ।"

ଅର୍ଦ୍ଧଶାୟିତ ଅବସ୍ଥାରୁ ସେ ଉଠି ବସିଲେ । ବୁଝିବାକୁ ଇଚ୍ଛାକଲେ ଜଣେ ଦକ୍ଷିଣଭାରତୀୟ କାହିଁକି, ଯେ କୌଣସି ଭାରତୀୟର ଶାରୀରିକ ସ୍ଥୂଳତା ଏତେ ଶିଘ୍ର ମିଳେଇଯାଏ ବୋଲି ମୋର ଆଶା ନ ଥିଲା ।

"ଓଃ" ତାଙ୍କର ସେଇ ଦୀର୍ଘନିଃଶ୍ୱାସଟି ମୋର ଏଯାଏଁ ମନେ ଅଛି । ଅତୀତରେ ମୋ ବୋଉ ରାମାୟଣ ପଢ଼ିଲାବେଳେ ସ୍ଥାନେ ସ୍ଥାନେ ଏମିତି ଅନେକ ଲମ୍ବା ଦୀର୍ଘନିଃଶ୍ୱାସ ନେଉଥିଲା, ମୋର ମନେ ପଡ଼ିଲା ।

"ଆପଣ ସେ ସବୁଜ ମଣିଷକୁ ଦେଖି ନାହାନ୍ତି ?" ମୁଁ ପୁଣି ଥରେ ପଚାରିଲି ।

"ବୋଧହୁଏ" ସେ ଧୀରସ୍ୱରରେ କହିବାକୁ ଆରମ୍ଭ କରୁଥିଲେ । କିନ୍ତୁ କ୍ରମଶଃ ଭାବପ୍ରବଣ ହୋଇପଡ଼ି ଉଚ୍ଚସ୍ୱରରେ ଅନୁଯୋଗ କଲେ— "ମୋର ବିଶ୍ୱାସ, ଆପଣ ଠିକ୍ ଦେଖିଛନ୍ତି । ହଁ, ସେ ନିଶ୍ଚୟ ସେଇ ।" ତା'ପରେ ସେ ମୋ ସହିତ ସହଯୋଗ କଲାପରି ଭାବିବାକୁ ଲାଗିଲେ ଓ ପୁଣି କହିଲେ—"ଭାରତର ମଣିଷମାନେ ଭାରତର ନଈ ପରି—ଅଦ୍ଭୁତ । ଆପଣ ନିଶ୍ଚୟ ଠିକ୍ ଦେଖିଛନ୍ତି—ତାଙ୍କର ବର୍ଣ୍ଣ—ଶ୍ୟାମଳ···ମୁଁ ଠିକ୍ ଜାଣେ ସେ ମଣିଷ ନୁହନ୍ତି କି ନଈ ନୁହନ୍ତି—ସେ ସାକ୍ଷାତ···।" କିନ୍ତୁ ମୁଁ ତାଙ୍କ ବାକ୍ୟଟିକୁ ଶେଷ କରିବାକୁ ନ ଦେଇ ପଚାରିଲି, "ମଣିଷ ହେଉ ବା ନଈ ହେଉ—ମୁଁ ଆଶ୍ଚର୍ଯ୍ୟ ହେଉଛି—ସବାଶେଷରେ ସାମାନ୍ୟ ତମ୍ବା ପଇସାଟିଏ କାହିଁକି ସେ ଭିକ୍ଷା କରୁଥିଲେ ।" ଯଥାର୍ଥ ବିସ୍ମୟ ସହି ପଚାରିଥିଲି ମୁଁ ।

"ତମ୍ବାପଇସାଟିଏ ?" ମୋର ସହଯାତ୍ରୀ ପୁଣି ଥରେ ଚମକି ପଡ଼ିଲା ଭଳି ମୋ ଆଡ଼କୁ ଚାହିଁଲେ । ବୋଧହୁଏ ସେଇ ଲୋକଟି ସହିତ ମୋର ପୂର୍ବର କଥାବାର୍ତ୍ତା ସେ ମନ ଦେଇ ଶୁଣି ନ ଥିଲେ ସେତେବେଳେ ।

"ହଁ, ହଁ ।" ମୁଁ ଜୋର ଦେଇ କହିଲି ।

"ଓଃ !" ପୁଣି ଥରେ ସେମିତି ରାମାୟଣ ପଢ଼ିଲା ବେଳର ନିଃଶ୍ୱାସ ସେ ମାରିଲେ ।

"ଏଥିରେ କିଛି ରହସ୍ୟ ଅଛି ନା କଣ ?" ମୁଁ ବସିପଡ଼ିଲି ତାଙ୍କ ବର୍ଥରେ । ମୋ ଦେହକୁ ତାଙ୍କ ଦେହ କେତେକାଂଶରେ ସ୍ପର୍ଶ କରିଥିଲା, ଆମର ସେଇ ସାମୟିକ ଉତ୍ତେଜନା ଭିତରେ ।

ତଥାପି ମୋ ପ୍ରଶ୍ନର ଉତ୍ତର ଦେବା ଛଳରେ ବ୍ୟାଖ୍ୟା କଲପରି କହିଲେ—"ଭାରତର ନଈମାନଙ୍କ ଜଳକୁ ତମ୍ବା ପାଣିରେ ଧରି ପିତୃ-ତର୍ପଣ କରିବା ଏକ ପବିତ୍ର କାର୍ଯ୍ୟ—ବୋଧହୁଏ ଏମିତି କିଛି କାରଣରୁ ଭାରତୀୟ ଯାତ୍ରୀମାନେ ପ୍ରତ୍ୟେକଥର ନଈପାରି ହେଲାବେଳେ ପାଣିକୁ ଯେ କୌଣସି ଜିନିଷରେ ଛୁଇଁ ଦେବାକୁ ପୁଣ୍ୟ ମନେ କରନ୍ତି । ବୋଧହୁଏ ସେଇ ତର୍ପଣ ଉଦ୍ଦେଶ୍ୟରେ—।"

"ଆପଣ ବିଶ୍ୱାସ କରନ୍ତି—ଏଇ ତର୍ପଣ ପ୍ରଭୃତିରେ ?" ମୁଁ ପୁଣି ଥରେ ଅଟକେଇ ଦେଲି ତାଙ୍କୁ କଥା ମଝିରେ । କିନ୍ତୁ ମୋ ଭିତରେ ଟଗ-ବଗ ହେଉଥିବା ବିଶ୍ୱାସଟିକୁ ମୁଁ ସେତେବେଳେ ଆୟତ୍ତ କରି ପାରି ନ ଥିଲି । ତେଣୁ ତାଙ୍କର ଉତ୍ତର ପାଇଁ ଅପେକ୍ଷା ନ ରଖି ମୁଁ ସେତେ-ବେଳେ ମୋ ପକେଟ ଅଣ୍ଡାଳ କେତେକ ତମ୍ବା ପଇସା କାଢ଼ି ସାରିଥିଲି ଓ ସେଗୁଡ଼ିକୁ ଥୋଇ ସାରିଥିଲି—ମୋ ଖାଇବା ହାତ ପାପୁଲି ଉପରେ ।

ମୋର ହାବଭାବରୁ ସେତେବେଳକୁ ତାଙ୍କ ମୁଁହ ଉପରେ ଗୋଟିଏ ସଲ୍ଲଜ ତାମ୍ରବର୍ଣ୍ଣ ବୁଲିଯାଇଥିଲା । ସେଇ ବର୍ଣ୍ଣଟିକୁ ଦେଖି ମୁଁ ଆହୁରି ପ୍ରେମରେ ପଡ଼ିଗଲାପରି ଲାଗିଗଲି ତାଙ୍କ ଠେଇଁ—"ତାହେଲେ ଆସନ୍ତୁ—ସେଇ ପବିତ୍ର କାର୍ଯ୍ୟଟି କରିବା—" ମୁଁ ହାତ ବଢ଼େଇଦେଲି ତାଙ୍କ ଆଡ଼କୁ ।

କିନ୍ତୁ ସେ ତାଙ୍କ ହାତ ହଠାତ୍ ବଢ଼େଇଦେଲେ ନାହିଁ, ଟିକିଏ ସ୍ଥିର ହୋଇଗଲେ । ମାତ୍ର ମୁହୂର୍ତ୍ତକ ଭିତରେ ପୁଣି ଅସ୍ଥିର ହୋଇ ପଡ଼ିଲେ ଓ ଟିକିଏ ଲାଜୁରୀ ହୋଇଗଲେ କି କଣ ! ତାପରେ, ଅନୁତାପ କଲାପରି ମୁଁହଟି ଶୁଖିଗଲା ତାଙ୍କର । କହିଲେ—

"ଦେଖନ୍ତୁ ! ବଡ଼ ଗୋଟିଏ ସ୍ୱାର୍ଥପରତା ହୋଇଗଲା···ଟିକିଏ ପୂର୍ବରୁ—ମୁଁ ସେ କାମ ସାରି ଦେଇଛି ଆଜ୍ଞା ! ଆପଣ ଅନ୍ୟମନସ୍କ ଥିଲେ —କ୍ଷମା କରିବେ ।"

ମୁଁ ମୋ ହାତକୁ ଫେରେଇ ଆଣିଲି ନାହିଁ । ସେମିତି ଖୋଲା ପାପୁଲିଟି ତାଙ୍କ ଆଗରେ ଦେଖେଇ କହିଲି—

"ଆସନ୍ତୁ ନା ! ପ୍ରକାଶ୍ୟରେ ଆଉ ଥରେ ଏକାଠି ସେଇ କାର୍ଯ୍ୟଟି କରିବା । ମୋର ମନେ ହେଉଛି, ଆମର ପିତୃପୁରୁଷ ଏହ୍ୱ ସାମୂହିକ ତର୍ପଣକୁ ଆହୁରି ତୃପ୍ତିରେ ଗ୍ରହଣ କରିବେ ।"

ମୋର ଆମିଷାହାରରେ ମୋତେ ନିତ୍ତ ସାହାଯ୍ୟ କରୁଥିବା ମୋ ଖାଇବା ହାତ ପାପୁଲିରୁ ତମ୍ବା ପଇସାଟିଏ ଗ୍ରହଣ କଲାବେଳେ ତାଙ୍କର ମୁହଁ ଉପରେ ସେଇ ତୃପ୍ତିଟିକୁ ମୁଁ ଦେଖି ପାରିଲି, ଯାହା ବିଷୟରେ ମୁଁ କହୁଥିଲି ।

ସାଙ୍ଗହେଇ ଗୋଦାବରୀ ନଦୀ ଭିତରକୁ ଆମେ ତମ୍ବା ପଇସା ନିକ୍ଷେପ କରିଥିଲୁ ସେଦିନ ।

ତମ୍ବା ସହିତ ନଦୀ ଜଳର ସ୍ପର୍ଶ ମୁହୂର୍ତ୍ତରେ ଆମର କଥୋପକଥନ ମୋର ସ୍ପଷ୍ଟ ମନେ ଅଛି— । ସେ ମୋ ହାତକୁ ଚପି ଧରିଲେ, ଆଉ ଜଣେ ଭକ୍ତ ଅନ୍ୟ ଜଣେ ଭକ୍ତକୁ କହିଲା ପରି କହିଲେ—

"ଆପଣ ଭଗବାନଙ୍କ ଦର୍ଶନ ପାଇଛନ୍ତି—ଆଉ ଜୀବନରେ ଚିନ୍ତା କଅଣ ?" ସେମିତି ଚପି ଧରିଥାନ୍ତି ମୋ ହାତକୁ ସେ ।

ମୁଁ ତାଙ୍କର ହାତର ଉଷୁମକୁ ଅନୁଭବ କରୁଥିଲି, କିନ୍ତୁ ପ୍ରକୃତରେ ମୁଁ ଚିନ୍ତାଶୂନ୍ୟ ହୋଇ ପାରି ନ ଥିଲି । ମୋର ସବୁଠୁଁ ବଡ଼ ଚିନ୍ତାଟି ଥିଲା ସେତେବେଳେ ଆଉ ଟିକକେ ଆମ ହାତର ଉଷୁମ, ଆମ ଗ୍ରନ୍ଥିର ଏ ବିଶ୍ୱାସ ସବୁ ପୁଣି ପାଣି ଫାଟି ଯିବ—ସବୁ କୋହଳ ହୋଇଯିବ । ଟିକଏ ପରେ ତାଙ୍କ ନିକଟରୁ ମତେ ପୁଣି ଫେରିଯିବାକୁ ପଡ଼ିବ— ମୋର ସେଇ ଇନ୍ଧନ-ନିଜଳକାପ୍ରୀ ସମ୍ବାଦପତ୍ରର ଖୋଳପା ଭିତରକୁ— ସେତେବେଳେ ସେଇ ଶୂନ୍ୟ ମୁଁ ଭର୍ତ୍ତି କରିବି କେମିତି ? ମୁଁ ଅବଶ ହୋଇ ପଡ଼ୁଥିଲି······ ।

ଏତିକବେଳେ ନଦୀରୁ ଉଠୁଥିବା ଗୋଟିଏ ଦୀର୍ଘ ସୁଷୁପ୍ତ ଆତ୍ମାର ନିଶ୍ୱାସ ପରି ଆମ ଗାଡ଼ିର ନିଶ୍ୱାସଟି ଶୁଣାଗଲା ଓ ସାଙ୍ଗେ ସାଙ୍ଗେ ଆମର ଅଟକିଥିବା ଗାଡ଼ି ପୁଣି ଗତିଶୀଳ ହୋଇଉଠିଲା ।

———

# ଜର ଆସିଥିଲା·····



ଶ୍ରୀନିବାସ ଉଦ୍‌ଗାତା

ଜର ଯିବ ବୋଲି ବାହାରିଲାଣି । ତାକୁ କି ଆଉ ରୋକି ହେବ ? ସାନ ନାତୁଣୀର ବାହାଘର ପାଖେଇ ଆସିଲାଣି । ସେ ନଗଲେ ଚଳିବ କେମିତି ? ସବୁ କଥାର ଯୋଗାଡ଼ଯନ୍ତ୍ର, ଦେଖରେଖ କରିବାକୁ ଆଉ କିଏ ଅଛି ? ବଡ଼ପୁଅ ଇଞ୍ଜିନିୟର, ସାନପୁଅ ଓକିଲ, ତା' ତଳ ପୁଅ ବାଲୁଙ୍ଗା, ପ୍ରଫେସର ହୋଇଛି । ଯେତେବେଳେ ଦେଖ ଫୁରୁସତ ନାହିଁ ତା'ର—ଖାଲି ପଢ଼ା, କିଣ ମିଳିବ ସେ ନିଆଁ ଚୂଲି ପାଠପଢ଼ାରୁ ! ମାସ ଶେଷକୁ ଦରମା ଗଣ୍ଡାକ, ସେଇ ଗୋଟାକ ବାଲୁଙ୍ଗା । ବଡ଼ ପୁଅର ବଡ଼ ଝିଅର ବାହାଘର । ସେଇ ସବା ସାନ ।

ଜର ଯିବ ନିଶ୍ଚୟ, ନ ଗଲେ ଆଉ ଚଳିବ କେମିତି ? ତା'ର ବଡ଼ ନାତି ଆସିଛି ।

ବାଳତକ ପୂରାପୂରି ପାଚିଗଲାଣି ଜରର । କେଉଁଠି କେମିତି ଗୋଟାଏ ଅଧେ କଳାବାଳ·· ଭଲ ମାନୁଛି···ବାରି ହେଉଛି । ବୋଧହୁଏ ଏଇଆ କହିବାକୁ ଯେ ଦିନେ ସେ ମୁଣ୍ଡର ସବୁ ବାଳ କଳା ଥିଲା । କପାଳ ଓ ଗାଲ ଉପରେ ଏଣୁତେଣୁ ଗାର ପଡ଼ିଗଲାଣି···ଅସମ୍ଭବ ଭାବରେ ଗ୍ରୁଠ ଦେଖାଯାଉଛି ତା'ର ଢଳଢ଼ଳ ଆଖି ଯୋଡ଼ିକ । ଏଇନେ ନିଷ୍ପ୍ରଭ, ଦିନେ ଉଜ୍ଜ୍ୱଳ ଥିଲା, ଚଞ୍ଚଳ ଥିଲା···ଗମ୍ଭୀର ଥିଲା । ଏଇନେ ବି ଭଲ ଦେଖାଯାଉଛି···ଆକର୍ଷଣ ଅଛି—ଜ୍ୟୋତି ନାହିଁ ଯଦିଓ ।

"ଜର, ଆଉ ଦିନୁଟିଏ ରହିଗଲେ କିଣ ଅସୁବିଧା ହୋଇ ଯାଉଛି ଲେ ।"

"କେମିତି ଅବୁଝାଟା ହେଉଛ ମ ଭାଇନା ତମେ ? ସେ ଘରେ ଆଉ କିଏ ଅଛୁ କହବଟି ଶୁଣେ, ଯିଏ ସବୁକଥାର ଦେଖରେଖ କରିବ ! ଘରପାକ ସବୁ ତ ପିଲ, ସେମାନେ କରବେ କଣ ? ବାକ ଯେଉଁ ବଡ଼ ମଣିଷ ଜଣକ ( ତା'ର ସ୍ୱାମୀ ଉଦ୍ଦେଶ୍ୟରେ କହିଲ ) ସିଏ ସବୁବେଳେ ଭୋଳା । ବାହାର ବାରଣ୍ଡା, ପଛିକା, ଆରାମ ଚଉକୀ, କେତେବେଳେ କେମିତି ବଗିଚ୍ଚ—ବାକ ନାତି ନାତୁଣୀ—ତା' ଛଡ଼ା ଆଉ କିଛୁ ହେବନ !"

"ଆଉ କଣ ବା' କରନ୍ତେ ଯେ !"

"କାହିଁକ କହବ ନାଇଁ ?"

ଆଶ୍ଚର୍ଯ୍ୟ ଲଗୁଛି, ଉରର କଥା ଶୁଣି । ଅଯୌକ୍ତିକ ବୋଲି ନୁହଁ, ଯୁକ୍ତ ଅଯୁକ୍ତର ପ୍ରଶ୍ନ ତ ନାହିଁ···ଉଠୁନ ବ । ସ୍ୱାଭାବିକ କଥାରେ ଆଉ ସେ ସବୁ ଦ୍ୱନ୍ଦ୍ୱର ସ୍ଥାନ ବା କାହିଁ । ଆଶ୍ଚର୍ଯ୍ୟ ଲଗିଲ ଉରର କଥା ···ଯୁକ୍ତ କରିବାର ଢଙ୍ଗ ତ ନୁହେଁ, ସାହସ । ଉରର ପାଟିରୁ କଥା ବାହାରେ ନାହିଁ—ଭାଇ ଆଗରେ କଥା କହିବା ତ ଦୂରର କଥା, ମୁଣ୍ଡ ଟେକ ଠିଆ ବ ହୁଏ ନାହିଁ । ଠିଆ ହେବାକୁ ସାହସ କରେ ନାହିଁ । ଦାବୀ ନାହିଁ, ଅଭିଯୋଗ ନାହିଁ—କିଛୁ ନାହିଁ । ତା' ମନ ବୁଝି କିଛୁ ହେଲ ତ ହେଲ, ନ ହେଲେ ନାଇଁ । ମୋର କୋଳରେ କାଖରେ ବଢ଼ିଛୁ—ପିଲରୁ ବଡ଼ ହୋଇଛୁ ।

ଯିବ ଆଜ ଉର, ତାକୁ ଆଉ ରଖି ହେବ ନ ! ତା'ର ଘର, ତା'ର କାମ, ତା'ର କର୍ତ୍ତବ୍ୟ ତାକୁ ବାଧ କରୁଛି—ଡାକୁଛି !

ଗୋଟାଏ ମୁହୂର୍ତ୍ତପର ବ ମନେ ହେଲନାହିଁ—ତା'ର ଆସିବା ଓ ଯିବା । ସେ ଆସିଲ ଓ ଚ୍ଚଲଗଲ ଏତିକ କହବାକୁ ହୁଏତ ଯେତିକ ସମୟ ଲଗିଲ ଠିକ୍ ସେତିକ ସମୟପାଇଁ ଯେଉଁପର ସେ ଆସିଥିଲ ସତରେ । ସେପର ମନେହେଲ ।

ବହୁତ ଦିନ ତଳର କଥା । ମଣିଷ ଅନେକ କଥାକୁ ମନେକଲେ ଭାବେ ସତେ ଯେଉଁପର ସେ ଭୁଲିଯାଇଛି—ସବୁ ପାଶୋର ଗଲଣି । ସତ ନୁହଁ, ଅନେକ ସମୟରେ ଭୁଲିଯାଇଥିବା ପର କଥା ମନେପଡ଼େ— ମନର ମୁକୁରରେ ପ୍ରତିବିମ୍ବିତ ହୋଇ ମନଲୋଭା ଦିଶେ ।

ଉତ୍ତର କଥା ମନେପଡ଼ିଲା ମୋର ସେମିତି । ତା'ର କୌଣସି କଥାରେ ବାଧା ନ ଥିଲା, ଅଭିଯୋଗ ନ ଥିଲା । ଅତି ନିଷ୍ପାପ ଭାବ । ମୁହଁ ଖୋଲି ପଦୁଟିଏ କହେ—ବୋଉ ଭାଇନାକୁ ଭାରି ଡର । ଜୀବନରେ ଜୋର କରି ଦାବୀଟିଏ କରିଥିଲା—ତା'ର ଭାଉଜଟିଏ ଲୋଡ଼ା···ବିନା ଭାଉଜରେ ଘରୁ ଯାଇଛୁ···ଘରକୁ ଆସିଲେ ସନମାନ ମିଳେନି ତାକୁ । ଭାରି କଠିଣ ହୋଇଥିଲା ସେଦିନ, ତାକୁ ଏଇତକ କହିବାକୁ ।

ଲୁହରେ ଉଚ୍ଛଳ, କୋହର କୋଳାହଳକ୍ଷୁବ୍ଧ ତା'ର ହୃଦୟ ମୁଁ ଦେଖିଛି । ସେ ବାହାହେଲା—ରାତି ପାହି ପାହି ଆସୁଛି । ସେମାନେ ଯିବେ । ସୂର୍ଯ୍ୟ ଉଇଁଗଲେ ଗୁରୁବାର, ଲକ୍ଷ୍ମୀବାର । ଝିଅ ଛଡ଼ା ଯାଇ ପାରିବ ନାହିଁ । ସେମିତି ହେଉ ଯିବ । ତା'ର ସେଇ ଯିବାବେଳ ଏଇନେ ପରି ଲାଗୁଛି । ଘର ଛାଡ଼ି, ପ୍ରିୟପରିଜନ ଛାଡ଼ି ସେ ଯିବ । ତା'ର ନୂଆ ସଂସାର, ନୂଆ ମାଡ଼ି ସିଏଇ ଗଢ଼ିବ । କେତେ ବେଦନାର୍ଦ୍ର କରୁ ସତରେ ନ ଥିଲା ସେଇ ବେଳା । ଲୁହର ବନ୍ୟାରେ ସତରେ ଯେପରି ଭାସି ଯାଉଥିଲା ହୃଦୟ ।

ପୀତାଭ ଦୁକୂଳ ତଳେ ଚନ୍ଦନାର୍ଚ୍ଚିତ ସୁନ୍ଦର ତା'ର ମୁହଁଟି—ଲଜ୍ଜାଭରା ଆଖିତଳେ କଜ୍ଜଳର କାନ୍ତ କୋମଳ ରେଖା—ରକ୍ତାଭ ସିନ୍ଦୂର·· କୋହ ଓ ଲୁହର ମଧୁର ସମାବେଶରେ ମଧୁର ଦେଖାଯାଉଥିଲା ଅଥଚ ।

ଆସିଥିଲା ସେ ଅନେକ ଦିନ ପରେ···

ଆଜି ଯାଉଛି । ଯିବ ବୋଲି ବାହାରିଲାଣି । ତାକୁ ଆଉ କଣ ରୋକି ହେବ ! ସାନ ନାତୁଣୀର ବାହାଘର ପାଖେଇ ଆସିଲାଣି !

“ଶୁଣିଲ ? ଶୁଣୁଛ କି ?”

ମୁଁ ଶୁଣିପାରିଲି ନାହିଁ । ଉତ୍ତର କହିଲି—

“ଭାଉଜ ଡାକୁଛନ୍ତି ବୋଧହୁଏ— ।”

ସିଏ କହିଲେ—

“ସିନ୍ଦୂର ପୁଡ଼ାଟା କେଉଁଠି ରଖିଲ ମ, ପାଉନି । ଫରୁଆରେ ରଖିଦେଲେ କିନା !”

ମୁଁ ନବାକ ହେଲ—ଦେଖିଲ—ସବୁ ସେ ସଜାଡ଼ୁଛନ୍ତି । ଉର ଆସିଲା, କହିଲା—"କଣ ଏସବୁ କରୁଛମ ଭାଉଜ !"

ସେ ଆଉ ରହିବ ନାହିଁ । ଶୋକ ହେବ ନାହିଁ ତାକୁ । ତା'ର ମନ ନାହିଁ ରହିବାକୁ, ନା ଦୁଃଖ ଅଛି ଯିବାରେ ।

ଆଖିରେ ତା'ର ଅଶ୍ରୁର ପ୍ଳାବନ ଥିଲା । ସେ ମୁଣ୍ଡିଆ ମାରି ଉଠିଲା ବେଳକୁ ଭାଉଜ ତାକୁ କୁଣ୍ଢେଇ ଧରିଲେ···ନଣନ୍ଦ ଶାଶୁଘର ଯାଉଛି ।



# ତଟିନୀର ତୃଷ୍ଣା



**ବୀଣାପାଣି ମହାନ୍ତି**

ମନେ ହେଉଛି ଯେପରି ସେ ଅସାମାନ୍ୟ ସୁନ୍ଦରୀ ଥିଲେ । ମନେ ହେଉଛି ଯେପରି ତାଙ୍କର ଗଣ୍ଡଦେଶରେ ଗୋଲାପର ଉକି ଥିଲା ଆଉ ଚଞ୍ଚଳ ଆଖିକୋଣରେ କେଉଁ କେଉଁ ଆକାଶର ନୀଳରଙ୍ଗ ଥିଲା । ନାଁ ତାଙ୍କର ରୁଚି । ଅନେକ ଦିନ ତଳର ସେ ଯେପରି ଏକ ସମ୍ମୋହନ ସୁରଭି ! ରୁଚି ! ଯାହାର ବୃହତ୍ତର କିମ୍ବା କ୍ଷୁଦ୍ରତର ନାମ ସହିତ ଚନ୍ଦ୍ରମୂଙ୍କର କୌଣସି ସମ୍ପର୍କ ନାହିଁ ।

ସୂର୍ଯ୍ୟ ପ୍ରାୟ ଅସ୍ତହେବା ଉପରେ । ହୁଏତ ରୁଚି ଛିଡ଼ା ହୋଇଥିବେ ଅଧଘଣ୍ଟାଏ ଧରି ତାଙ୍କ ଅପେକ୍ଷାରେ ··· । ଟ୍ରେନ୍ ଅଧ-ଘଣ୍ଟାରୁ ଉପରେ ବିଳମ୍ବ ହୋଇଗଲାଣି ।

ଷ୍ଟେସନ ଏଇ ଆସିଗଲା । ରୁଚି ଛିଡ଼ା ହୋଇଛନ୍ତି । ପନ୍ଦର ବର୍ଷ ତଳର ସେଇ ଚେହେରାରେ ଅନେକ ପରିବର୍ତ୍ତନ ଆସିଥିଲେହେଁ ସେ ପରିଷ୍କାର ଚିହ୍ନି ହେଉଛନ୍ତି । ଉତ୍କ୍ଷିପ୍ତ ଚୂର୍ଣ୍ଣ କୁନ୍ତଳ ତଳେ ଯେପରି ତାଙ୍କର ଚଞ୍ଚଳ ଆଖି ଚନ୍ଦ୍ରମୂଙ୍କ ସନ୍ଧାନରେ ଆହୁରି ବେଶୀ ଚଞ୍ଚଳ ହୋଇ ଉଠିଛି ! ଆଃ ! ଆଜି ଯଦି ପନ୍ଦର ବର୍ଷ ତଳର ଅତୀତ ହୋଇଥାନ୍ତା··· ! ନାଁ, ନାଁ ସେ ଭାବିବେ ନାହିଁ । ସେ ନିଜକୁ ଦୁର୍ବଳ କରିବେ ନାହିଁ ।

ପାଖକୁ ଆସିଲେ ରୁଚି । ଈଷତ୍ ହସି କହିଲେ—"ଅନେକ କଷ୍ଟ ସହି ଅନେକ ଦିନ ପରେ ଆସିଲ ଚନ୍ଦ୍ରମୂ । ମାତ୍ର ଟ୍ରେନ୍ ଆଜି ଭୀଷଣ ଡେରି କରିଦେଲା । ଜୀବନ ସାରା କେବେ ତମେ ଠିକ୍ ସମୟରେ ଆସି ପାରିଲନି··· ।"

ଚନ୍ଦ୍ରପ୍ରୂ ଉତ୍ତର ଦେଲେନ । ରୁଚିଙ୍କ କଥାର ଇଂଗିତ ସେ ବୁଝି ପାରିଥିଲେ । ପନ୍ଦର ବର୍ଷ ତଳର ସ୍ମୃତି ତାଙ୍କ ମନର ସମସ୍ତ କମଳ-ବନକୁ ଛାରଖାର କରି ଦେଇଗଲା । ସେ କ୍ଷଣିକ ପାଇଁ କଥା କହିବାର ଶକ୍ତି ହରାଇ ବସିଥିଲେ ।

କାର୍ ଭିତରେ ବସି ଷ୍ଟାର୍ଟ ଦେଲେ ରୁଚି । କିଛି ଗୋଟାଏ କହିବାକୁ ହେବ ଭାବି ଚନ୍ଦ୍ରପ୍ରୂ କହିଲେ—"ବରଂ ତୁମେ ବସ ରୁଚି । ମୁଁ ଡ୍ରାଇଭ୍ କରେ ।"

"ତମକୁ କଣ ଲଜ ଲାଗୁଛି ଚନ୍ଦ୍ରପ୍ରୂ ! ଏଠି ସମସ୍ତେ ଜାଣନ୍ତି ମୁଁ ଡ୍ରାଇଭ୍ କରେ, ମଦ ପିଏ, କ୍ଲବ୍ ଯାଏ; ଆଉ ଅନେକ ବନ୍ଧୁଙ୍କୁ ଏପରି ସଙ୍ଗୋଳି ନେବା ଯେପରି ମୋର ଏକ ଚିରାଚରିତ ଧର୍ମ । ତାପରେ ତୁମେ କ୍ଲାନ୍ତ ଏବଂ ମୋର ଅତିଥି । ତମେ ବସ ।"

ଚନ୍ଦ୍ରପ୍ରୂ ଯେପରି ଅନ୍ୟମନସ୍କ ହୋଇପଡ଼ିଲେ । ରୁଚି ଆଉ ତାଙ୍କୁ ପରିହାସ କରୁନାହାନ୍ତି ତ ? ରୁଚି କାର୍ ଛାଡ଼ି ଦେଉ ଦେଉ କହିଲେ— "ତୁମେ ସବୁଦିନେ ବଡ଼ ଦୁର୍ବଳ ଚନ୍ଦ୍ରପ୍ରୂ । ମୋର ଏଇ ଅବାଧ ଭ୍ରମଣ ମାତିଟାକୁ ତୁମେ କେବେ ପସନ୍ଦ କରି ନ ଥିଲ, ଆଜି ବି କରୁ ନାହଁ । ଆଜି ତମେ ମୋର ଅତିଥି । ମୁଁ ତମକୁ କଥା ଦେଉଛି ତୁମେ ଥିଲା ପର୍ଯ୍ୟନ୍ତ ମୁଁ ମଦ ସ୍ପର୍ଶ କରିବି ନାହିଁ !" ଓଠ ଉପରେ ଓଠ ଚାପି ସେ ଯେପରି କଣ୍ଠର ସଜଳତାକୁ ଘୋଡ଼ାଇ ରଖିଲେ ।

"ତୁମର ମୋ ପ୍ରତି ଗୋଟାଏ ଭ୍ରାନ୍ତଧାରଣା ରହିଛି, ରୁଚି ! ତୁମେ ବୋଧହୁଏ ପ୍ରଦୋଷର କଥାଟାକୁ ବିଶ୍ୱାସ କରିଛ !"

ରୁଚି କହିଲେ—"ମୋ ନିଜର ଗଣନା ଉପରେ ମୁଁ ବେଶୀ ନିର୍ଭର କରେ ଚନ୍ଦ୍ରପ୍ରୂ । ମୋର ଏଇ ଅହଂଭାବଟାକୁ ତୁମେ ସହ୍ୟ କରିପାରିଲନି···ତୁମେ କାହିଁକି···ମୁଁ ନିଜେ ବି ସମୟେ ସମୟେ ଦୁର୍ବଳ ମନେକରେ ତାକୁ ନେଇ··· । ଛାଡ଼···ତେବେ ପ୍ରଦୋଷର କଥାକୁ ଦାମ୍ ଦେଇନାହିଁ କେବେ—ଆଉ ଆଜି ?

ରୁଚି ହସୁଥିଲେ । ଖୁବ୍ ସ୍ତିମିତ ଆଲୋକରେ ତାଙ୍କର ପ୍ରଦୋଷ ପାଇଁ ଉଦ୍ଦିଷ୍ଟ ବ୍ୟଙ୍ଗ ହସର କ୍ଷୀଣରେଖା ଯେପରି ଚନ୍ଦ୍ରପ୍ରୂଙ୍କୁ କ୍ଷତବିକ୍ଷତ

କରି ଦେଉଥିଲା । ଏଇ ସେ ରୁଚି । ବହୁ ସୁଖ୍ୟାତିସମ୍ପନ୍ନ ଧନୀ ପିତାର କନ୍ୟା । ବିଳାସବ୍ୟସନ ପ୍ରାଚୁର୍ଯ୍ୟ ଭିତରେ ଜୀବନଟାକୁ ଅହରହ ଫାଙ୍କିଦେବା ଯେପରି ତାଙ୍କର ଗୋଟିଏ ନିଶା ଥିଲା । ଅଥଚ କି ଅମାୟିକ ବ୍ୟବହାର ସେ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ଆଉ ବିରାଟ ନାରୀତ୍ୱ ଭିତରେ ଯେପରି ନିଜର ସତ୍ତା ହରେଇ ବସୁଥିଲେ । ସହରର ରାସ୍ତା ଛାଡ଼ି ଗାଡ଼ି ଯେପରି ଅନ୍ୟ ଏକ ରାସ୍ତାରେ ଚାଲିଛି । ଚିନ୍ମୟ ପାଟିକରି ଉଠିଲେ—"ଆରେ ! ଏ କ'ଣ କରୁଛ ରୁଚି । ଆମେ ଯେ ରାସ୍ତା ଛାଡ଼ି ଅବାଟକୁ ଆସିଗଲେଣି ।"

"ଭୟ କରିବାର କିଛି ନାହିଁ । ସମଗ୍ର ରାତି ଆମକୁ ଏମିତି ଅବାଟରେ ଚାଲିବାକୁ ହେବ । ମୁଁ ଆଉ ଏଠାରେ ରହୁନାହିଁ । କିଛି ଦିନ ଧରି ଯେପରି କିଛି ଭଲ ଲାଗୁନାହିଁ । ତେଣୁ ସହର ଛାଡ଼ି ଦି'ଶହ ମାଇଲ ଦୂରରେ ମୁଁ ଅଛି । ଅବଶ୍ୟ ସେ ସ୍ଥାନକୁ ସହର କୁହାଯାଇ ପାରିବ । ହେଲେ ସେ ମୋର ଅପରିଚିତ ସହର । ସେଠି କିନ୍ତୁ ମୋର ଭୟ ହୁଏ ଚିନ୍ମୟ ! ମୁଁ ବେଶୀ ଦିନ ରହିପାରିବ ନାହିଁ । କେଜାଣି କେଉଁ ମୁହୂର୍ତ୍ତରେ ସେ ଅସ୍ଥାୟୀ ନୀଡ଼ ଛାଡ଼ିଦେଇ ମୁଁ ପୁଣି ଚାଲିଯିବି··· ।"

"ଜୀବନଟାକୁ ଏମିତି ଫାଙ୍କି ଉଡ଼େଇ ଦେଲ, ରୁଚି ?"

"ଫାଙ୍କିଲି ଆଉ କୁଆଡ଼ୁ ? ଜୀବନଟା ଯେ ମୋ ଉପରେ ବୋଝ ହୋଇ ବସିଗଲାଣି । ବରଂ ଜୀବନଟା ମତେ ଫାଙ୍କିବାକୁ ବସିଲାଣି ।"

ଚିନ୍ମୟ ଉତ୍ତର ଦେଲେନି । ପନ୍ଦର ବର୍ଷ ଧରି ରୁଚିଙ୍କ ସହିତ ନବବର୍ଷର ଶୁଭେଚ୍ଛା କାର୍ଡ଼, ଆଉ ଜନ୍ମଦିନର ବଧେଇ ବ୍ୟତୀତ ତାଙ୍କର ଅନ୍ୟ କିଛି ସମ୍ପର୍କ ନାହିଁ । ବହୁ ପରିଚିତ ଏଇ ନାରୀଟି ସହିତ ତାଙ୍କର ଦୀର୍ଘ ଦିନର ବିଚ୍ଛେଦ ଭିତରେ ଅନେକ ଘଟଣା ଯେ ଘଟି ନ ଥିବ ଏକଥା ସେ କାହିଁକି ଭାବୁଛନ୍ତି ?

ଷାଠିଏ ମାଇଲ୍ ବେଗରେ ଗାଡ଼ି ଗଡିକରି ଚାଲିଛି । ଦୁଇ-ତଟରେ ଶ୍ୟାମଳ କ୍ଷେତରାଜି । ଆକାଶରେ ଖଣ୍ଡ ଖଣ୍ଡ ଧଳା ମେଘ, ଆଉ ମଝିରେ ମଝିରେ ହାଲ୍‌କା ଶୀତଳ ପବନର ସ୍ପର୍ଶ । ଚିନ୍ମୟଙ୍କୁ ଲାଗୁଥିଲା ସତେ ଅବା ସ୍ୱର୍ଗର ପରୀ ତାଙ୍କୁ ଉଡ଼େଇ ନେଇଯାଉଛି କୁଆଡ଼େ ।

ହଠାତ୍ ଷ୍ଟାର୍ଟ ବନ୍ଦକରି ରୁଚି କହିଲେ—"ତମକୁ ନିଶ୍ଚୟ ଭୋକଲାଗିବଣି ଚନ୍ଦ୍ରମୟ । ଟିଫିନ୍ କ୍ୟାରିୟର୍ ଖୋଲି ତମେ କିଛି ଖାଇନିଅ ।" ସେ ଦ୍ୱାର ଖୋଲି ପଦାକୁ ଉଠିଗଲେ ।

"ତମେ ନିଜେ କିଛି ଖାଇନିଅ ରୁଚି ?"

"ନାଁ ମତେ ମୋଟେ ଭୋକ ନାହିଁ । ତା'ପର ଆଜକାଲି କେଜାଣି କାହିଁକି ଖାଇବାକୁ ଇଚ୍ଛା ବି ହୁଏ ନାହିଁ । ସମୟେ ସମୟେ ଭୟ ହୁଏ ମୁଁ ଆଉ ଅନାହାରରେ ମରିଯିବି ନାହିଁ ତ ?" ରୁଚି ଯେପରି କହୁ କହୁ ଆବେଗରେ ଚନ୍ଦ୍ରମୟଙ୍କ ହାତ ପାପୁଲିକୁ ମୁଠାଇ ଧରିଲେ ।—ଅଂଧକାର । ଚତୁର୍ଦ୍ଦିଗରେ ଘନ ଅଂଧକାର । ତଥାପି ରୁଚିଙ୍କୁ ସେ ସ୍ପଷ୍ଟ ଦେଖିପାରୁ-ଥିଲେ । କେତେ ନିକଟରେ, କେତେ ଆପଣାର ଲୋକପରି ସେ ତାଙ୍କ ପାଖରେ ଛିଡ଼ା ହୋଇଛନ୍ତି । ଅଥଚ ପନ୍ଦର ବର୍ଷ ତଳେ ଗୋଟାଏ କଥା କହିବାକୁ ଯାଇ ବାରମ୍ବାର ଲେଉଟି ଆସିଥିଲେ; କିନ୍ତୁ ତାଙ୍କ ପ୍ରତି ଯେଉଁ ଭୀଷଣ ଦୁର୍ବଳତା ଥିଲା, ସେ କଥା ସେ ପାଶୋରିବେ କିପରି ? ରୁଚିଙ୍କର ବିବାହ ପରେ ଚନ୍ଦ୍ରମୟ ଚାହିଁଥିଲେ ମୃତ୍ୟୁ । କିନ୍ତୁ ତା ହେଲା ନାହିଁ । ଆଜି ଯେପରି ପୌଷର ପଲିତ ପତ୍ରରେ ବସନ୍ତର ମଳୟ ଅକାଳରେ ଅଗ୍ନି-ସଂଯୋଗ କରୁଛି । ବଂଚିବା ପାଇଁ ଆଉଥରେ ମନରେ ଆସୁଚି ପ୍ରେମାଂଚ ।

"...ଆରେ, ଆରେ ଚନ୍ଦ୍ରମୟ, ଆଇ ଏଡ୍‌ମିଟ୍, ଇଉ ଆର ଏ ବ୍ରେଭ୍ ବୟ । ଓଃ ! ସିଲି... । ଦେଖ ଚନ୍ଦ୍ରମୟ...ଅଂଧକାର ଯାଇ ଆଲୋକ ଆସିଲେ ତୁମେ ପୁନଶ୍ଚ... ।"

ହସି ଉଠିଲେ ରୁଚି । ଆଉ ଚମକି ଉଠିଗଲେ ଚନ୍ଦ୍ରମୟ । ସେ ହସ ଭିତରେ ଯେପରି ଅଜସ୍ର କାରୁଣ୍ୟର ଜଳତରଙ୍ଗ ସୃଷ୍ଟି ହେଲା, ଗାଡ଼ିରେ ବସୁ ବସୁ ରୁଚି କହିଲେ—"ମୋ କଥାରେ ତୁମେ ଆଘାତ ପାଇଲ ଘୃଣି । ଚୁପ୍ ହେଲ ଯେ ।"

ଚନ୍ଦ୍ରମୟ ହସି ସିଗାରେଟ୍ ଧରିଲେ । ଆଉ କଥାର ମୋଡ଼ ଘୁରାଇ ପ୍ରଶ୍ନ କଲେ—"ତୁମେ ପ୍ରଦୋଷକୁ ଏମିତି ଏକା ଛାଡ଼ିଦେବାଟା ମୁଁ ପସନ୍ଦ କରୁନାହିଁ ରୁଚି । ସେ ଦାର୍ଜିଲିଂରେ ଆଉ ତୁମେ ଏକା ନିର୍ଗଣ୍ଠ ମଫସଲରେ...ମୁଁ ଏହାର ମାନେ ବୁଝୁନି ।"

"ତୁମେ ବୁଝି ପାରିବନି ଚିନ୍ମୟ ! ଧନୀ ଲୋକଙ୍କର ଗର୍ବ ଆଉ ଉଦ୍ଧତ ଭଙ୍ଗୀ ଥିବ, ଯେମିତି ଗରିବ ଲୋକଙ୍କର ଏକ ନିଃସହାୟ ଭାବ ଥିବ । ଏ ଦୁଇଟି ଜିନିଷ ମଣିଷକୁ ସହଜ କରେ ନାହିଁ । ଏକାଠି ରହି ବଞ୍ଚିବାକୁ ହେଲେ କିଛିଟା ସ୍ୱାଭାବିକତା ଦରକାର, ସେ ହେଲା ନାହିଁ । ମୋର ଉଦ୍ଧତ ମାତ୍ରା ତାଙ୍କ ଉପରେ ଯେତିକ ମାଡ଼ିମାଡ଼ି ପଡ଼ିଲା— ତାଙ୍କର ନିଃସହାୟ ଭାବ ସେତିକ ଅନୁପାତରେ ମୋତେ ଅଣନିଶ୍ୱାସୀ କରିଦେଲା । ପ୍ରଦୋଷର ଅନେକ ଗୌଣ ମନୋବୃତ୍ତିର ବିକାର ଅଛି । ତୁମେ ଜାଣ ଚିନ୍ମୟ, ମୁଁ କୌଣସି ପୁରୁଷ ଲୋକର ଅସହାୟତାକୁ ସହ୍ୟ କରିପାରେନା । ମୁଁ ବଡ଼ ଅହଂକାରୀ, ଆଉ ମୁଁ ଚାହିଁଥିଲି ପ୍ରଦୋଷ ହେଉ ମୋ ଠାରୁ ବଳି ଅହଂକାରୀ ।

କିନ୍ତୁ ଦିନକୁଦିନ ସେ ବଡ଼ ଭୀରୁ ହୋଇଗଲେ । ସେଥିପାଇଁ ସେ ଦୂରେଇ ଯାଉଛନ୍ତି । ବ୍ୟବସାୟ ଆଳରେ ସେ ମାସ ମାସ ଧରି ଏଣେ ତେଣେ ବୁଲୁଛନ୍ତି । ମୁଁ ସେଥିପାଇଁ ଚିନ୍ତିତ ନୁହେଁ । ମୁଁ ଚିନ୍ତିତ ଜୀବନଟା ମୋ ଉପରେ ଯେପରି ବୋଝ ହୋଇଗଲା··· ।"

"ତମର ଝିଅ କେଉଁଠି ତେବେ ?"

"ସିଏ ଆହୁରି ଆଶ୍ଚର୍ଯ୍ୟ କଥା । ପ୍ରଦୋଷ ତାକୁ ପାଖରୁ ଛାଡ଼ିବେ ନାହିଁ । ଝିଅ କୁଆଡ଼େ ମୋ ପାଖରେ ରହିଲେ ଖରାପ ହୋଇଯିବ । ତାକୁ ଭିନ୍ନ ବାଟରେ ଟ୍ରେନିଂ ଦେଉଛନ୍ତି ପ୍ରଦୋଷ । ହିନ୍ଦୁ ଧର୍ମର ବିଭିନ୍ନ ରୀତି ଶୃଙ୍ଖଳା ଯୋଗ ସେ ଅଭ୍ୟାସ କରୁଛି । ମୁଁ ବି କରିଥିଲି ଚିନ୍ମୟ । ଓଷା ବ୍ରତ କରିବାକୁ ଆଉ ପୁରାଣ ପଢ଼ିବାକୁ ଜେଜେମାଙ୍କ ପାଖରେ ମତେ ଭାରି ଭଲ ଲାଗୁଥିଲା । ଜାଣ ଚିନ୍ମୟ, କେଡ଼େ ସରଳ ମୁଁ ଥିଲି ? ମିଛ କହିଲେ ଯମପୁରରେ ଶିମୁଳି ଗଛରେ କଣ୍ଟା ପିଟା ହୋଇ ମରିବା କଥା ପଢ଼ି ମୁଁ ନିଶ୍ଚିନ୍ତରେ ଶୋଇ ପାରୁ ନ ଥିଲି । ଇସ୍ ! ସକାଳୁ ସଞ୍ଜ ପ୍ରାର୍ଥନା କରି କରି ମୁଁ ଯେପରି କ୍ଳାନ୍ତ ହୋଇ ପଡ଼ୁଥିଲି । ଏସବୁ ମନେ ପଡ଼ିଲେ ସେଇଦିନର ଝିଅ ରୁଚି ପ୍ରତି ମୋର ଦୟା ହୁଏ । ଆଉ ମୋର ଝିଅ ଶୁକ୍ଳା···ବିଂଶ ଶତାବ୍ଦୀର ଅଜସ୍ର ଜୀବାଣୁ ଆଉ ଦ୍ୱନ୍ଦ୍ୱରୁ ଯାହାର ଉତ୍ପତ୍ତି··· ।"

ଚିନ୍ମୟ ଅନ୍ୟମନସ୍କ ହୋଇପଡ଼ିଥିଲେ । କେଉଁ ଦୂର ଅତୀତର ରୁଚିଙ୍କ କଥା ତାଙ୍କର ମନେ ପଡ଼ୁଥିଲା । ବାସ୍ତବିକ୍ ରୁଚି ଥିଲେ ଅଦ୍ଭୁତ ନମ୍ର ଆଉ ଆତ୍ମବିଶ୍ୱାସୀ ତରୁଣୀ । ତାଙ୍କ ଆଖି ଆଉ ମୁହଁରେ କ'ଣ ଥିଲା କେଜାଣି କେତେବାର କିଛି କହିବାକୁ ଯାଇ ଅଟକିଛନ୍ତି ନିଜେ ସେ । ପ୍ରଦୋଷଙ୍କୁ ଯେ ରୁଚି ଏପରି ବିବାହ କରିବାର ସିଦ୍ଧାନ୍ତଟା ହଠାତ୍ ନେବେ—ସେ କଥା କେହି ଜାଣି ନ ଥିଲେ । କିନ୍ତୁ ବିବାହ ପରେ ଅନେକବାର ସେ ପ୍ରଦୋଷ ସହିତ ଦେଖା କରିଛନ୍ତି···ରୁଚି ସହିତ ସାକ୍ଷାତଟାକୁ ସେ ସର୍ବଦା ଏଡ଼େଇ ଆସିଛନ୍ତି । କେତେବାର ପ୍ରଦୋଷ ନିମନ୍ତ୍ରଣ କରିଛି, ଆଉ କେତେବାର ଅଭିମାନ କରି ରୁଚି ପତ୍ର ଲେଖିଛନ୍ତି; କିନ୍ତୁ ଚିନ୍ମୟ ସେସବୁ ଲାବୋରେଟରୀ ଭିତରେ ଫୋପାଡ଼ି ଦେଇଛନ୍ତି । ଦିନ ଦିନ ଧରି ନିଜକୁ ବନ୍ଧ କକ୍ଷ ଭିତରେ ଆବଦ୍ଧ ରଖି ସେ ରୁଚିଙ୍କୁ ସୁଖୀ କରିବାର କାମନା କରିଛନ୍ତି । ମାତ୍ର ତାଙ୍କର ଆତ୍ମ-ତ୍ୟାଗ, ନିଷ୍ଠା—ସବୁ କ'ଣ ବ୍ୟର୍ଥ ହୋଇଗଲା ? ପ୍ରଦୋଷ ସହିତ ଦେଖା ହେଲେ ସେ କହିବେ ଶାନ୍ତି ସୁଖ ଯଦି ସେ ରୁଚିଙ୍କୁ ନ ଦେଇ ପାରୁଛି ନାହିଁ । ସ୍ତ୍ରୀର ସ୍ୱଚ୍ଛନ୍ଦତା ଟିକିଏ ତାର ସ୍ୱାମୀ ହିସାବରେ ଦେଖିବା ତ ଦରକାର ।

କିଛି ସମୟ ଅଖଣ୍ଡ ନୀରବତା, ଆକାଶରେ ଭଙ୍ଗା ଭଙ୍ଗା ବାଦଲ୍ । ମନ ମଧ୍ୟରେ ଅଜସ୍ର ସ୍ମୃତିର କଲ୍ଲୋଳ । ନୀରବତା ଭାଙ୍ଗି ରୁଚି ପ୍ରଶ୍ନ କଲେ—"ତୁମେ ପ୍ରଶାନ୍ତ ଚୌଧୁରୀ କି ଚିହ୍ନିଚ ? ବିଲିୟାର୍ଡ଼ ଖେଳ ଯେ ଗୁଡ଼ାଏ ସୁଖ୍ୟାତି ଅର୍ଜନ କରିଛି ? ଚିହ୍ନ ତାକୁ ?"

ଚିନ୍ମୟ ଚମକି ପଡ଼ିଲେ । ପ୍ରଦୋଷ ଯେପରି ରୁଚି ସହିତ ପ୍ରଶାନ୍ତର ବନ୍ଧୁତ୍ୱଟାକୁ ସହ୍ୟ କରୁ ନ ଥିଲା । ସେଦିନ କଥାବାର୍ତ୍ତାରୁ ଯେପରି ଚିନ୍ମୟ ଏକ ହୀନ ଇଙ୍ଗିତ ପାଇଥିଲେ । ରୁଚି ତାହେଲେ କ'ଣ···?

ରୁଚି ହସୁ ହସୁ କହିଲେ—"ମୋର ଏଇ ଅପବାଦର ନାଗରା ନିଶ୍ଚୟ ତୁମ କାନରେ ବାଜିଥିବ । ତେବେ ଏ ସତକଥା ଯେ ପ୍ରଶାନ୍ତ ଚୌଧୁରୀ ସହିତ ମୋର ବନ୍ଧୁତ୍ୱ ଥିଲା ପ୍ରଚୁର । ଲୋକମୁଖରେ ନାନା କଥା ସୃଷ୍ଟି ହେଲା । ମୁଁ ହେଲି କଳଙ୍କିନୀ, ମୁଁ ହେଲି ଅସତୀ । ମୁଁ କାନ

ଦେଖିନାହିଁ ସେଥିରେ । ଯାହାର ବନ୍ଧୁ ନାହିଁ ପୃଥିବୀରେ ତା'ର ସ୍ଥିତି ନାହିଁ । ବନ୍ଧୁତ୍ୱ କରିବାକୁ ହେଲେ ମୁଁ ଲିଙ୍ଗ ବିଚାର କରେ ନାହିଁ ଚିନ୍ମୟ । ମୁଁ ତାକୁ ସ୍ନେହ କରୁଥିଲି । ଅତଏବ ତାକୁ ମୁଁ ବୁଝାଇ କହିଲି ନ ଆସିବାକୁ, କିନ୍ତୁ ସେ ସ୍କାଉଣ୍ଡ୍ରେଲ କ'ଣ କଲା ଜାଣ ? ମୋ ବେକ ଚାରିପଟେ ହାତ ଗୁଡ଼ାଇ ସେ କହିଲା—"ପ୍ରଶାନ୍ତ ଖେଲଓ୍ୱାଡ଼ ହେଲେ ବି ଏଡ଼େ ମାତ ନୁହେଁ, ରୁଚି ଦେଖିବ । ମୁଁ ତମକୁ ବିବାହ କରିବାକୁ ରାଜି ଅଛି···ଚାଲ ପଳାଇବା···।"

ମୁଁ ତାକୁ ଅନାଇ ଚମକି ପଡ଼ିଲି । ମୋଠାରୁ ସେ ଛ'ବର୍ଷ ଜ୍ୟେଷ୍ଠ । ମୋ ବାଳଗୁଡ଼ାକ କାନପାଖରୁ ପ୍ରାୟ ପାଚିଗଲାଣି । ମୋ ମୁଣ୍ଡରେ ଏମିତି ପିତ୍ତ ଉଠି ଯାଇଥିଲା ଯେ ମୁଁ ତାକୁ ପାଦରୁ ଚପଲ କାଢ଼ି ସେକ ଦେଇଗଲି, ଚିନ୍ମୟ । ଭବିଷ୍ୟତରେ ଯେପରି ସେ କେଉଁଠି ଏହାର ପୁନରାବୃତ୍ତି ନ କରେ । ସେଦିନୁ ମୁଁ ତାକୁ ଆଉ ଦେଖିନାହିଁ । କୌଣସି ପୁରୁଷର ଅଯଥା ଅତ୍ୟାଚାର ମତେ ସୁଖ ଲାଗେ ନାହିଁ । ନିହାତି ସ୍କାଉଣ୍ଡ୍ରେଲଟାଏ ।"

ଚିନ୍ମୟ ଏକନିଷ୍ଠ ହୋଇ ଶୁଣୁଥିଲେ ରୁଚିଙ୍କ ଜୀବନରେ ପ୍ରଶାନ୍ତ ଚୌଧୁରୀର ସଂକ୍ଷିପ୍ତ ଇତିହାସ ! କ'ଣ କହିବେ ହୋଇ ସେ ଅଟକି ଗଲେ···କାରଣ ରୁଚି କାର୍ ଅଟକାଇ କହିଲେ—"ପଦାକୁ ଆସ, ଟିକିଏ ଖୋଲା ପବନ ଦେହରେ ବାଜୁ···" ।

ଚିନ୍ମୟ ଉଠି ଆସିଲେ । ଚତୁର୍ଦ୍ଦିଗରେ ତମସାର ଘନ କାଳିମା । ସାମ୍ନାରେ କ୍ଷୀଣ ରେଖାର ନଈଟିଏ ବହି ଯାଉଛି କେବଳ । ବଡ଼ ନିସ୍ତବ୍ଧ, ବଡ଼ ନିସଙ୍ଗ ଲାଗୁଛି ମନଟା ।

"ଜାଣ ଚିନ୍ମୟ, ବେଳେ ବେଳେ ଏମିତି ମଝି ରାତିରେ ଖୋଲା ପଡ଼ିଆରେ ଛିଡ଼ା ହୋଇ ଆକାଶର ତାରାକୁ ଚାହିଁବାକୁ ଭାରି ଇଚ୍ଛା ହୁଏ । ଜନ୍ମକାଳରୁ ଯେପରି ବଞ୍ଚିବାର ନମ୍ରତମ ଚାହିଦା ଖୋଜି ଖୋଜି ମୁଁ କ୍ଳାନ୍ତ ହୋଇ ପଡ଼ିଲିଣି । ଅଥଚ ପୃଥିବୀର ସମସ୍ତ ପ୍ରାଚୁର୍ଯ୍ୟ ଯେପରି ମୋ ପାଦତଳେ ଲୋଟୁଛି । ଆଉ ଯେପରି ଭଲ ଲାଗୁନି ଚିନ୍ମୟ···।

"ପନ୍ଦର ବର୍ଷ ତଳର ରୁଚି ଆଉ ଆଜର ରୁଚି ଭିତରେ ଏତେ ବେଶୀ ପ୍ରଭେଦ ଆସିଛି—ଯାହାକି ମୋ କଳ୍ପନାର ବହିର୍ଭୂତ । ମୁଁ ତମକୁ କ'ଣ କହି ବୁଝାଇବି—ମୁଁ ନିଜେ ଜାଣେ ନାହିଁ ।"

"ମୋତେ ବୁଝାଇବାର ପ୍ରଚେଷ୍ଟା କରିବ ନାହିଁ । ତମର ମନେଥିବ ଚିନ୍ମୟ, ମୋର ଲାଇବ୍ରେରୀରେ ପୃଥିବୀର ସବୁ ବିଶିଷ୍ଟ ସାହିତ୍ୟିକଙ୍କର ବହି ଥିଲା । ଗଣି ଗଣି ବହି । ଗଣି ଗଣି ଉପଦେଶ, ଅଭିଜ୍ଞତାର କାହାଣୀ । ସେ ବହିସବୁ ମୋର ଅତି ଆପଣାର ପ୍ରିୟଜନ ଥିଲେ । ଗ୍ରନ୍ଥକୀଟ ପରି ମୁଁ ସେମାନଙ୍କ ଭିତରେ ବସି ରହୁଥିଲି ବର୍ଷ ବର୍ଷ; କିନ୍ତୁ ସେଥିରେ ଦିନେ ହଠାତ୍ ନିଆଁ ଲାଗିଗଲା । ଅତି ବିକଳରେ ମୁଁ ଯେତେବେଳେ ପ୍ରଦୋଷକୁ ପ୍ରତିକାର ବ୍ୟବସ୍ଥା କହିଲି, ସେ କ'ଣ କହିଲେ ଜାଣ—"ଯାହାର ଧ୍ୱଂସ ଅନିବାର୍ଯ୍ୟ, ତୁମେ ତାକୁ ପ୍ରତିରୋଧ କରିପାରିବ ନାହିଁ ।" ସେଇଦିନୁ ଲାଇବ୍ରେରୀର ସଉକ୍ ମୋର ଭାଙ୍ଗିଗଲା । ଆଉ ଥରେ ନୂଆ କରି ଗଢ଼ିବାର ସ୍ପୃହା ମୋର ରହିଲାନି । ହାଜିଯାଇ-ଥିବା ସେଇ ପୁସ୍ତକର ବଂଧୁଙ୍କୁ ସାଉଁଟି ଆଣିବାକୁ ମୋର ଇଚ୍ଛା ହେଲା ନାହିଁ ।

ହଠାତ୍ ଥରେ ଆର୍ଟିଷ୍ଟ ସୁମିଲ ସହିତ ଦେଖା ହେଲା । ଆର୍ଟ ଛାଡ଼ି ଏବେ ସେ ଦାର୍ଶନିକ ହୋଇଯାଇଛି । କିନ୍ତୁ ମତେ ଦେଖି ତାର ଛବି ଆଙ୍କିବାର ସଉକ୍ ହେଲା, ଚିନ୍ମୟ ! କିନ୍ତୁ କ'ଣ ହେଲା ଜାଣ ? ସେ ଯେଉଁ ଛବି ଆଙ୍କିଲା ସେଥିରେ ମୁଁ ଏକ ଭରା ପୁଷ୍କରଣୀର ମଧ୍ୟସ୍ଥଳରେ ଛିଡ଼ା ହୋଇ ଏକ ପଦ୍ମପତ୍ରକୁ ଚୁମ୍ବିଁ ହସୁଛି ! ମୋ ଓଠର ହସଗୁଡ଼ାକ ଖଣ୍ଡ ଖଣ୍ଡ ହୀରା ପରି ପଦ୍ମପତ୍ର ଉପରେ ପଡ଼ି ତଳକୁ ଖସି ପଡ଼ୁଛି, ଆଉ ତା'ତଳେ ସୁମିଲ ଲେଖିଛି—"**Life you may evade, but Death you shall not. You shall not deny the stranger.**"

ସେ ଛବି ମୋ ପାଖରେ ନବବର୍ଷର ଶୁଭେଚ୍ଛା ନେଇ ଆସି ଯେଉଁଦିନ ପହଞ୍ଚିଲା, ସେଦିନ ମୋର ମନେହେଲା ମୋର ରକ୍ତ ଆଉ ଜୀବନୀକା ଯେପରି କିଏ ଶୋଷି ନେଇଯାଇଛି ! ମୁଁ ହଠାତ୍ କ୍ଳାନ୍ତ ହୋଇ ପଡ଼ିଲି । ମୋର ମନେହେଲା ପୃଥିବୀର କୌଣସି ବିଜ୍ଞ ଲୋକ ପାଖରେ ମୁଁ

ଯେପରି ଗ୍ରାହ୍ୟ ନୁହେଁ । ଚନ୍ଦ୍ରପୁ ! ମୁଁ ବଡ଼ ଅବଶ ମନେ କରୁଛି । ପ୍ରତି ମୁହୂର୍ତ୍ତରେ ମୁଁ ଯେପରି ଇଞ୍ଚ ଇଞ୍ଚ କରି ମରିଯାଉଛି··· । ମୋର ମନେ ହେଉଛି ପୃଥିବୀର ଅଜସ୍ର ପ୍ରାଚୁର୍ଯ୍ୟ ଭିତରେ ମୋର ଯେପରି ବଞ୍ଚିବା ପାଇଁ ସାମାନ୍ୟତମ ଆବଶ୍ୟକତାର ଅଭାବ ରହିଛି । ତମେ କୁହ ଚନ୍ଦ୍ରପୁ । ମୁଁ କ'ଣ ଆକାଶକୁସୁମ ପଛରେ ଧାଇଁଛି ? ମୁଁ କ'ଣ ଅରଣ୍ୟରୋଦନ କରୁଛି ?''

ଚନ୍ଦ୍ରପୁ ଉତ୍ତର ଦେଲେନି । ସେ ବୈଜ୍ଞାନିକ । ଖାଦ୍ୟଶସ୍ୟ ଉପରେ ପ୍ରତ୍ୟକ୍ଷ ନିର୍ଭର ନ କରି ମଣିଷ କିପରି ସାମାନ୍ୟ ଟାବ୍‌ଲେଟ୍ ଗୋଟିଏ ଖାଇ ଜୀବନଯାପନ କରିପାରିବ, ସେଇ ଗବେଷଣାରେ ସେ ଦିନରାତି ଲାଗିଛନ୍ତି । ସେଇ ଟାବ୍‌ଲେଟ୍ ବ୍ୟତୀତ ମଣିଷ ଜୀବନର ଅନ୍ୟ କିଛି ଚାହିଦା ସେ ଜାଣନ୍ତି ନାହିଁ । ରୁଚିଙ୍କ ପ୍ରଶ୍ନବାଣରେ ସେ ଯେପରି ତଟସ୍ଥ ହୋଇ ଯାଇଥିଲେ । ରୁଚି ପୁଣି ତାଙ୍କୁ ହଲାଇ ଦେଇ କହିଲେ—
"ମୁଁ ଜାଣେ ଚନ୍ଦ୍ରପୁ । ଜଣେ ନାରୀ ତୁଣ୍ଡରେ ଏସବୁ କଥା ଅନ୍ୟାୟ ଆଉ ଅଶୋଭନୀୟ ! ତୁମେ ବୁଝି ପାରିବନି । ତୁମ ବନ୍ଧୁ, ତୁମର ସମାଜ ଆଉ ତୁମର ପୌରୁଷ ଏ କଥାର ଦାମ ଦେବ ନାହିଁ । ମୁଁ ଯଦି ଅକାଳରେ ମରିଯାଏ···ତେବେ ତମେ ତାକୁ କହିବ ଗୋଟାଏ ସଉକ । ତୁମେ ତ ବୁଝିବ ନାହିଁ ତୁମର, ତୁମ ସମାଜ ଆଉ ପୃଥିବୀର ଅଜସ୍ର ପ୍ରାଚୁର୍ଯ୍ୟ ଭିତରେ ସାମାନ୍ୟ ଗୋଟାଏ ନାରୀ ବଞ୍ଚିବାର ନିମ୍ନତମ ଚାହିଦା ଅଭାବରେ ···ଅସମୟରେ··· ।''

ଚନ୍ଦ୍ରପୁ ପାଟିକରି ଉଠିଲେ—"ତୁମେ ଚୁପ କର ରୁଚି । ତୁମେ ପାଗଳୀ ହୋଇଯାଇଛ ନା କ'ଣ ?''

"ମୁଁ ପାଗଳୀ ନୁହେଁ । ଗୁଡ଼ାଏ ସତକଥା ତୁମେ ନିସ୍ତବ୍ଧ ରାତିରେ ଶୁଣୁଥିବାରୁ ମତେ ମଣିଷ ନ ଭାବି ପାଗଳୀ ଭାବିବ । ମୁଁ ଜାଣେ ଚନ୍ଦ୍ରପୁ, ଚିରଦିନ ସତ୍ୟଟାକୁ ଏଡ଼େଇ ଦେବା ତମର ଗୋଟାଏ ଅଭ୍ୟାସ । ସତ୍ୟକୁ ତୁମେ ଭୟ କର । ମୁଁ କହିବି ତୁମେ ଖିରୁ, ଦୁର୍ବଳ··· ।''

"ଆଃ, ରୁଚି । ତମେ ଏବେ ବି ମତେ ବୁଝିଲ ନାହିଁ ।''

"ତମକୁ ବୁଝିନାହିଁ ? ବୁଝିଛି ବୋଲି ତ ଏତେ ନିର୍ଭୟରେ କହୁଛି । ମୁଁ କ'ଣ ଜାଣେ ନା, ତମେ ରୁଚି ପାଇଁ ଆଜୀବନ ନିଃସଙ୍ଗ ଜୀବନଯାପନ କରିଛ···କିନ୍ତୁ ସେ ପନ୍ଦର ବର୍ଷ ତଳର ରୁଚି, ଆଜିର ରୁଚି ନୁହେଁ । ତୁମର ଜୀବନ ତ୍ୟାଗର ନମୂନା ପୃଥିବୀରେ ବିରଳ । ତୁମେ ମହାନ୍ ପ୍ରେମିକ ସତ କିନ୍ତୁ ପୁରୁଷ ହେଲ ନାହିଁ··· ।" ଏଥର ବାସ୍ତବିକ ରୁଚି କାନ୍ଦିଲେ ଶବ୍ଦ କରି—ଆଉ ଦୁଇ ହାତ ପାପୁଲିରେ ମୁହଁ ଢାଙ୍କି ।

ଚିନ୍ମୟ ତାଙ୍କ ହାତକୁ ଧରି ପକାଇଲେ; କିନ୍ତୁ ରୁଚି ଦୂରକୁ ଘୁଞ୍ଚିଯାଇ ପାଟିକରି ଉଠିଲେ—"ତୁମେ ମୋ ପାଖରୁ ଘୁଞ୍ଚିଯାଅ, ଚିନ୍ମୟ । ମୁଁ କାନ୍ଦିବା ପାଇଁ ଆଜି ଅବଲମ୍ବନ ଲୋଡ଼େ ନାହିଁ । ମୁଁ ଏକାକୀ କାନ୍ଦିବି । ଏ ଦୁଃଖ କଷ୍ଟ ମୋ ନିଜର—ଏକାନ୍ତଭାବେ ନିଜର । ମୁଁ ଏଥିରେ କାହାକୁ ଭାଗୀଦାର କରିବାକୁ ଚାହେଁନାହିଁ । ତୁମେ ଦୂରେଇ ଛିଡ଼ାହୁଅ । ମୋ ଅଶ୍ରୁରେ ଅଜସ୍ର କଳଙ୍କ ରହିଛି । ସେ କଳା ଦାଗରେ ତୁମର ପ୍ରେମକୁ ମୋ ପ୍ରତି ନଷ୍ଟ ହେବାକୁ ଦିଅନା··· ।"

ବାହାରେ ଅନ୍ଧକାରର ଯେପରି ଶେଷ ନାହିଁ । ରୁଚିଙ୍କର କ୍ରନ୍ଦନର ସାଇଁସାଇଁ ଶବ୍ଦ ସହିତ ନଦୀର କୁଳୁକୁଳୁ ସ୍ୱର ମିଶି ଏକ ଦ୍ୱିଧାପୂର୍ଣ୍ଣ ଶବ୍ଦର ସୃଷ୍ଟି ହେଉଥିଲା । କେଉଁ ଶବ୍ଦର ମାନେ ବୁଝିବା ଚିନ୍ମୟଙ୍କ ପକ୍ଷରେ ଅସମ୍ଭବ ଥିଲା । ଚିନ୍ମୟ ନିର୍ବାକ୍ ହୋଇ ଯାଇଥିଲେ । ଜୀବନ ସାରା 'ନାରୀ' କ'ଣ ଯେପରି ସେ ବୁଝିଲେ ନାହିଁ । ପ୍ରଦୋଷ କହୁଥିଲା, ଚିନ୍ମୟ ନାରୀ ଜାତିକୁ ଭୟ କରେ । ନାରୀର ବିଭିନ୍ନ ରୂପରେ ସେ ବାସ୍ତବିକ୍ ସମୟେ ସମୟେ ଅଭିଭୂତ ହେଉଥିଲେ ।

ଚିନ୍ମୟଙ୍କର ତନ୍ଦ୍ରା ଭାଙ୍ଗିଲା । ରୁଚି କାନ୍ଦ ବନ୍ଦ କରି ଗାଡ଼ିରେ ଷ୍ଟାର୍ଟ ଦେଲେଣି । ସେ ପାଖକୁ ଯାଇ କହିଲେ—"ତମେ ଟିକିଏ ବିଶ୍ରାମ କର ରୁଚି । ମୁଁ ଡ୍ରାଇଭ୍ କରେ ।"

"ନା, ନା ତମେ ବସ । ତମେ ମୋର ଅତିଥି ଚିନ୍ମୟ । ତମକୁ ସୁସ୍ଥରେ ରଖିବା ମୋର କର୍ତ୍ତବ୍ୟ; କିନ୍ତୁ ତମକୁ ଆଜି ବହୁତ କଷ୍ଟ ଦେଲିଣି···ଏତିକି ବେଦନା ତମେ ସହ୍ୟ କରିନେବ, ବସ । ଡେରି ହେଉଛି ଯେ ।"

ଚିନ୍ମୟ ଅଗତ୍ୟା ବସିଲେ । ଶୁଖିଲା ଲୁହର ଦାଗ ତାଙ୍କ ଆଖି ପାଖରେ । ବଡ଼ ଶ୍ରୀହୀନ ଲାଗୁଛନ୍ତି ରୁଚି । ଅଥଚ କେତେ ଲୋଭନୀୟ ଥିଲା ତାଙ୍କର ଚେହେରା । ବାରମ୍ବାର ଚାହିଁ ରହିଲେ ବି ତାଙ୍କର ତୃପ୍ତି ଆସୁ-ନଥିଲା । ଲାବୋରେଟୋରୀରେ ଗବେଷଣା କରୁ କରୁ ବହୁବାର ତାଙ୍କ ଆଖି ସାମ୍ନାରେ ନାଚି ଉଠେ ରୁଚିଙ୍କର ସେଇ ମନମୁଗ୍ଧକର ଛବି । ଗବେଷଣା ବନ୍ଦ ରୁହେ । ଫର୍ମୁଲା ଶେଷ ହୁଏନା କି ବହିର ପୃଷ୍ଠା ଓଲଟେ ନାହିଁ । ପନ୍ଦର ବର୍ଷ ଧରି କେବଳ ମାମୁଲି ସମ୍ପର୍କ ଛଡ଼ା ସେ ଅଧିକ ସମ୍ପର୍କ ରଖି ନାହାନ୍ତି । କାରଣ ସେଥିରେ ରୁଚି ହୋଇଥାନ୍ତେ ଅସୁଖୀ । ନିଜ ଅପେକ୍ଷା ଅଧିକ ଭଲ ପାଉଥିଲେ ସେ ରୁଚିଙ୍କୁ । ତେଣୁ ନିଜକୁ ଅଗ୍ନିରେ ଦାହ କରି ତାଙ୍କୁ ଆଲୋକ ଦେବାକୁ ଅନବରତ ଚେଷ୍ଟା କରି ଆସିଛନ୍ତି ସେ । ହେଲେ··· ।

ଚିନ୍ମୟଙ୍କ ଅକ୍ଷିପତା ବୁଜିହୋଇ ଆସୁଛି । ଘଣ୍ଟାରେ ବୋଧେ ଚାରି ବାଜିବ । ଏତେ ସମୟ ଧରି ଡ୍ରାଇଭ୍ କଲେ ମଧ୍ୟ କ୍ଳାନ୍ତ ଆସୁନାହିଁ । ବଡ଼ ଚିନ୍ତାମଗ୍ନ ପେପରି ସେ । ନାଁ ଥାଉ । ସେ ତାଙ୍କୁ ଅଧିକ କିଛି ପ୍ରଶ୍ନ କରିବେ ନାହିଁ । କିନ୍ତୁ ରୁଚି ଯେ ତାଙ୍କୁ ଡାକିଥିଲେ କ'ଣ କହିବେ ବୋଲି, ଏ ପର୍ଯ୍ୟନ୍ତ କିନ୍ତୁ କହି ନାହାଁନ୍ତି । ପଚାରିବେ କି ? ନାଁ—ଥାଉ । ବଡ଼ ଅସୁସ୍ଥ ଲାଗୁଛି ମନଟା । ଚତୁର୍ଦ୍ଦିଗ ଫାଙ୍କା, ନିର୍ଜନ । ଏକାକୀ ମନ ଖାଁ ଖାଁ କରି ଉଠୁଛି । ରୁଚିଙ୍କର ବିବାହ ଦିନ ଯେଉଁ ନିଃସଙ୍ଗ ବେଦନା ସେ ଅନୁଭବ କରିଥିଲେ ସେ ବେଦନା ମନେ ହେଲା ଯେପରି ତାଙ୍କ ମନନ କେନ୍ଦ୍ରକୁ, ସ୍ମୃତି ଓ ଧୀମତ୍ତାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବ ।

ରୁଚି କିନ୍ତୁ ନିରବ । ଅବିଶ୍ରାନ୍ତ ଝଡ଼ ପରେ ସବୁଜ ବନାନୀ କ୍ଳାନ୍ତ ଅବା । ଚିନ୍ମୟ ଆଖି ବୁଜିଲେ ।

କେତେବେଳ ବିତି ଯାଇଛି ଚିନ୍ମୟ ଜାଣନ୍ତି ନାହିଁ । ଗାଡ଼ି ଅଟକିବାରୁ ସେ ଉଠି ପଡ଼ିଲେ । କିନ୍ତୁ ଏ କ'ଣ ? ଏ ଯେ ଷ୍ଟେସନ୍ । ଯେଉଁଠି ସେ ସନ୍ଧ୍ୟାବେଳେ ଓହ୍ଲାଇଥିଲେ । ରାସ୍ତା ଭୁଲି ତେବେ ଅବାଟରେ ଚାଲିଆସିଲେ ରୁଚି ।

ରୁଚି କିନ୍ତୁ ମୃଦୁ ହସି କହିଲେ—"ରାସ୍ତା ଭୁଲ୍ କରିଛି ବୋଲି ତମେ ଭାବୁଛ ନା ? ତା' ନୁହେଁ ! ନଦୀ କୂଳରୁ ମୁଁ ପୁଣି ଷ୍ଟେସନ୍

ଆଡ଼କୁ କାର୍ ବୁଲାଇ ଦେଇଥିଲି । ତମେ ଫେରିଯାଅ । ମୁଁ ତମକୁ ମୋ ସାଙ୍ଗରେ ଘରକୁ ନେଇ ଅମର୍ଯ୍ୟାଦା କରିବାକୁ ଚାହେଁନା ।"

"ଏ କ'ଣ କହୁଛ, ରୁଚି ! ଏତେ ଦିନ ପରେ ମୁଁ ଆସିଲି... କିନ୍ତୁ ତମେ... !"

"ସେଇଥିପାଇଁ ତ କହୁଛି ଚିନ୍ମୟ । ଏତେ ଦିନ ପରେ କଳଙ୍କର ଦାଗରେ ମୁଁ ତମକୁ ରଞ୍ଜିତ କରିବାକୁ ଚାହେଁନା । ଯେଉଁ ରୁଚିର ସମାଜରେ ସ୍ଥାନ ନାହିଁ, ଘରେ ସ୍ଥାନ ନାହିଁ କି କେଉଁ ପ୍ରିୟ ପରିଜନରେ ସ୍ଥାନ ନାହିଁ—ସେ ତୁମକୁ ସ୍ଥାନ ଦେବ କୁଆଡ଼ୁ ? ବଞ୍ଚିବାର ନିମ୍ନତମ ଚାହିଦାର ଅଭାବରେ ଯିଏ ଦୀର୍ଘଦିନ ଧରି କ୍ଷୁଧିତ, ସେ ତୁମର ସମ୍ମାନ ରକ୍ଷା କରିପାରିବନି । ତୁମେ ଫେରିଯାଅ ଚିନ୍ମୟ ! ଫେରିଯାଅ... !"

"ରୁଚି ! ଶୁଣ, ମୋ କଥା ଶୁଣ ଠିକେ !"

"ଆହା ! ଆଉ ଆଉ ଅଂଗୀକାର କରି ଲାଭ ନାହିଁ । ମୁଁ ତୁମକୁ ଶ୍ରଦ୍ଧା କରେ । ତେଣୁ ତୁମକୁ ବିଦାୟ ଦେଉଛି । ରୁଚିର ଏଇ ରୁଚିହୀନତା ପାଇଁ ତୁମେ ତାକୁ କ୍ଷମାକର, ଚିନ୍ମୟ । କିନ୍ତୁ ଫେରିଯାଅ; ମତେ କଷ୍ଟରୁ ଆଉ ଯନ୍ତ୍ରଣାରୁ ବାହିଦିଅ । ତୁମକୁ ନଷ୍ଟ କରିବାର ବେଦନାରୁ ମତେ ମୁକ୍ତ ଦିଅ ।

ସେ କଣ୍ଠରେ କି ନିର୍ଦ୍ଦେଶ ଥିଲି କେଜାଣି । ଚିନ୍ମୟ ଗାଡ଼ିରୁ ଓହ୍ଲାଇ ଧୀରେ ଧୀରେ ପ୍ଲାଟ୍‌ଫର୍ମ ଭିତରେ ପଶିଲେ । ପଛେ ପଛେ ଚାଲିଥିଲେ ରୁଚି । ପ୍ରଭାତ ପ୍ରାୟ ହେବା ଉପରେ । କମ୍ପାର୍ଟମେଣ୍ଟର ରେଲିଂ ଧରି ଚିନ୍ମୟ ଚାହିଁଥିଲେ ରୁଚିଙ୍କୁ । ବଡ଼ ଉଦାସ ଦିଶୁଥିଲେ ସିଏ । ଟ୍ରେନ୍ ସିଗ୍‌ନାଲ ଦେଲାଣି । ଚିନ୍ମୟ ନଇଁପଡ଼ି କହିଲେ—"ତମକୁ ବୁଝି ପାରିଲି ନାହିଁ ରୁଚି । ତମେ ମତେ କ୍ଷମା କରିବ । କିନ୍ତୁ କ'ଣ କହିବ ବୋଲି ମତେ ଏତେ ଆଗ୍ରହରେ ଡାକିଥିଲ, କହିଲ ନାହିଁ ଯେ ।"

ରୁଚି ଯେପରି ଚମକି ଚାହିଁଲେ । ଆଉ ଆବେଗରେ ପ୍ରଶ୍ନ କଲେ —"ତମେ ପାରିବ ଚିନ୍ମୟ ? ପାରିବ ଗୋଟିଏ କାମ କରି ? ମୋ ପାଇଁ କହୁନାହିଁ, କହୁଛି ଅନ୍ୟମାନଙ୍କ ପାଇଁ !"

"କ୍ଲୁଦ୍ ରୁଚ ! ଟ୍ରେନ ଛାଡ଼ ଦେବ ଯେ··· ।

ଶୁଷ୍କ ହସ ହସିଲେ ରୁଚି—"ତମେ ବୈଜ୍ଞାନକ । ମଣିଷର ଶରୀରକୁ ବନା ଖାଦ୍ୟରେ ବଞ୍ଚେଇ ରଖିବା ପାଇଁ କ'ଣ ଉଦ୍ଭାବନରେ ଲାଗିଛ ତମେ ମୁଁ ଜାଣେନା; କନ୍ତୁ ମଣିଷର ମନକୁ ବଞ୍ଚେଇ ରଖିବା ପାଇଁ କଣ କରୁଛ ? ପାରିବ ? ପାରିବ ଗୋଟାଏ ଜନଷର ଉଦ୍ଭାବନ କରି ? ମନକୁ ବଞ୍ଚେଇ ରଖିବାର ନମ୍ନତମ ଗୃହ୍ୟଦାକୁ ଆବଷ୍କାର କରି ପାରିବ ? ଆଧୁନକ ମଣିଷର ମାନସିକ ରକ୍ତତାକୁ ତମେ ଦୂର କରିପାରିବ ? ଆଜର ନର୍ଜନ ବୁଦ୍ଧିନର୍ଭର ମନୁଷ୍ୟ ପାଇଁ କଛି ନୂତନ ଆବଷ୍କାର ଦରକାର । ନଚେତ୍ ସେ ମରିଯିବ ଚନ୍ଦ୍ରମ୍ଭ । ଆଉ ପୃଥିବୀ ହେବ କେତୋଟି ପଶୁଙ୍କର ବାସସ୍ଥଳୀ··· !"

ଟ୍ରେନ୍‌ର ବକଟାଳ ହୁଇସିଲ୍ ଶବ୍ଦରେ ଚନ୍ଦ୍ରମ୍ଭଙ୍କ ହୃତ୍‌ପିଣ୍ଡ ଭିତରଟା ଯେପରି ଠକ୍ ଠକ୍ କମ୍ପି ଉଠୁଥିଲା । ଆଉ ଗୁଡ଼ାଏ ଭଙ୍ଗା କାଚର ଶବ୍ଦ ତାଙ୍କ କାନକୁ ବଧିର କରିଦେଇଥିଲା । ମନେହେଉଥିଲା ତାଙ୍କ ଗବେଷଣାଗାରରେ ଥିବା ସମସ୍ତ ଯନ୍ତ୍ରପାତି ଆଉ ରାସାୟନକ ପ୍ରଣାଳୀ ଅକସ୍ମାତ୍ ପଡ଼ିଯାଇ ଚୂର୍ଣ୍ଣବଚୂର୍ଣ୍ଣ ହୋଇଯାଇଛି । ଟ୍ରେନର ଗତି ସହିତ ତାଳ ମିଳାଇ ରୁଚି ଯେମିତି ଦୌଡ଼ୁଛନ୍ତି ଅଣନାଃଶ୍ୱାସୀ ହୋଇ ।

---